# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

ଡଃ ଅରୁଣ କୁମାର ମହାନ୍ତି

ଊନବିଂଶ ଶତାବ୍ଦୀର ଶେଷଭାଗକୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ନବ ଉନ୍ମାଦନାର ଉନ୍ମେଷ ଘଟିଥିଲା । ଏ ଅଞ୍ଚଳର ଲୋକମାନେ କିପରି ଅବହେଳିତ ଅବସ୍ଥାରେ ଥିଲେ, ନ'ଅଙ୍କ ଦୁର୍ଭିକ୍ଷର ଭୟାବହ ପରିଣତିରୁ ତାହା ସ୍ପଷ୍ଟ ହୋଇଯାଇଥିଲା । ଏହି ବିପର୍ଯ୍ୟୟର ମୁକାବିଲା କରିବାରେ ବିଫଳ ହେବାପରେ ବ୍ରିଟିଶ ସରକାରଙ୍କର ଚେତା ପଶିଥିଲା ଓ ଏହି ଅଞ୍ଚଳରେ କେତେକ ଜନହିତକର କାର୍ଯ୍ୟ କରିବା ଦିଗରେ ସରକାର ପ୍ରଯତ୍ନ କରିଥିଲେ । 'ଫଲ୍‌ସ ପଏଣ୍ଟ'ଠାରେ ଏକ ବନ୍ଦର ସ୍ଥାପନର ପରିକଳ୍ପନା କରିବା ସଂଗେସଂଗେ କେନ୍ଦ୍ରାପଡ଼ା କେନାଲ ଖୋଳା ଆରମ୍ଭ କରିଦେଇଥିଲେ । ଇଷ୍ଟଇଣ୍ଡିଆ ଇରିଗେସନ୍ କମ୍ପାନୀ ଜଳସେଚନର ବିକାଶ ନିମନ୍ତେ ପଦକ୍ଷେପମାନ ନେଇଥିଲେ । କଟକ-ଚାନ୍ଦବାଲି, କଟକ-ତାଳଦଣ୍ଡା ଓ କଟକ-ମାଛଗାଁ ରାସ୍ତାର ନିର୍ମାଣ ଏବଂ କଟକ-ସମ୍ବଲପୁର ରାସ୍ତାର ଉନ୍ନତିକରଣ କାର୍ଯ୍ୟ ଆରମ୍ଭ ହୋଇଥିଲା । କଟକରେ ମେଡ଼ିକାଲ୍ ସ୍କୁଲ ସ୍ଥାପିତ ହେବା ସଂଗେସଂଗେ କଟକ ମ୍ୟୁନିସିପାଲିଟି ଗଠିତ ହୋଇଥିଲା । ସାମାଜିକ ତଥା ରାଜନୈତିକ ଅନୁଷ୍ଠାନମାନ ପ୍ରତିଷ୍ଠିତ ହେବା ଫଳରେ ଲୋକମାନଙ୍କର ଅଭାବ ଅସୁବିଧା ସରକାର ତଥା ପ୍ରଶାସନର ଦୃଷ୍ଟିକୁ ଆସିଲା ଏବଂ ସେମାନଙ୍କର ଆଶା ଆକାଙ୍କ୍ଷାର ପରିପ୍ରକାଶ ପାଇଁ ସୁଯୋଗ ମିଳିଲା । 'ଉତ୍କଳ ଦୀପିକା', 'ବାଲେଶ୍ୱରର ସମ୍ବାଦ ବାହିକା' ଓ 'ସମ୍ବଲପୁର ହିତୈଷିଣୀ' ପରି ସମ୍ବାଦଭିତ୍ତିକ ପତ୍ରିକାର ପ୍ରକାଶନ ଫଳରେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ମଧ୍ୟରେ ଜାତୀୟତାର ଉଦ୍ରେକ ହେଲା । ଏହି ଅଞ୍ଚଳଗୁଡ଼ିକୁ ଗୋଟିଏ ପ୍ରଶାସନ ଅଧୀନକୁ ଆଣିବାର ଆବଶ୍ୟକତା ରହିଛି ବୋଲି ବ୍ରିଟିଶ ସରକାରଙ୍କ ଭାରତ ଦାୟିତ୍ୱରେ ଥିବା ସଚିବ, ସାର ଷ୍ଟାଫୋର୍ଡ଼ ନର୍ଥକୋଟ୍ ପ୍ରକାଶ କଲେ ।


ଓଡ଼ିଶାର ପ୍ରଥମ ରାଜ୍ୟପାଳ ସାର୍ ହବାକ୍

ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନ ବଙ୍ଗଳା ତଥା ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀ ଏବଂ ସେଣ୍ଟ୍ରାଲ୍ ପ୍ରଭିନ୍‌ସେସ୍‌ରେ ରହିଥାଏ । ଏହାବ୍ୟତୀତ ଛବିଶିଟି ଦେଶୀୟ ରାଜ୍ୟରେ ମଧ୍ୟ ଓଡ଼ିଆ ଲୋକମାନେ ରହୁଥାନ୍ତି । ସମସ୍ତଙ୍କୁ ଏକତ୍ର କରି ଗୋଟିଏ ପ୍ରଶାସନ ଅଧୀନକୁ ଆଣିବା ଥିଲା କାଠିକର ପାଠ । ଏଥିପାଇଁ ଐକ୍ୟବଦ୍ଧ ହୋଇ ଉଦ୍ୟମ କରିବା ନିତାନ୍ତ ଆବଶ୍ୟକ ଥିଲା । ମଧୁସୂଦନ ଦାସଙ୍କ ନେତୃତ୍ୱରେ 'ଉତ୍କଳ ସମ୍ମିଳନୀ' ଏ ଦିଗରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

୧୯୧୨ ମସିହାରେ ବିହାର ଓ ଓଡ଼ିଶା ବଙ୍ଗରୁ ପୃଥକ୍ ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ଏହି ନୂତନ ପ୍ରଦେଶର ରାଜଧାନୀ ସାମୟିକ ଭାବେ ରାଞ୍ଚିରେ କାର୍ଯ୍ୟ କରିବା ପରେ ବାଙ୍କୀପୁର ପାଟଣାକୁ ସ୍ଥାନାନ୍ତରିତ ହେଲା । ଏହା ଫଳରେ କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳର ଲୋକମାନଙ୍କର ଅସୁବିଧା ବଢ଼ିଗଲା । କଲିକତା ଆସିବା ସେମାନଙ୍କ ପାଇଁ ଯେତିକି କଷ୍ଟ ଥିଲା, ପାଟଣା ଆସିବା ତା'ଠାରୁ ଅଧିକ କଷ୍ଟକର ହେଲା । ଯଦିଓ ପୁରୀଠାରେ ଲାଟ୍ ସାହେବଙ୍କର ଗ୍ରୀଷ୍ମ ନିବାସ ସ୍ଥାପିତ ହୋଇଥିଲା, ସ୍ଥାନୀୟ ଲୋକେ ତାହା ଫଳରେ ଉପକୃତ ହୋଇପାରୁନଥିଲେ । ତେଣେ ମାନ୍ଦ୍ରାଜ ଓ ସେଣ୍ଟ୍ରାଲ ପ୍ରଭିନେସ୍‌ରେ ବସବାସ କରୁଥିବା ଲୋକମାନେ ପୂର୍ବପରି ଅବହେଳିତ ଅବସ୍ଥାରେ ରହୁଥିଲେ ।

ଓଡ଼ିଆମାନଙ୍କର ଏକ ଶାସନାଧୀନ ହେବାର ଦାବି ଦୃଢ଼ ହେବାରେ ଲାଗିଲା । ସାଇମନ୍ କମିଶନ ଓ ଓଡ଼ୋନେଲ୍ କମିଟି ଏ ବିଷୟ ଅନୁଧ୍ୟାନ କଲେ । ଲଣ୍ଡନଠାରେ ଗୋଲଟେବୁଲ ବୈଠକରେ ଯୋଗଦେଇ ପାରଳା ମହାରାଜା ଏହି ପ୍ରସଙ୍ଗ ଉତ୍‌ଥାପନ କଲେ । ଇଣ୍ଡିଆ ଅଫିସ୍‌ପକ୍ଷରୁ ପ୍ରସ୍ତୁତ ଶ୍ୱେତପତ୍ରରେ ଓଡ଼ିଶା ପ୍ରଦେଶ ଗଠନ

ହେବା କଥା ପ୍ରକାଶ କରାଗଲା । ମାତ୍ର ଏହି ପ୍ରସ୍ତାବିତ ପ୍ରଦେଶରେ ଜୟପୁର ଓ ପାରଳାଖେମୁଣ୍ଡି ଅନ୍ତର୍ଭୁକ୍ତ ହୋଇନଥିଲା । ପରେ ଯୁଗ୍ମ ପାର୍ଲାମେଣ୍ଟାରୀ କମିଟି ଏହି ଅଞ୍ଚଳକୁ ନିକଟରେ ଗଠିତ ହେବାକୁ ଥିବା ଓଡ଼ିଶା ପ୍ରଦେଶରେ ମିଶାଇଲେ । ବ୍ରିଟିଶ୍ ପାର୍ଲାମେଣ୍ଟରେ ଏ ପ୍ରସଙ୍ଗ ଆଲୋଚିତ ହେଲା । ଭାରତ ସରକାର ଆଇନ୍, ୧୯୩୫ର ଧାରା ୨୮୯ ଅନୁଯାୟୀ ଓଡ଼ିଶା ଏବଂ ସିନ୍ଧ ନାମକ ଦୁଇଟି ନୂତନ ପ୍ରଦେଶ ଗଠିତ ହେବ ବୋଲି ସ୍ଥିର ହେଲା । ଧାରା ୨୮୯ (୧-ବି)ରେ ଉଲ୍ଲେଖ ରହିଲା : 'Orissa and such other areas in the Province of Bihar and Orissa as may be speicified in the Order of His Majesty shall be specified in the said Order shall be separated from the Presidency of Madras and the Central Provinces respectively, and Orissa and the other areas so separated shall together form a Governor's Province to be known as the Province of Orissa.'

> ୧୯୧୨ ମସିହାରେ ବିହାର ଓ ଓଡ଼ିଶା ବଙ୍ଗରୁ ପୃଥକ୍ ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ଏହି ନୂତନ ପ୍ରଦେଶର ରାଜଧାନୀ ସାମୟିକ ଭାବେ ରାଞ୍ଚିରେ କାର୍ଯ୍ୟ କରିବା ପରେ ବାଙ୍କୀପୁର ପାଟଣାକୁ ସ୍ଥାନାନ୍ତରିତ ହେଲା । ଏହା ଫଳରେ କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳର ଲୋକମାନଙ୍କର ଅସୁବିଧା ବଢ଼ିଗଲା ।

ଓଡ଼ିଶା ପ୍ରଦେଶ ଗଠନ ସଂକ୍ରାନ୍ତୀୟ ଚିଠା ପ୍ରସ୍ତାବ ୧୯୩୬ ମସିହା ଜାନୁଆରୀ ୨୧ ତାରିଖଦିନ ବ୍ରିଟିଶ୍ ପାର୍ଲାମେଣ୍ଟରେ ଉପସ୍ଥାପିତ ହେଲା । ପ୍ରସ୍ତାବ ଆଗତ କରି ଅଣ୍ଡର ସେକ୍ରେଟାରୀ ଆର୍.ଏ. ବଟଲର୍ ଏକଥା ପରିଷ୍କାର କରିଦେଲେ ଯେ ଭାରତ ସରକାର ଆଇନ୍, ୧୯୩୫ ଦୁଇ ବର୍ଷ ପରେ ୧୯୩୭ରୁ କାର୍ଯ୍ୟକାରୀ ହେବ । ତା'ପୂର୍ବରୁ ଏହି ନୂତନ ପ୍ରଦେଶ ଦୁଇଟି ଗଠିତ ହେବ । ହାଉସ୍ ଅଫ୍ ଲର୍ଡ଼ସରେ ଆର୍ଲ ଅଫ୍ ସାଫଟସ୍‌ବରୀ ଏବଂ ହାଉସ୍ ଅଫ୍ କମନ୍ସରେ ଭାଇସ ଚେମ୍ବରଲିନ୍‌ଙ୍କ ପ୍ରସ୍ତାବ ରାଜକୀୟ ସମ୍ମତି ଲାଭ କରିଥିବା ବିଷୟ ପ୍ରକାଶ କଲେ । ଶେଷରେ ୧୯୩୬ ମସିହା ମାର୍ଚ୍ଚ ୩ ତାରିଖ ଦିନ, ପ୍ରିଭି କାଉନ୍‌ସିଲଙ୍କ ପରାମର୍ଶ ଅନୁଯାୟୀ, ଏ ସଂକ୍ରାନ୍ତୀୟ ନିର୍ଦ୍ଦେଶନାମା ପ୍ରକାଶ ପାଇଲା । ନୂତନ ପ୍ରଦେଶ ଦୁଇଟି ସେହିବର୍ଷ ଅପ୍ରେଲ ପହିଲା ଦିନ ଗଠିତ ହେବ ବୋଲି ସ୍ଥିର ହେଲା ।

ପରିଶେଷରେ ଓଡ଼ିଆ ଭାଷାଭାଷୀ ଲୋକଙ୍କର ବହୁଦିନର ସ୍ୱପ୍ନ ସାକାର ହେଲା । ରେଭେନ୍‌ସା କଲେଜ ହଲରେ ନୂତନ ପ୍ରଦେଶ ଗଠନ ନିମନ୍ତେ ଏକ ଦରବାର ଆୟୋଜନ କରାଗଲା । ନବନିଯୁକ୍ତ ରାଜ୍ୟପାଳ ସାର୍ ଜନ୍ ଅଷ୍ଟିନ୍ ହବାକ୍ ତାଙ୍କର ପତ୍ନୀ ଲେଡ଼ି ହବାକ୍, ପ୍ରାଇଭେଟ୍ ସେକ୍ରେଟାରୀ ଜେ.ଏସ୍. ୱିଲକକ୍ ଏବଂ ଏଡ଼ିସି ଡବ୍ଲ୍ୟୁ.ଏଲ୍.ଓ. ବି. ଷ୍ଟାଲାର୍ଡ଼ଙ୍କ ସହିତ ଏକ ସ୍ୱତନ୍ତ୍ର ଟ୍ରେନ୍‌ରେ ଆସି ସକାଳ ୭ଟା ୪୫ ମିନିଟ୍‌ରେ କଟକରେ ପହଞ୍ଚିଲେ । ଓଡ଼ିଶାର ମୁଖ୍ୟ ଶାସନ ସଚିବ ମାନ୍‌ସଫିଲଡ୍ ଲାଟ୍ ଦମ୍ପତିଙ୍କୁ ସମ୍ବର୍ଦ୍ଧନା ଜଣାଇ ପାଛୋଟି ଆଣିଲେ । ସତରଟି ତୋପ ଧ୍ୱନି ସହିତ ରାଜକୀୟ ଅଭିବାଦନ ପ୍ରଦାନ କରାଗଲା । ପୋଲିସ୍ ଫୌଜ ପ୍ଲାଟଫର୍ମରେ ଗାର୍ଡ଼ ଅଫ୍ ଅନର ଜଣାଇଲେ । ମୁଖ୍ୟ ଶାସନ ସଚିବ ରେଭିନ୍ୟୁ କମିଶନର ହର୍ଣ୍ଣେଲ, ଆଇ.ଜି. ପରକିନ୍‌ସ, କଟକର ଜିଲ୍ଲା କଲେକ୍ଟର ୱାର୍ଡ଼ ଓ ଏସ୍.ପି. ମେରିୟରଙ୍କୁ ଲାଟ୍ ସାହେବଙ୍କ ଛାମୁରେ ପରିଚିତ କରାଇଲେ ।

ନବ ନିଯୁକ୍ତ ରାଜ୍ୟପାଳ ସାର୍ ହବାକ୍ ରେଭେନ୍‌ସା କଲେଜ ସାମ୍ନା ପଡ଼ିଆରେ ପହଞ୍ଚିବା ମାତ୍ରେ ସଶସ୍ତ୍ର ପୋଲିସ୍ ବାହିନୀପକ୍ଷରୁ ଗାର୍ଡ଼ ଅଫ୍ ଅନର ପ୍ରଦର୍ଶନ କରାଗଲା । ତା'ପରେ ଆଗେ ଆଗେ ପାଟଣା ହାଇକୋର୍ଟର ମୁଖ୍ୟ ବିଚାରପତି ଜଷ୍ଟିସ୍ କୋଟନି ଟେରେଲ ଓ ତାଙ୍କ ପଛରେ ହବାକ୍ ସାହେବ ଦରବାର ହଲ୍‌ରେ ପ୍ରବେଶ କଲେ । ଉଚ୍ଚପଦସ୍ଥ ସରକାରୀ କର୍ମକର୍ତ୍ତାଙ୍କ ବ୍ୟତୀତ ଓଡ଼ିଶାର ବଡ଼ ବଡ଼ ରାଜା, ଜମିଦାର ତଥା ବିଶିଷ୍ଟ ବ୍ୟକ୍ତିମାନେ ଆମନ୍ତ୍ରିତ ହୋଇ ଦରବାରରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ପାରଳା ମହାରାଜା, କନିକା, ଧରାକୋଟ, ଖଲ୍ଲିକୋଟ, ପାରିକୁଦ, ଖଡ଼ିଆଳ ଓ ବୋଡ଼ାସମ୍ବର ରାଜା, ପର୍ଶୁରାମ ପାତ୍ର, ଶଶୀଭୂଷଣ ରଥ, ମଧୁସୂଦନ ପାଣିଗ୍ରାହୀ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ସତ୍ୟନାରାୟଣ ରାଜଗୁରୁ, ଗୋରାଚାନ୍ଦ ପଟ୍ଟନାୟକ, ବିଦ୍ୟାଧର ସିଂହ, ବୈକୁଣ୍ଠନାଥ ଦତ୍ତ, ବିଚିତ୍ରାନନ୍ଦ ଦାସ, ହରିହର ମହାପାତ୍ର, ରାୟ ବାହାଦୂର ମନ୍ମଥନାଥ ଦେ, ରାୟବାହାଦୂର ଭାସ୍କର ଚନ୍ଦ୍ର ମହାପାତ୍ର, ସାମନ୍ତ ରାଧାପ୍ରସନ୍ନ ଦାସ, ରାୟ ସାହେବ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ, ରାୟ ବାହାଦୁର ଲୋକନାଥ ମିଶ୍ର, ପୁରୀ ଏମାର ମଠ ମହନ୍ତ ମହାରାଜ ଓ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଏବଂ ଅଧ୍ୟାପକଗଣ ଉପସ୍ଥିତ ଥିଲେ । ହଲ୍‌ର ଗୋଟିଏ ପଟେ ସରକାରୀ ଅଫିସର ଏବଂ ଅନ୍ୟ ପଟେ ବେସରକାରୀ ଲୋକେ ବସିଥିଲେ ।

ଦରବାର ଆରମ୍ଭ ହେବାମାତ୍ରେ ମୁଖ୍ୟ ଶାସନ ସଚିବ ଲାଟଙ୍କର ନିଯୁକ୍ତି ଜନିତ ରାଜ ୱାରେଣ୍ଟ ପଢ଼ି ଶୁଣାଇଲେ । ତା'ପରେ ବିହାର ଓ ଓଡ଼ିଶାର ମୁଖ୍ୟ ବିଚାରପତି ଜଷ୍ଟିସ୍ କୋଟନି ଟେରେଲ ନବନିଯୁକ୍ତ ଲାଟଙ୍କୁ ଶପଥ ପାଠ କରାଇଲେ । ଲାଟ୍ ରାଜା ତଥା ସମ୍ରାଟଙ୍କ ପ୍ରତି ଅନୁରକ୍ତ ରହିବା ସଂଗେସଂଗେ ତାଙ୍କ କର୍ତ୍ତବ୍ୟ ସମ୍ପାଦନ କରିବାରେ କାହାପ୍ରତି ପକ୍ଷପାତ ବିଚାର କରିବେ ନାହିଁ କି, ଦୁରଭିସନ୍ଧି ରଖିବେ

ନାହିଁ ଓ ସମସ୍ତଙ୍କୁ ନ୍ୟାୟ ପ୍ରଦାନ କରିବେ ବୋଲି ପବିତ୍ର ବାଇବେଲ ଚୁମ୍ବନ କରି ଶପଥ ନେଲେ ।

ତା'ପରେ ଓଡ଼ିଶା ପିପୁଲ୍ସ ଆସୋସିଏସନ୍, ଓଡ଼ିଶା ଜମିଦାର ଆସୋସିଏସନ୍, ଓଡ଼ିଶା ଚେମ୍ବର ଅଫ୍ କମର୍ସ, ଓଡ଼ିଶା ମହମଡ଼ାନ୍ ଆସୋସିଏସନ ଏବଂ ନିଖିଳ ଉତ୍କଳ ଡୋମିସାଇଲଡ଼୍ ବେଙ୍ଗଲିଜ୍ ଆସୋସିଏସନ୍‌ପକ୍ଷରୁ ମିଳିତ ଭାବେ ଲାଟ୍ ସାହେବଙ୍କୁ ଅଭିନନ୍ଦନ ଜଣାଯାଇଥିଲା । ସମସ୍ତଙ୍କ ପକ୍ଷରୁ କନିକା ରାଜା ଅଭିନନ୍ଦନପତ୍ର ପାଠ କରିଥିଲେ । ଅଭିନନ୍ଦନ ପତ୍ର ପାଠ ସମୟରେ ଉପରୋକ୍ତ ପାଞ୍ଚଟି ଅନୁଷ୍ଠାନର ପ୍ରତ୍ୟେକରୁ ପାଞ୍ଚ ଜଣ ଲେଖାଏଁ ପ୍ରତିନିଧି ଠିଆ ହୋଇ ରହିଥିଲେ । ଅଭିନନ୍ଦନର ଉତ୍ତରରେ ଲାଟ୍ ସାହେବ ଓଡ଼ିଶାବାସୀଙ୍କ ସହିତ ସେ ଅପରିଚିତ ନୁହନ୍ତି ବୋଲି କହିଲେ । ପୂର୍ବ ପରିଚୟ ଓ ବନ୍ଧୁତାର ନବୀକରଣ ପାଇଁ ଏବେ ସୁଯୋଗ ମିଳିଲା । ଏହି ଅଭିନନ୍ଦନ ପାଇଁ ସେ ନିଜପକ୍ଷରୁ ତଥା ନିଜ ପତ୍ନୀଙ୍କପକ୍ଷରୁ ସମସ୍ତଙ୍କୁ ଧନ୍ୟବାଦ ଜଣାଇଲେ । ନୂତନ ପ୍ରଦେଶ ଗଠିତ ହେବା ଫଳରେ ସମସ୍ତଙ୍କର ଦାୟିତ୍ୱ ବଢ଼ିଲା ବୋଲି ମଧ୍ୟ କହିଲେ ।

ଲାଟ୍ ସାହେବ ରାଜା ତଥା ସମ୍ରାଟ ଅଷ୍ଟମ ଏଡ଼ୱାର୍ଡ଼ ଏବଂ ଭାରତର ବଡ଼ଲାଟଙ୍କ ବାର୍ତ୍ତା ପଢ଼ି ଶୁଣାଇଲେ । ଶେଷରେ ନିଜର କାର୍ଯ୍ୟକାଳ ଭିତରେ ଏ ପ୍ରଦେଶର ଯଥାସାଧ୍ୟ ହିତ ସାଧନ ପାଇଁ ଚେଷ୍ଟା କରିବେ ବୋଲି କହିଲେ । ସମ୍ବର୍ଦ୍ଧନାର ଉତ୍ତର ଦେବା ପରେ ଲାଟ୍ ସାହେବ ଦରବାର ହଲ୍ ଛାଡ଼ିଲେ । ଯଥାରୀତି ଥାଟ ପଟୁଆରରେ ତାଙ୍କୁ ବିଦାୟ ଦିଆଗଲା । ଲାଟ୍ ସାହେବ କଟକ ସର୍କିଟ୍ ହାଉସ୍‌କୁ ଗଲେ । ଆମନ୍ତ୍ରିତ ରାଜା ଜମିଦାର ଓ ଭଦ୍ରବ୍ୟକ୍ତିମାନେ ବିଦାୟ ନେଲେ ।

ଏହି ଦରବାର ଉତ୍ସବ ଦେଖିବା ପାଇଁ ସ୍କୁଲ କଲେଜ ଛାତ୍ର ଓ ସହରବାସୀ ମିଶି ପ୍ରାୟ ତିନି ହଜାର ଲୋକ ହଲ୍ ବାହାରେ ଜମା ହୋଇଥିଲେ । ତିନିଶହ ସଶସ୍ତ୍ର ପୋଲିସ୍ ମୁତୟନ ହୋଇଥିଲେ । କଟକ ରେଳଷ୍ଟେସନ୍‌ଠାରୁ ସର୍କିଟ୍ ହାଉସ୍ ଯାଏ ରାସ୍ତାର ଦୁଇପାଖ ପତାକାରେ ସଜା ହୋଇଥିଲା । ସ୍ଥାନେ ସ୍ଥାନେ ଫାଟକମାନ ତିଆରି ହୋଇଥିଲା ଏବଂ ପୋଲିସ୍ ଜଗି ରହିଥିଲେ । ନୂତନ ପ୍ରଦେଶ ଗଠନ ଉପଲକ୍ଷେ ଚାରିଆଡ଼େ ଆନନ୍ଦ ଉତ୍ସବ ପାଳିତ ହୋଇଥିଲା । କଟକରେ ସରକାରୀ କୋଠାବାଡ଼ି, ଅଦାଲତ ଓ ସ୍କୁଲ କଲେଜକୁ ଆଲୋକମାଳାରେ ସୁସଜ୍ଜିତ କରାଯାଇଥିଲା ।

ଏହି ଦରବାର ଉତ୍ସବ ଦେଖିବା ପାଇଁ ସ୍କୁଲ କଲେଜ ଛାତ୍ର ଓ ସହରବାସୀ ମିଶି ପ୍ରାୟ ତିନି ହଜାର ଲୋକ ହଲ୍ ବାହାରେ ଜମା ହୋଇଥିଲେ । ତିନିଶହ ସଶସ୍ତ୍ର ପୋଲିସ୍ ମୁତୟନ ହୋଇଥିଲେ । କଟକ ରେଳଷ୍ଟେସନ୍‌ଠାରୁ ସର୍କିଟ୍ ହାଉସ୍ ଯାଏ ରାସ୍ତାର ଦୁଇପାଖ ପତାକାରେ ସଜା ହୋଇଥିଲା ।

ସେଦିନ ସରକିଟ୍ ହାଉସ୍‌ଠାରେ ବଡ଼ ବଡ଼ ହାକିମ୍ ହୁକୁମାଙ୍କ ନିଯୁକ୍ତିପତ୍ରରେ ଲାଟ୍ ସାହେବ ସ୍ୱାକ୍ଷର କଲେ । ଓଡ଼ିଶାର ପ୍ରଥମ ଗେଜେଟ୍ ପାଟଣାରୁ ପ୍ରକାଶ ପାଇଲା । ବିହାର ଓ ଓଡ଼ିଶା ପ୍ରଦେଶରୁ ବଦଳି ହୋଇ କେତେଜଣ ପଦସ୍ଥ କର୍ମଚାରୀ ଓଡ଼ିଶା ପ୍ରଦେଶରେ ଯୋଗଦେଲେ । ଦୁଇ ତାରିଖରେ ବାରବାଟୀ କିଲ୍ଲା ପରିସରରେ ଏକ ଉଦ୍ୟାନଭୋଜି ଅନୁଷ୍ଠିତ ହୋଇଥିଲା । ଲାଟ୍ ଦମ୍ପତି ଛ' ତାରିଖ ଯାଏ କଟକରେ ଅବସ୍ଥାନ କଲେ । କଟକ ଓଡ଼ିଶା ପ୍ରଦେଶର ଅସ୍ଥାୟୀ ରାଜଧାନୀ ହୋଇଥିଲେ ମଧ୍ୟ ପୁରୀସ୍ଥିତ ଗଭର୍ଣ୍ଣମେଣ୍ଟ ହାଉସ୍ ଲାଟ ନିବାସ ହେବ ବୋଲି ସ୍ଥିର ହୋଇଥିଲା । ଛ' ତାରିଖ ରାତିରେ କଟକରୁ ବାହାରି ସାତ ତାରିଖ ସକାଳେ ଲାଟ ଦମ୍ପତି ପୁରୀରେ ପହଞ୍ଚିଲେ ।

ଛ'ଟି ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ପ୍ରଦେଶରେ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଅନ୍ତର୍ଭୁକ୍ତ ହୋଇପାରିନଥିଲା । ଗଡ଼ଜାତଗୁଡ଼ିକ ପ୍ରଦେଶ ବାହାରେ ଥିଲେ । ଏଥିପାଇଁ ବହୁ ଲୋକଙ୍କ ମନରେ ଦୁଃଖ ରହିଗଲା । ତେବେ ବହୁଦିନ ପରେ ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ବିକାଶ ପାଇଁ ଏବଂ ଭାଗବତ ଐକ୍ୟକୁ ସୁଦୃଢ଼ କରିବାପାଇଁ ଓଡ଼ିଆମାନଙ୍କୁ ସୁଯୋଗ ମିଳିଥିଲା ।

ଆକାରପୁରୀ, ରଥରୋଡ଼
ଭୁବନେଶ୍ୱର-୭୫୧୦୦୨



# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର କଥା

ହରିହର ମହାପାତ୍ର (ବାୟା)

ଭୂମେର୍ଗରୀୟସୀ ମାତା
ସ୍ୱର୍ଗାଦୁଚ୍ଚତରଃ ପିତା
ଜନନୀ ଜନ୍ମଭୂମିଶ୍ଚ
ସ୍ୱର୍ଗାଦପି ଗରୀୟସୀ ।

**ସ୍ୱ**ତନ୍ତ୍ର ଉତ୍କଳ ପ୍ରଦେଶର ଆଲୋଚନା କାଳରେ ଜନକ, ଜନନୀ ଓ ମାତୃଭୂମିର ଗୌରବ ଗାନ କରିବା ଏବଂ ତାହା ସ୍ମରଣପୂର୍ବକ ଆଗାମୀ ଜୀବଦ୍ଦଶାରେ ସେହିଭଳି ମନୋଭାବ ପୋଷଣ କରିବାକୁ ମନେ ମନେ ସଙ୍କଳ୍ପ କରିବା ପ୍ରତି ଉତ୍କଳୀୟର ଧ୍ୟେୟ ହେଉ ।

ପୁଣ୍ୟଭୂମି ଏ ଉତ୍କଳ । ଜନ୍ମଭୂମି ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଆମ ଉତ୍କଳ ପ୍ରଦେଶ, ନୈସର୍ଗିକ ଶୋଭା ସମ୍ପଦ ଅଧିକାରିଣୀ ଯେପରି ଅତୀତ ଗୌରବରାଜିରେ ସମୁଜ୍ଜ୍ୱଳ ସେହିପରି । ସମଗ୍ର ବିଶ୍ୱରେ ଏ ଜାତି କଳିଙ୍ଗ, ଉତ୍କଳ ଏବଂ ଓଡ଼ିଶା ନାମରେ ନାମିତ । କଳିଙ୍ଗର ବୀର ଦୁର୍ଦ୍ଧର୍ଷ ଓଡ଼ିଆ ପାଇକ ବାହିନୀ, ଆପଣାର ବୀରତ୍ୱ ବଳରେ ବିଭିନ୍ନ ରାଜ୍ୟ ଜୟକରି କଳିଙ୍ଗର ଶ୍ରୀବୃଦ୍ଧି କରିଥିଲେ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ।

ମାତ୍ର ଉତ୍କଳ ଜନନୀ ୧୫୬୮ ମସିହାରେ ପରାଧୀନତାର ଶୃଙ୍ଖଳରେ ଶୃଙ୍ଖଳିତ ହୋଇଥିଲା । ତତ୍କାଳୀନ ଗୃହଶତ୍ରୁମାନଙ୍କର ଚକ୍ରାନ୍ତ ଓ ବିଶ୍ୱାସଘାତକତା ଯୋଗୁଁ ସ୍ୱାଧୀନ ଉତ୍କଳର ପାଇକବାହିନୀ ପଦଦଳିତ ହୋଇଥିଲେ ଓ ଓଡ଼ିଶା ଭୂଖଣ୍ଡ ଆଫଗାନ ମୋଗଲ ଏବଂ ମରହଟ୍ଟା ଶକ୍ତିର ଉପଦ୍ରବରେ ପରାଜିତ ହୋଇଗଲା । ସମଗ୍ର ଭାରତବର୍ଷକୁ ଇଂରେଜ ବାହିନୀ ଶାସନାଧୀନ କରିଥିଲେ ମଧ୍ୟ ଓଡ଼ିଶା ଅକ୍ତିଆର କରିଥିଲା ୧୮୦୩ ମସିହାରେ । ପୂର୍ବ ଏବଂ ପର ଅବସ୍ଥାକୁ ଅନୁଧ୍ୟାନ କଲେ ଦେଖାଯାଏ ଯେ, ପ୍ରତି ବିଦେଶୀ ଶାସକଙ୍କ ଅମଳରେ ଓଡ଼ିଶାର କଳେବର କ୍ରମଶଃ ସଙ୍କୁଚିତ ହେବାରେ ଲାଗିଥିଲା । ବିଶେଷତଃ ଇଂରେଜ ଶାସନ କାଳରେ ଓଡ଼ିଶାର ଅସ୍ତିତ୍ୱ କିଛି ହିଁ ରହିଲା ନାହିଁ । ସେହି ସମୟରେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍ସି ଅନ୍ତର୍ଗତ, ଉପକୂଳବର୍ତ୍ତୀ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ବଙ୍ଗଳା ପ୍ରେସିଡ଼େନ୍ସୀ, ସମ୍ବଲପୁର ମଧ୍ୟପ୍ରଦେଶର ଶାସନାଧୀନ ହୋଇ ରହିଥିଲା । ଫଳରେ ଓଡ଼ିଆ ଭାଷାଭାଷୀ ଲୋକଙ୍କର ସ୍ୱତନ୍ତ୍ର ଭାଷା ଓ ଶାସନ ରହିଲା ନାହିଁ । ସେତେବେଳେ ଓଡ଼ିଆ ଭାଷାକୁ ଲୋପ କରିବା ପାଇଁ ଏକ ଚକ୍ରାନ୍ତ କରାଯାଇଥିଲା । ସରକାରୀ ସ୍ତରରେ ବଙ୍ଗଳା ଭାଷାକୁ ରାଜଭାଷା ରୂପେ ପ୍ରଚଳନ କରିବାର ପ୍ରଚେଷ୍ଟା ଚାଲୁ ରହିଥିଲା । ଓଡ଼ିଆ ଭାଷାର ଏପରି ଅଧୋଗତିକୁ ତତ୍କାଳୀନ ଓଡ଼ିଆ ଭାଷାର ରକ୍ଷକ ସେନାପତି ଫକୀର ମୋହନ ଲକ୍ଷ୍ୟକରି ବ୍ୟଥିତ ତଥା ମର୍ମାହତ ହୋଇଥିଲେ । ଓଡ଼ିଆ ଭାଷା ସୁରକ୍ଷା ଯୁଦ୍ଧରେ ସେ ଅଗ୍ରଣୀ ସାରଥୀ ରୂପେ ଅବତୀର୍ଣ୍ଣ ହୋଇ ରଣହୁଙ୍କାର ଦେଇଥିଲେ । ଏହି ଯୁଦ୍ଧ କ୍ଷେତ୍ରରେ ଯେଉଁ ଯୋଦ୍ଧାମାନେ ଭାଗ ନେଇଥିଲେ, ସେମାନଙ୍କ ମଧ୍ୟରେ ରାଧାନାଥ ରାୟ, ମଧୁସୂଦନ ରାଓ, ଗଙ୍ଗାଧର ମେହେର, କର୍ମବୀର ଗୌରୀଶଙ୍କର ଓ ନୀଳମଣି ବିଦ୍ୟାରତ୍ନ ପ୍ରଭୃତି ଅଗ୍ରଗଣ୍ୟ ଥିଲେ ଏବଂ ଆହୁରି ଅନେକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୧୮୮୫ ମସିହାରେ ପ୍ରତିଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ, ତତ୍କାଳୀନ ଭାରତର ସମସ୍ୟା ସଂପର୍କରେ ଆଲୋଚନା କରି ସରକାରଙ୍କ ନିକଟରେ ନିଜର ଦାବି ଉପସ୍ଥାପନ କରିବା ପାଇଁ ଚାହିଁଲେ । ସେହି ସମୟରେ ବ୍ୟାସକବି ଫକୀର ମୋହନ ସେନାପତି, ଗଙ୍ଗାଧର ମେହେର, ବିଚ୍ଛନ୍ଦ ପଟ୍ଟନାୟକ ପ୍ରମୁଖ ପ୍ରଥମେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଦାବି କରି ତତ୍କାଳୀନ ସରକାରଙ୍କୁ ଏକ ଦାବିପତ୍ର ଦେଇଥିଲେ । ସେହି ମୂଳଦୁଆକୁ ସୁଦୃଢ଼ କରିଥିଲେ କଟକର ଉତ୍କଳସଭା ଓ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଗଠିତ ହୋଇଥିବା 'ଉତ୍କଳ ସମ୍ମିଳନୀ' । ତତ୍ପରେ କ୍ରମାଗତ ଭାବରେ ବିଚ୍ଛିନ୍ନ ଓଡ଼ିଶାକୁ ଏକତ୍ର କରି ଏହାର ଏକ ରୂପରେଖ କରିବା ପାଇଁ ସାମୂହିକ ଭାବେ ଉଦ୍ୟମ ଜାରି ହୋଇରହିଲା । ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶା କଂଗ୍ରେସର କର୍ଣ୍ଣଧାର ସାଜି ଓଡ଼ିଶା ପ୍ରଦେଶ ଏକତ୍ରୀକରଣର ପ୍ରଦୀପକୁ ଜ୍ୱଳନକରି ରଖିଲେ । ଶେଷରେ ୧୯୩୬ ମସିହା ଏପ୍ରିଲ ମାସର ୧ ତାରିଖ ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱପ୍ନ ବାସ୍ତବର ରୂପ ନେଲା । ସେହି ଦିନ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଏହି ଛଅଗୋଟି ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହୋଇଥିଲା । ଅନୁଗୁଳ ଜିଲ୍ଲା ଦୁଇଭାଗ ହୋଇ କଟକ ଓ ଗଞ୍ଜାମ ଜିଲ୍ଲା ସହ ମିଶିଥିଲା ।

'କିଛି ନହେବାଠାରୁ କିଛି ହେବା ଭଲ' ନୀତିରେ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ସ୍ୱପ୍ନରେ ସ୍ୱପ୍ନାବିଷ୍ଟ ତତ୍କାଳୀନ ନବ ଓଡ଼ିଶାର ନିର୍ମାତାଗଣ ମଧୁବାବୁ, ପଣ୍ଡିତ ଗୋପବନ୍ଧୁ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଫକୀର ମୋହନଙ୍କ ସମେତ ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ ଆହୁରି ଅନେକ ଅଗ୍ରଣୀ ପରବର୍ତ୍ତୀ ସମୟରେ ଓଡ଼ିଶା କିପରି ସମ୍ପୂର୍ଣ୍ଣ ଓଡ଼ିଶା ଅର୍ଥାତ୍ ଅଖଣ୍ଡ ଓଡ଼ିଶା ହେବ, ସେ ଦିଗରେ ଉଦ୍ୟମ ଜାରି ରଖିଥିଲେ ।

ସମୟ ଗଡ଼ିଯାଏ ନଦୀର ଜଳଧାରା ପରି । ସ୍ୱତନ୍ତ୍ର ରାଜ୍ୟର ସମ୍ମାନ, ସ୍ୱତନ୍ତ୍ର ଓଡ଼ିଆର ପରିଚୟ ଏବେ ମଧ୍ୟ ଆମ୍ଭମାନଙ୍କ ଭିତରେ ପ୍ରବେଶ କରିପାରିନାହିଁ । ଦ୍ୱିଧାହୀନ ଭାବରେ ଆମ୍ଭେ ଓଡ଼ିଶାବାସୀ ମାଉସୀକୁ ଆପଣାର ଯେମିତି କରିପାରୁଛୁଁ, ନିଜ ମାଆର କାନ୍ଦୁରା ମୁହଁକୁ ଦେଖିପାରୁନୁ । ମନେପଡ଼େ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ଖେଦୋକ୍ତି-

'ତୋହର ଜନନୀ ବୀର ପ୍ରସବିନୀ
ଧୂଳିରେ ପଡ଼ିଛି ଦେଖ,
ଜନସମାଜରେ ଏ ମହୀ ମଧ୍ୟରେ
କିପରି ଦେଖାଉ ମୁଖ ?'

ଯେଉଁଦିନ ଆମେ ଓଡ଼ିଆ, ଆମ ଭାଷା ଓଡ଼ିଆ ଓ ଆମେ ଓଡ଼ିଶାବାସୀ ବୋଲି ଆମେ ଅନୁଭବ କରିବା, ସେହିଦିନ ସେହି ମହତ୍‌କାଂକ୍ଷୀ ଦେଶଭକ୍ତଙ୍କର ଶ୍ରମ ସାର୍ଥକ ହେଲା ବୋଲି ମନେ ହେବ ଏବଂ ସ୍ୱତନ୍ତ୍ର ଉତ୍କଳର ଦାୟାଦ ବୋଲି ଆମେ ଗର୍ବ କରିପାରିବା ।

ଦୋଳମଣ୍ଡପ ସାହି
ପୁରୀ - ୧

# ନିର୍ବାଚନ ପ୍ରଚାରପତ୍ର ଉପରେ ପ୍ରେସ୍ ନୋଟ୍

ଓଡ଼ିଶାର ୮୩ - ଲକ୍ଷ୍ମୀପୁର (ଏସ୍.ଟି.) ବିଧାନସଭା ନିର୍ବାଚନ ମଣ୍ଡଳୀ ପାଇଁ ଆସନ୍ତା ତା.୧୨.୦୪.୨୦୦୮ରିଖରେ ହେବାକୁ ଥିବା ଉପ ନିର୍ବାଚନ ପରିପ୍ରେକ୍ଷୀରେ ସୂଚାଇ ଦିଆଯାଉଛି ଯେ ଲୋକ ପ୍ରତିନିଧି ଅଧିନିୟମ, ୧୯୫୧ର ଧାରା-୧୨୭(କ)ରେ ନିର୍ବାଚନ ପ୍ରଚାରପତ୍ର, ପ୍ରାଚୀରପତ୍ର ଇତ୍ୟାଦି ଛପାଯିବା ଉପରେ କଟକଣା କରା ଯାଇଛି । ଏହି କଟକଣା ଅନୁଯାୟୀ ନିର୍ବାଚନ ସମୟରେ ଛପାଯାଇଥିବା ନିର୍ବାଚନ ପ୍ରଚାରପତ୍ର, ପ୍ରାଚୀରପତ୍ର ଇତ୍ୟାଦିଗୁଡ଼ିକର ପ୍ରମୁଖ ଭାଗରେ ମୁଦ୍ରାକର ଓ ପ୍ରକାଶକଙ୍କ ନାମ ଓ ଠିକଣା ନଥିଲେ କୌଣସି ବ୍ୟକ୍ତି ନିଜେ ଅଥବା ଅନ୍ୟ କାହାଦ୍ୱାରା ମୁଦ୍ରଣ କିମ୍ବା ପ୍ରକାଶନ କରିପାରିବେ ନାହିଁ । ଏଗୁଡ଼ିକ ଛାପିବା ପାଇଁ ପ୍ରକାଶକ ତାଙ୍କୁ ବ୍ୟକ୍ତିଗତ ଭାବେ ଜାଣିଥିବା ଦୁଇଜଣ ବ୍ୟକ୍ତିଙ୍କର ଦସ୍ତଖତ ଥାଇ ଗୋଟିଏ ଘୋଷଣାପତ୍ର ନିର୍ବାଚନ କମିଶନ ନିର୍ଦ୍ଧାରଣ କରିଥିବା ଫର୍ମରେ ମୁଦ୍ରାକରଙ୍କୁ ଦେବେ । ଏହି ନିର୍ବାଚନ ପ୍ରଚାରପତ୍ର, ପ୍ରାଚୀରପତ୍ର ଆଦି ଛପାଯିବାର ତିନିଦିନ ମଧ୍ୟରେ ମୁଦ୍ରାକର ଉପରୋକ୍ତ ଘୋଷଣାପତ୍ର ସହିତ ଛପାଯାଇଥିବା ପ୍ରଚାରପତ୍ର, ପ୍ରାଚୀରପତ୍ର ଇତ୍ୟାଦିର ଚାରୋଟି ଲେଖାଏଁ କପି, ରାଜ୍ୟ ରାଜଧାନୀରେ ଛପାଯାଇଥିବା କ୍ଷେତ୍ରରେ ମୁଖ୍ୟ ନିର୍ବାଚନ ଅଧିକାରୀଙ୍କୁ ଓ ଅନ୍ୟକ୍ଷେତ୍ରରେ ସଂପୃକ୍ତ ଜିଲ୍ଲାର ଜିଲ୍ଲାପାଳଙ୍କ ନିକଟକୁ ପଠାଇବେ । ଏହା ସହିତ ଛପାଯାଇଥିବା ପ୍ରଚାରପତ୍ର, ପ୍ରାଚୀରପତ୍ର ଇତ୍ୟାଦିର ସଂଖ୍ୟା ଓ ମୋଟ ଛପା ମୂଲ୍ୟ ନିର୍ବାଚନ କମିଶନ ନିର୍ଦ୍ଧାରଣ କରିଥିବା ପ୍ରୋଫର୍ମାରେ ଦେବେ ।

ଯଦି ଛପା ଯାଇଥିବା କାଗଜପତ୍ରରେ କୌଣସି ଅବୈଧ, ଅପରାଧମୂଳକ ଓ ଧର୍ମ, ବର୍ଣ୍ଣ, ଜାତି, ସଂପ୍ରଦାୟ, ଭାଷା ଓ ଚରିତ୍ର ସମ୍ବନ୍ଧୀୟ ଆପତ୍ତିମୂଳକ ବିଷୟ ଥାଏ, ତାହା ହେଲେ ସଂପୃକ୍ତ ବ୍ୟକ୍ତିଙ୍କ ବିରୁଦ୍ଧରେ ଆବଶ୍ୟକ ଦଣ୍ଡାତ୍ମକ ଓ ନିବାରକ କାର୍ଯ୍ୟପନ୍ଥା ଗ୍ରହଣ କରାଯିବା ଉଦ୍ଦେଶ୍ୟରେ ପ୍ରକାଶକ ଓ ମୁଦ୍ରାକରଙ୍କର ପରିଚୟ ଜାଣିବା ନିମନ୍ତେ ଉପରୋକ୍ତ କଟକଣାର ବ୍ୟବସ୍ଥା କରାଯାଇଛି । ଏହି ବ୍ୟବସ୍ଥାକୁ ଉଲଙ୍ଘନ କରୁଥିବା ରାଜନୈତିକ ଦଳ, ପ୍ରାର୍ଥୀ ଓ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟପନ୍ଥା ଗ୍ରହଣ କରାଯିବ । ଆବଶ୍ୟକସ୍ଥଳେ ଛାପାଖାନାର ଲାଇସେନ୍‌ସ ମଧ୍ୟ ରଦ୍ଦ କରାଯାଇପାରେ ବୋଲି ସ୍ୱରାଷ୍ଟ୍ର (ନିର୍ବାଚନ) ବିଭାଗପକ୍ଷରୁ ପ୍ରଦତ୍ତ ପ୍ରେସ୍ ନୋଟରେ କୁହାଯାଇଛି ।

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅନ୍ତରାଳେ

ସୁଷମା ମହାନ୍ତି

'ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।'

ଏହା କବିତା ନଥିଲା, ଥିଲା ମଧୁବାବୁଙ୍କର ପ୍ରାଣର ଉଚ୍ଛ୍ୱାସ । ଓଡ଼ିଶାର ଏକତ୍ରୀକରଣ କରିବାକୁ ଯାଇ ଦିନେ ସେ ନିଃସ୍ୱ କାଙ୍ଗାଳ ହୋଇ ଯାଇଥିଲେ । ଓଡ଼ିଶା ମାଟିରେ ଜନ୍ମ ହୋଇବି କର୍ମଭୂମି ଥିଲା ତାଙ୍କର ପଡ଼ୋଶୀ ବଂଗ ପ୍ରଦେଶ । ମାତ୍ର ଉତ୍କଳର ଏକତ୍ରୀକରଣ କରିବାକୁ ଯାଇ ବଙ୍ଗାଳୀଙ୍କୁ ବିରୋଧ କରିବାକୁ ବି ସେ ତିଳେ ହେଲେ କୁଣ୍ଠାବୋଧ କରି ନାହାନ୍ତି । ସେ ଜାଣିଥିଲେ, ଗଙ୍ଗାଠାରୁ ଗୋଦାବରୀ ଯାଏଁ ବିସ୍ତୃତ ଅଞ୍ଚଳ ଆଜି ଖଣ୍ଡବିଖଣ୍ଡିତ । ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ଓ ବଙ୍ଗଳା ଓଡ଼ିଶାର ବିସ୍ତୃତ ଅଞ୍ଚଳ ନିଜ ନିଜ ଅକ୍ତିଆରରେ ରଖି ଓଡ଼ିଶାକୁ ଏକ କ୍ଷୁଦ୍ର ସୀମାରେଖାରେ ସୀମିତ ରଖିଛନ୍ତି । ଏହା ତାଙ୍କୁ ବ୍ୟଥିତ କରିଥିଲା ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ 'ଉତ୍କଳ ସମ୍ମିଳନୀ' ଥିଲା ଅଗ୍ନିସ୍ଫୁଲିଙ୍ଗ । ମଧୁବାବୁଙ୍କ ଓଜସ୍ୱିନୀ ଭାଷଣ ଆଉ ତେଜୋଦୀପ୍ତ ଲେଖାମାନ ସମଗ୍ର ଓଡ଼ିଆ ପ୍ରାଣକୁ ଉଦ୍‌ବୁଦ୍ଧ କରିଥିଲା । ୧୯୦୩ ମସିହାରେ କଟକର ଇଦ୍‌ଗା ପଡ଼ିଆଠାରେ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା ରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓଙ୍କ ସଭାପତିତ୍ୱରେ ।

ବଙ୍ଗ-ବିହାର-ଓଡ଼ିଶା ସେତେବେଳେ ଏକ ଶାସନାଧୀନ ଥିଲା । ବଙ୍ଗାଳୀମାନେ ଇଂରେଜମାନଙ୍କ ଉପରେ ଚାପ ପକାଇ 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି ପ୍ରଚାର କରି ଦେଇଥିଲେ । ସେତେବେଳେ ଏହାକୁ ନେଇ ଓଡ଼ିଶାର ଶିକ୍ଷିତ ସମାଜ ତୀବ୍ର ଆନ୍ଦୋଳନ ଚଳାଇଥିଲେ ଓ ଫଳ ସ୍ୱରୂପ ୧୯୦୨ ମସିହାରେ ଓଡ଼ିଆକୁ ସ୍ୱତନ୍ତ୍ର ଭାଷାର ମାନ୍ୟତା ମିଳିଥିଲା । ଏଥିପାଇଁ ମଧୁସୂଦନଙ୍କର ବି ପ୍ରଚେଷ୍ଟା କିଛି କମ୍ ନଥିଲା ।

ସେତେବେଳକୁ ଭାରତୀୟ ଜାତୀୟ କଂଗ୍ରେସ ସ୍ୱାଧୀନତା ସଂଗ୍ରାମର ଅୟମାରମ୍ଭ କରି ଦେଇଥାନ୍ତି । ୧୯୦୩ ମସିହାରେ ବଙ୍ଗଳାର ସାର୍ ସୁରେନ୍ଦ୍ରନାଥ ବନ୍ଦୋପଧ୍ୟାୟ ବେଙ୍ଗଲ ପ୍ରାଦେଶିକ କଂଗ୍ରେସ ଗଠନ କରି ଓଡ଼ିଶାକୁ ଏହାର ଅଧୀନରେ ରଖିବାକୁ ମଧୁବାବୁଙ୍କୁ ଅନୁରୋଧ କଲେ । ସେତେବେଳେ ଏହା ମଧୁବାବୁଙ୍କ ହୃଦୟକୁ ବ୍ୟଥିତ କରିଥିଲା ଏବଂ ସେ ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଠିକ୍ ସେହି ସମୟରେ ଗଞ୍ଜାମରେ ଓଡ଼ିଆମାନେ 'ଗଞ୍ଜାମ ଜାତୀୟ ସମିତି' ଗଠନ କରି ଆନ୍ଧ୍ର ଭାଷାକୁ ପ୍ରବଳ ବିରୋଧ କରୁଥାନ୍ତି । ମଧୁବାବୁଙ୍କୁ ଏହି ସମ୍ମିଳନୀକୁ ସେମାନେ ଆମନ୍ତ୍ରିତ କରିଥିଲେ ଏବଂ ଗଞ୍ଜାମବାସୀଙ୍କ ଉତ୍ସାହ ତାଙ୍କ ପାଇଁ ନୂତନ ପ୍ରେରଣା ଜାଗ୍ରତ କରିଥିଲା । ସେଠାରୁ ଫେରି ସେ 'ଉତ୍କଳ ସମ୍ମିଳନୀ'ର ଶୁଭାରମ୍ଭ କରିଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ 'ଉତ୍କଳ ସମ୍ମିଳନୀ' ଥିଲା ଅଗ୍ନିସ୍ଫୁଲିଙ୍ଗ । ମଧୁବାବୁଙ୍କ ଓଜସ୍ୱିନୀ ଭାଷଣ ଆଉ ତେଜୋଦୀପ୍ତ ଲେଖାମାନ ସମଗ୍ର ଓଡ଼ିଆ ପ୍ରାଣକୁ ଉଦ୍‌ବୁଦ୍ଧ କରିଥିଲା । ୧୯୦୩ ମସିହାରେ କଟକର ଇଦ୍‌ଗା ପଡ଼ିଆଠାରେ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା ରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓଙ୍କ ସଭାପତିତ୍ୱରେ । ଏଥିରେ ବିଚ୍ଛିନ୍ନାଞ୍ଚଳକୁ ଏକତ୍ର କରିବା ପାଇଁ ଚାରୋଟି ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା । ତାହା ହେଲା-

୧ - ପ୍ରାକୃତିକ ଉତ୍କଳର ଏକତ୍ରୀକରଣ,

୨ - ଉତ୍କଳର ସର୍ବାଙ୍ଗୀନ ଉନ୍ନତି ସାଧନ,

୩- ଓଡ଼ିଆ ଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନର ଅନ୍ତର୍ଭୁକ୍ତ,

୪ - ପ୍ରବାସୀ ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷଣ ।

ସେତେବେଳେ ମଧୁସୂଦନ ଜଣେ ବିଚକ୍ଷଣ ଓକିଲ ଭାବରେ ସାରା ଭାରତ ତଥା ଇଂଲଣ୍ଡରେ ମଧ ନାମ କମାଇ ସାରିଥିଲେ । ତେଣୁ ଓଡ଼ିଶାର ଅନେକ ରାଜା ମହାରାଜା ତାଙ୍କୁ ପ୍ରଭୂତ ଅର୍ଥ ଦେଇ ନିଜର ଓକିଲ ଭାବରେ ନେବାପାଇଁ ଉତ୍ସୁକ ଥିଲେ । ଏହାଥିଲା ମଧୁସୂଦନଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ । ଓଡ଼ିଶାରେ ସେତେବେଳର ନେତାଗୋଷ୍ଠୀ, ଶିକ୍ଷିତ ସମାଜ ଓ ରାଜା ମହାରାଜାମାନଙ୍କର ପ୍ରବଳ ପ୍ରଚେଷ୍ଟା ଓ ପ୍ରଗାଢ଼ ଅନୁରାଗ ହେତୁ ଏହି ସମ୍ମିଳନୀ ଉତ୍ସାହ ଓ ଉଦ୍ଦୀପନାର ସହିତ ଆଗେଇ ଚାଲିଲା । ସମସ୍ତେ ଏକ ଜାତୀୟତାର

ଐକ୍ୟରେ ବାନ୍ଧି ହୋଇ ପଡ଼ିଲେ । ସେତେବେଳେ ଧର୍ମରୁ ରାଜନୀତିକୁ ବାଦ୍‌ଦେଇ ସାରା ଓଡ଼ିଶାର ଧନୀ-ଦରିଦ୍ର ନିର୍ବିଶେଷରେ ସମସ୍ତେ ଏହି ସମ୍ମିଳନୀର ସଦସ୍ୟ ହେବାପାଇଁ ମଧୁସୂଦନ ଯେଉଁ ଡାକରା ଦେଇଥିଲେ, ପରବର୍ତ୍ତୀ କାଳରେ ଭାରତ ସରକାର ମଧ ଏହି ନୀତିକୁ ଅନୁସରଣ କରିଥିବା ନଜିର ଅଛି । ସାଧାରଣ ଜୀବନକୁ ପ୍ରଭାବିତ କରିବାପାଇଁ ଯୁବଗୋଷ୍ଠୀ ପାଇଁ ବହୁ ଜାତୀୟବାଦୀ କବିତା ମଧୁବାବୁ ରଚନା କରିଥିଲେ । ପ୍ରତିବର୍ଷ ଏହି ସମ୍ମିଳନୀ ଓଡ଼ିଶାର କେଉଁଠି ନା କେଉଁଠି ଅନୁଷ୍ଠିତ ହେବାକୁ ଲାଗିଲା ।

ମଧୁସୂଦନଙ୍କ ସହିତ ସେତେବେଳେ ଗୋପବନ୍ଧୁ, ଗୋଦାବରୀଶ ମିଶ୍ର, ମୁକୁନ୍ଦପ୍ରସାଦ ଦାସ, କୃପାସିନ୍ଧୁ ଦାସ, ବିଚିତ୍ରାନନ୍ଦ, ଭିକାରୀ ପଟ୍ଟନାୟକ, ରାଜା ବୈକୁଣ୍ଠନାଥ ଦେ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓ, ସୁଦାମ ନାୟକ, ରାଜା କୃଷ୍ଣଚନ୍ଦ୍ର ଗଜପତି, ଗୋପାଳଚନ୍ଦ୍ର ପ୍ରହରାଜ ଇତ୍ୟାଦି ବହୁ ରାଜା, ନେତାଗଣ ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱମାନ ସହଯୋଗ କରିଥିଲେ । ମଧୁସୂଦନ କହୁଥିଲେ - ଏହି ସମ୍ମିଳନୀ ଉତ୍କଳବାସୀଙ୍କ ସମ୍ମିଳନୀ - ଜନନୀ ଜନ୍ମଭୂମିର ପୂଜାମଣ୍ଡପ ।

> ୧୯୧୪ ଅପ୍ରେଲ ପହିଲାରେ ବଙ୍ଗଠାରୁ ବିଚ୍ଛିନ୍ନ ହୋଇ ବିହାର-ଓଡ଼ିଶା ଏକ ଶାସନାଧୀନ ହେଲା ।

ପୁଣି ୧୯୦୮ ମସିହାରେ ମଧୁସୂଦନ ଇଂଲଣ୍ଡ ଯାଇ 'Discontented India' ନାମକ ଏକ ପୁସ୍ତକ ପ୍ରକାଶ କରି ପାର୍ଲାମେଣ୍ଟ ସଭ୍ୟ ଓ ସାମ୍ବାଦିକମାନଙ୍କ ନିକଟରେ ଓଡ଼ିଆ ଆନ୍ଦୋଳନର ସଫଳ ରୂପରେଖ ପ୍ରଦାନ କଲେ । ୧୯୧୪ ଅପ୍ରେଲ ପହିଲାରେ ବଙ୍ଗଠାରୁ ବିଚ୍ଛିନ୍ନ ହୋଇ ବିହାର-ଓଡ଼ିଶା ଏକ ଶାସନାଧୀନ ହେଲା ।

୧୯୧୭ ମସିହାରେ କଲିକତାରେ ପ୍ରବାସୀ ଓଡ଼ିଆମାନେ ଏକ ବିରାଟ ସଭାକରି ମଧୁସୂଦନଙ୍କୁ ନିମନ୍ତ୍ରଣ କରିଥିଲେ । ମଧୁବାବୁ ଏହି ସଭାରେ ନିଜର ଓଜସ୍ୱିନୀ ଭାଷଣରେ ସମସ୍ତଙ୍କୁ ମୁଗ୍ଧ କରିଥିଲେ । ଏହି ସମୟରେ ନିଜେ 'The Oriya' ନାମକ ଏକ ସାପ୍ତାହିକ ବାହାର କରି ଓଡ଼ିଆଙ୍କ ସମସ୍ତ ଦାବି ଉପସ୍ଥାପିତ କରୁଥିଲେ । ସେତିକିବେଳେ, ମଣ୍ଟେଗୁ-ଚେମ୍‌ସ ଫୋର୍ଡ଼ଙ୍କୁ ସେ କଲିକତାଠାରେ ସାକ୍ଷାତ କରି ଏକ ପତ୍ର ମାଧ୍ୟମରେ ଓଡ଼ିଆଙ୍କ ଦାବି ସଂପର୍କରେ ଅବଗତ କରାଇ ଥିଲେ । ଉକ୍ତ ପତ୍ରରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ଲୋକେ କିଭଳି ଓଡ଼ିଆ ସାଂସ୍କୃତିକ, ରାଜନୈତିକ, ଅର୍ଥନୈତିକ ଓ ଶିକ୍ଷାଗତ ଦୂରତ୍ୱରେ ଛଟପଟ ହେଉଛନ୍ତି, ତା'ର ବିସ୍ତୃତ ବିବରଣୀ ଦେବା ସହିତ ସେହି ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ଯେ ଏକାନ୍ତ ଅପରିହାର୍ଯ୍ୟ, ତାହା ଦର୍ଶାଯାଇଥିଲା । ବଙ୍ଗଳାରେ କେନ୍ଦ୍ରୀୟ, ମହମ୍ମଦୀୟ ସଂଘ ଓ ବଙ୍ଗଳା ଜାତୀୟ ବାଣିଜ୍ୟ ପ୍ରତିଷ୍ଠାନର କର୍ମକର୍ତ୍ତାମାନେ ମଧ ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରାଯିବାକୁ ସରକାରଙ୍କଠାରେ ଦାବି କଲେ ।

୧୯୨୧ ମସିହାରେ ଓଡ଼ିଶା ନିଜ ରାଜ୍ୟର ସ୍ୱାର୍ଥସିଦ୍ଧି ପାଇଁ ସାଇମନ କମିଶନ୍‌ଙ୍କୁ ସାକ୍ଷାତକରି ସହଯୋଗର ହାତ ବଢ଼ାଇଥିଲେ । ଏହାର ନେତୃତ୍ୱ ନେଇଥିଲେ କନିକାରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓ, ବ୍ରଜସୁନ୍ଦର ଦାସ, ଗୋପାଳ ଚନ୍ଦ୍ର ପ୍ରହରାଜ, ଭିକାରୀ ଚରଣ ପଟ୍ଟନାୟକ ଇତ୍ୟାଦି ବହୁ ନେତା ଓ ବିଶିଷ୍ଟ ବ୍ୟକ୍ତିମାନେ । ୧୯୩୧ ମସିହାରେ ଅଟଲି ସବ୍‌କମିଟି ଗଠିତ ହୋଇ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ହେବାର ସୁଯୋଗ ସୃଷ୍ଟି ହୋଇଥିଲା । ଶେଷରେ ୧୯୩୬ ମସିହା ଅପ୍ରେଲ ମାସର ୧ ତାରିଖରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା । ମାତ୍ର ଓଡ଼ିଆମାନଙ୍କ କଷ୍ଟଲବ୍ଧ ଏହି ଆନନ୍ଦ ମୁଖରିତ ଉତ୍ସବରେ ଯୋଗଦେବାକୁ କିନ୍ତୁ ମଧୁସୂଦନ ଦାସ ଆଉ ନଥିଲେ ।

ଇ: ବି- ୫୯୧/୫୯୨
ବ୍ରିଟ କଲୋନୀ, ବଡ଼ଗଡ଼
ଭୁବନେଶ୍ୱର-୧୮




ଜୟଦେବ ଭବନଠାରେ 'କାନ୍ତ ସଂଗୀତ ସନ୍ଧ୍ୟା'କୁ ଉଦ୍‌ଘାଟନ କରୁଛନ୍ତି ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଏବଂ ''ତରାନା'' ଗ୍ରୁପ ପକ୍ଷରୁ କାନ୍ତ ସଂଗୀତ ପରିବେଷଣ କରାଯାଉଛି । ୧୯.୦୩.୦୮

# ଆମ ମାତୃଭାଷାର ବର୍ତ୍ତମାନ ଓ ଭବିଷ୍ୟତ

ଚନ୍ଦ୍ରଶେଖର ଦାସବର୍ମା

**ବ**ର୍ତ୍ତମାନ ସାରା ବିଶ୍ୱରେ 'ଆନ୍ତର୍ଜାତିକ ମାତୃଭାଷା ଦିବସ' ପାଳିତ ହେଉଛି । ଏହି ଦିବସ ପାଳନର ବେଶ୍ ତାତ୍ପର୍ଯ୍ୟ ଅଛି । କାରଣ ଆମ ମାତୃଭାଷାର ଭବିଷ୍ୟତ ଏଥି ସଂଗେ ଜଡ଼ିତ । ମାତୃଭାଷା ସହିତ ପ୍ରତ୍ୟେକ ବ୍ୟକ୍ତିର କ୍ଷୀରନୀର ସଂପର୍କ ରହିଛି । ମାତୃଭାଷା ମଣିଷର ଅସ୍ତିତ୍ୱ ସହ ଜଡ଼ିତ । ଏହା ମଣିଷ ଜୀବନର ଭାଷା । ଏହା ପ୍ରାଣର ଭାଷା, ମା'ର ଭାଷା । ଯଦି ଆମେ ନିଜ ମାତୃଭାଷାର ରକ୍ଷା ପାଇଁ ଚିନ୍ତା ନକରିବା ତେବେ ଏ ଦେଶ ଏ ଜାତି କେବେ ହେଲେ ଉନ୍ନତି କରିପାରିବ ନାହିଁ । ଇଂରେଜମାନଙ୍କର ଶାସନ କାଳରେ ଏହି ଭାଷାର ଉନ୍ନତି ଗୁରୁତର ଭାବରେ ବ୍ୟାହତ ହୋଇଥିଲା । ଏହା ଓଡ଼ିଆମାନଙ୍କର ସ୍ୱାଭିମାନକୁ ଦୋହଲାଇ ଦେଇଥିଲା । ଓଡ଼ିଆ ଭାଷାକୁ ବଞ୍ଚେଇ ରଖିବା ପାଇଁ ଆମ ପୂର୍ବସୂରୀମାନେ ଆନ୍ଦୋଳନ କରିଥିଲେ । ତାଙ୍କରି ସଂଗ୍ରାମ ଫଳରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଲା ଏବଂ ୧୯୩୬ ମସିହାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକମାନେ ଏକତ୍ର ହେଲେ । ଏହି ସ୍ୱତନ୍ତ୍ର ପ୍ରଦେଶ ଗଠନ ହେଲାପରେ ଓଡ଼ିଆ ଭାଷା ବିଶ୍ୱ ଦରବାରରେ ଅନ୍ୟତମ ପ୍ରାଚୀନ ଭାଷା ରୂପେ ସ୍ୱୀକୃତ ହେଲା । ଏହି ସାଂସ୍କୃତିକ ଭାଷାର ଉତ୍ତରାଧିକାରୀ ହିସାବରେ ଆମେ ଗର୍ବ ଅନୁଭବ କରୁଁ ।

ଓଡ଼ିଆ ଭାଷାର ଆରମ୍ଭ ହୁଏ ସାରଳା ଦାସଙ୍କ ସମୟରୁ । ସାରଳା ଦାସ ତାଳପତ୍ରରେ ଲେଖିଥିଲେ ବିରାଟ ମହାଭାରତ । ସେଇଥିରୁ ହିଁ ଜଣାପଡ଼େ ଓଡ଼ିଆ ଭାଷାର ରୂପରେଖ । ତା'ପରେ ସେ ରଚନା କରନ୍ତି ରାମାୟଣ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତି ପୂର୍ବରୁ ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କର ଜଗମୋହନ ରାମାୟଣ, ଜଗନ୍ନାଥ ଦାସଙ୍କର ଶ୍ରୀମଦ୍ ଭାଗବତ ଏବଂ ଅଚ୍ୟୁତାନନ୍ଦ ଦାସଙ୍କର ହରିବଂଶ ରଚିତ ହୋଇ ସାମାଜିକ ସ୍ୱୀକୃତି ଲାଭ କରି ସାରିଥାଏ । ଜନସାଧାରଣଙ୍କର ଆଶା ଓ ଆକାଂକ୍ଷାକୁ ଉପେନ୍ଦ୍ର ଭଂଜଙ୍କର କାବ୍ୟ ରଚନାବଳୀ ବେଶ ପରିମାଣରେ ପୂରଣ କଲା । ଏଥିରୁ ଓଡ଼ିଆ ଭାଷାର ମହାତ୍ମ୍ୟ ବେଶ ଉପଲବ୍ଧି କରିହୁଏ । କାରଣ ଏ ସବୁ ରଚନା ସମୂହ ସାମାଜିକ ଜୀବନରେ ଖୁବ୍ ପ୍ରଭାବ ପକାଇଥାଏ । ଓଡ଼ିଆ ଭାଷାର ଉନ୍ନତି ନିମନ୍ତେ ଏହି ସାଧକଗଣଙ୍କର ଅହରହ ସାଧନାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ତଥାପି ଓଡ଼ିଆ ଭାଷା ଇଂରାଜୀ ଭାଷାର କବଳରୁ ସଂପୂର୍ଣ୍ଣ ରୂପେ ମୁକ୍ତି ଲାଭ କରିପାରିନାହିଁ । ଆମ ରାଜ୍ୟର ଲୋକେ ପାଶ୍ଚାତ୍ୟ ସଭ୍ୟତା ଏବଂ ସଂସ୍କୃତିକୁ ଏ ପର୍ଯ୍ୟନ୍ତ ଭୁଲି ପାରିନାହାନ୍ତି । ମଧୁବାବୁ, ଗୋପବନ୍ଧୁ, ନୀଳକଣ୍ଠ, ରାଧାନାଥ, ମଧୁସୂଦନ, ଫକୀରମୋହନଙ୍କର ସାହିତ୍ୟର ପ୍ରଭାବକୁ ସେମାନେ ଆଦରି ନେଇ ନାହାନ୍ତି । ଓଡ଼ିଆ ଭାଷାରେ ଲିଖିତ ପ୍ରମୁଖ ଗ୍ରନ୍ଥାବଳୀମାନଙ୍କୁ ସେମାନେ ଅଧ୍ୟୟନ କରୁନାହାନ୍ତି । କାରଣ ଏହି ଭାଷା ଅଧ୍ୟୟନ କଲେ ସେମାନଙ୍କର ଭବିଷ୍ୟତ ଅନ୍ଧକାର ବୋଲି ସେମାନେ ମନେ କରନ୍ତି । ଏଥିପାଇଁ ସେମାନେ ଏହି ଭାଷାର ଉନ୍ନତି ନିମନ୍ତେ ତତ୍ପର ନୁହନ୍ତି । ଓଡ଼ିଆ ସାହିତ୍ୟ ଅନେକ ଭାବରେ ସମୃଦ୍ଧ ହେଲେ ମଧ୍ୟ କେବଳ ସୀମିତ ଶ୍ରେଣୀରେ ସୀମାବଦ୍ଧ ହେଉଛି । ବିଂଶ ଶତାବ୍ଦୀର ଶେଷଭାଗକୁ ଏହାର ପ୍ରଭାବ ଯୁବଗୋଷ୍ଠୀଙ୍କ ଉପରେ ଆଦୌ ପଡୁନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଦ୍ୟାଳୟଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଓଡ଼ିଆ ଶ୍ରେଣୀରେ ଶିକ୍ଷାର୍ଥୀମାନଙ୍କର ଉପସ୍ଥାନ ବେଶ୍ ନୈରାଶ୍ୟଜନକ ମନେହୁଏ । ସେମାନେ କୁହନ୍ତି, ଏହି ଭାଷା ତାଙ୍କର ଜୀବିକା ନିର୍ବାହରେ କୌଣସି ପ୍ରକାରେ ସାହାଯ୍ୟ କରିବ ନାହିଁ ।

ଏଥିପାଇଁ ଛାତ୍ରମାନଙ୍କୁ ସଂପୂର୍ଣ୍ଣ ରୂପେ ଦାୟୀ କରାଯାଇ ପାରେନା । ସେମାନଙ୍କର ପିତାମାତାମାନେ ମଧ ସମପରିମାଣରେ ଦାୟୀ । ଓଡ଼ିଆ ଭାଷା ଏବଂ ସାହିତ୍ୟକୁ କେବଳ ଇଂରାଜୀ ମାଧ୍ୟମ ବିଦ୍ୟାଳୟ ଓ ଅନ୍ୟାନ୍ୟ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରି ପିଲାମାନଙ୍କୁ ବାଧ୍ୟ କଲେ ଉଚିତ ହେବ ନାହିଁ । ବରଂ ଛାତ୍ରଛାତ୍ରୀମାନେ କିଭଳି ଆଗ୍ରହର ସହ ଓଡ଼ିଆ ସାହିତ୍ୟକୁ ପଢ଼ିବେ ଏବଂ ଓଡ଼ିଆ ଭାଷାକୁ ସେମାନେ ତାଙ୍କର ଦୈନନ୍ଦିନ ବ୍ୟବହାରରେ ଲଗାଇବେ ତଥା ଭାବର ଆଦାନପ୍ରଦାନ କହିପାରିବେ ସେଥିପାଇଁ ଆମକୁ ବିଦ୍ୟାଳୟସ୍ତରରୁ ଯତ୍ନବାନ ହେବାକୁ ପଡ଼ିବ ଓ ପାଠ୍ୟକ୍ରମରେ ଆବଶ୍ୟକ ପରିବର୍ତ୍ତନ ତଥା ନୂତନତ୍ୱ ଆଣିବାକୁ ପଡ଼ିବ । ଓଡ଼ିଆ ଭାଷାର ବ୍ୟବହାରିକ ଦିଗପ୍ରତି ଯଥେଷ୍ଟ ଧ୍ୟାନ ଦେବାକୁ ପଡ଼ିବ । ଓଡ଼ିଆ ଭାଷାରେ ଗଳ୍ପ, କବିତା, ସଙ୍ଗୀତ ପ୍ରବନ୍ଧ ବା ନାଟକ ଲେଖିବା ସହିତ

ଓଡ଼ିଆରେ ଅଭିନୟ କରିବା ଭଳି ପଦକ୍ଷେପ ନେବାକୁ ପଡ଼ିବ । ତା' ସହିତ ବିଜ୍ଞାନ, ବାଣିଜ୍ୟ ଇତ୍ୟାଦି ପାଠ୍ୟକ୍ରମ ଓଡ଼ିଆ ଭାଷାରେ ପ୍ରଚଳନ ହେବା ଆବଶ୍ୟକ । ଏସବୁ କଲେ ପିଲାମାନେ ଓଡ଼ିଆ ଭାଷାକୁ ବେଶି ସମୟ ଉପେକ୍ଷା କରିବେ ନାହିଁ । ପିତାମାତା ବା ଗୁରୁଜନମାନେ ଏ ବିଷୟପ୍ରତି ଧ୍ୟାନ ନଦେଇ ନିଜର ଛୋଟ ଛୋଟ ପିଲାମାନଙ୍କୁ ଇଂରାଜୀ ସ୍କୁଲରେ ପଢ଼ାଉଛନ୍ତି - ଏହାଦ୍ୱାରା ସେମାନେ ଏସବୁ ଜାତିର କେତେ ଯେ କ୍ଷତି କରୁଛନ୍ତି ସେମାନେ ଜାଣି ପାରୁନାହାନ୍ତି ଏବଂ କେବଳ ସେ ଇଂରାଜୀ ଭାଷା ଶିଖିଲେ ଜୀବନରେ ମଣିଷ ହୋଇ ଠିଆ ହେବ ଏ ଧାରଣା ସେମାନଙ୍କର ମନରୁ ଦୂରେଇ ଯିବା ଉଚିତ । ରାଜ୍ୟସାରା ଓଡ଼ିଆ ଭାଷାକୁ ଯଥା ମାନ୍ୟ ଦେବା ପାଇଁ ଜନସାଧାରଣ ଏବେ ଅଣ୍ଟା ଭିଡ଼ିଲେଣି । ସରକାର 'ଓଡ଼ିଆ ଭାଷା ପରିଷଦ' ନାମକ ଏକ ସଂସ୍ଥା ଗଠନ କରି, ଏହା ମାଧ୍ୟମରେ ଗୁଡ଼ିଏ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଏହା ଅବଶ୍ୟ ପ୍ରଶଂସନୀୟ । କିନ୍ତୁ ଏଥିପାଇଁ ସାମାଜିକ ସଚେତନତା ନିହାତି ଜରୁରୀ । ଭାରତୀୟ ସାହିତ୍ୟ ଦରବାରରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ପ୍ରକୃତ ସ୍ଥାନ ଦେବାକୁ ଏବେ ସମୟ ଆସିଛି । ଯଦି ମାତୃଭାଷାରେ ରଚିତ ପ୍ରତ୍ୟେକ ଦୁର୍ମୂଲ୍ୟ ଗ୍ରନ୍ଥକୁ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୁଦିତ କରାଯାଇ ପାରନ୍ତା ତା'ହେଲେ ଏହି ଭାଷାର ପ୍ରଭାବ ଏବଂ ଉପକାରିତା ଅନ୍ୟ ଭାଷାଭାଷୀ ଅଞ୍ଚଳକୁ ବ୍ୟାପନ୍ତା ଏବଂ ସେମାନଙ୍କ ଭାଷା ସାହିତ୍ୟକୁ ମଧ୍ୟ ଆମେ ଓଡ଼ିଆ ଭାଷାରେ ଅନୁବାଦ କରିବାରେ ଆଦୌ ଅସୁବିଧା ରହନ୍ତା ନାହିଁ । ତା'ନହେଲେ ବହୁ ଉଚ୍ଚ ଚିନ୍ତାରେ ସମୃଦ୍ଧ ଓଡ଼ିଆ ଭାଷାର ମୂଲ୍ୟବାନ ଗ୍ରନ୍ଥସବୁ ଆଉ କିଛି ବର୍ଷ ପରେ ଅଲୋଡ଼ା ଅଖୋଜା ହୋଇ ପାଠାଗାରର ଥାକରେ ସ୍ଥାନ ପାଇବ । ଏହା ଓଡ଼ିଶାର ସୀମାଟପି ବାହାରକୁ ଯାଇପାରିବ ନାହିଁ । କେତେ ଦିନ ଧରି ଆମେ ପଡ଼ୋଶୀ ଭାଷାର ସାନ ଭଉଣୀ ବୋଲି ନିଜକୁ ସମ୍ବୋଧିତ କରି ଆନନ୍ଦ ଲାଭ କରିବା ? ଆଉ କିଛି ଦିନ ଏହିପରି ଅବସ୍ଥା ଲାଗି ରହିଲେ ଓଡ଼ିଆ ଭାଷାରେ ଅବକ୍ଷୟ ଯେ ଅବଶ୍ୟମ୍ଭାବୀ ଏଥିରେ ସନ୍ଦେହ ନାହିଁ ।

ନିକଟ ଅତୀତରେ ଜର୍ମାନର ଏକ ସଂସ୍ଥା ସର୍ବେକ୍ଷଣ କରି ମତ ଦେଇଛନ୍ତି ଯେ ଏବେ ବିଶ୍ୱରେ ୬ ହଜାରରୁ ୭ ହଜାର ଭାଷାର ଅସ୍ତିତ୍ୱ ଅଛି । ଆଉ କିଛି ବର୍ଷ ପରେ ଏହି ସଂଖ୍ୟା କମି କମି ୧୦୦୦ରେ ପହଞ୍ଚିବ । କାରଣ ଏକ ସମୀକ୍ଷାରୁ ଜଣାପଡ଼ିଛି ଯେ ବିଶ୍ୱ ଜନସଂଖ୍ୟାର ୯୫ ଭାଗ ବର୍ତ୍ତମାନ କେବଳ ୧୦୦ଟି ଭାଷାରେ କଥାବାର୍ତ୍ତା କରୁଛନ୍ତି । ଆହୁରି ଆଶ୍ଚର୍ଯ୍ୟର କଥାହେଲା ଯେ ବିଶ୍ୱର ପ୍ରାୟ ଅର୍ଦ୍ଧେକ ଲୋକ ୮ଟି ଭାଷାରେ କଥାବାର୍ତ୍ତା କରିଥାନ୍ତି । ସେଗୁଡ଼ିକ ହେଲା ହିନ୍ଦୀ, ଇଂରାଜୀ, ବଙ୍ଗଳା, ଆରବୀ, ଚୀନ, ସ୍ପେନିସ୍, ରୁଷ ଓ ପର୍ତ୍ତୁଗୀଜ । ଏହି ପରିସଂଖ୍ୟାନରୁ ଭାଷାର ଅବକ୍ଷୟ ବିଷୟରେ ଧାରଣା କରିହୁଏ । ଆସନ୍ତା ୧୦୦ ବର୍ଷ ମଧ୍ୟରେ ଯେଉଁ କେତୋଟି ଭାଷାର ଅବକ୍ଷୟ ଘଟିବ ବୋଲି କୁହାଯାଇଛି ତା'ମଧ୍ୟରେ ଓଡ଼ିଆ ଭାଷା ସ୍ଥାନ ପାଇଛି । ଏଣୁ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ପାଇଁ ସମସ୍ତ ପ୍ରକାରର ଉଦ୍ୟମ ଜାରି ରହିଛି । ଖାଲି ସରକାରୀ ସ୍ତରରେ ନୁହେଁ, ବେସରକାରୀ ସ୍ତରରେ ମଧ୍ୟ ନିଜ ମାତୃଭାଷାର ପ୍ରଚାର ଏବଂ ପ୍ରସାର ପାଇଁ ପଦକ୍ଷେପ ନେବା ଜରୁରୀ ହୋଇପଡ଼ିଛି । ବିଭିନ୍ନ ସଭାସମିତି ମାଧ୍ୟମରେ ମଧ୍ୟ ଏଥିପାଇଁ ସଚେତନତା ସୃଷ୍ଟି କରାଯାଉଛି । ଏହିଭଳି ଅବସ୍ଥାରେ ପ୍ରତ୍ୟେକ ଓଡ଼ିଆର କିଛିନା କିଛି କର୍ତ୍ତବ୍ୟ ରହିଛି । ନିଜ ଭାଷାକୁ ସମ୍ମାନ କରି ଘରେ ଘରେ ପିଲାଙ୍କୁ ଭଲ ଓଡ଼ିଆ ଶିଖାଇବାକୁ ପଡ଼ିବ । ଏହାର ମାନେ ନୁହେଁ ଯେ ଅନ୍ୟ ଭାଷାକୁ ଅବମାନନା କରିବା । ବରଂ ନିଜ ଭାଷାକୁ ପ୍ରାଧାନ୍ୟ ଦିଆଯିବା ଦରକାର । ପ୍ରଥମେ ନିଜ ଘର ଠିକ୍ ରଖିଲେ ଆମେ ପଡ଼ୋଶୀମାନଙ୍କର ଘର କଥା ଜାଣିପାରିବା ।

ଏହି ପରିସଂଖ୍ୟାନରୁ ଭାଷାର ଅବକ୍ଷୟ ବିଷୟରେ ଧାରଣା କରିହୁଏ । ଆସନ୍ତା ୧୦୦ ବର୍ଷ ମଧ୍ୟରେ ଯେଉଁ କେତୋଟି ଭାଷାର ଅବକ୍ଷୟ ଘଟିବ ବୋଲି କୁହାଯାଇଛି ତା'ମଧ୍ୟରେ ଓଡ଼ିଆ ଭାଷା ସ୍ଥାନ ପାଇଛି । ଏଣୁ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ପାଇଁ ସମସ୍ତ ପ୍ରକାରର ଉଦ୍ୟମ ଜାରି ରହିଛି ।

ପୂର୍ବତନ ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡ଼େମୀ
ପ୍ଲଟ ନଂ- ୨୧୩୨/୪୮୬୯
ନାଗେଶ୍ୱର ଟାଙ୍ଗୀ, ଭୁବନେଶ୍ୱର-୨



# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ କନିକା ରାଜା ରାଜେନ୍ଦ୍ର ନାରାୟଣଙ୍କ ଭୂମିକା

ବଂଶୀଧର ଭୋଇ

ଓଡ଼ିଶାର ପ୍ରାଚୀନ ନାମ କଳିଙ୍ଗ, ପରବର୍ତ୍ତୀ ସମୟରେ ଉତ୍କଳ, ଉଡ୍ର ପୁଣି ଓଡ଼ିଶା ନାମରେ ପରିଚିତ । ଆମ ଜାତୀୟ ପତାକାରେ ଥିବା ରଙ୍ଗର ବିଶ୍ଳେଷଣରୁ ସୂଚନା ମିଳେ ଯେ ଗୈରିକ - ସାହସ ଓ ବୀରତ୍ୱର ପ୍ରତୀକ, ଶ୍ୱେତ-ସତ୍ୟ, ଶାନ୍ତି, ସବୁଜ-ବିଶ୍ୱାସ, ତ୍ୟାଗ ଓ ମୈତ୍ରୀର ପ୍ରତୀକ । ଠିକ୍ ସେହିପରି କଳିଙ୍ଗ - ପ୍ରତୀକ ଥିଲା । ପ୍ରାଚୀନ ଯୁଗରେ କଳିଙ୍ଗର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଉତ୍କଳ-ଉତ୍କର୍ଷର ଦେଶ, ଯେଉଁ ଦେଶ କଳା ସଂସ୍କୃତିରେ ସମଗ୍ର ବିଶ୍ୱରେ ଚହଳ ସୃଷ୍ଟି କରିଥିଲା । ପରବର୍ତ୍ତୀ ସମୟରେ ଉଡ୍ର (କୃଷକ ଶ୍ରେଣୀ) ଜାତିର ଲୋକେ ବସତି ସ୍ଥାପନ କରିଥିଲେ । ଯେଉଁ ଦେଶ ଦିନେ ସାଗର ପାରି ବାଣିଜ୍ୟ କରି ଦେଶକୁ ଧନରତ୍ନ, ମଣିମାଣିକ୍ୟରେ ପୂର୍ଣ୍ଣ କରିଆରେ ଦେଶକୁ ଅନ୍ୟ ବିକାଶଶୀଳ ରାଷ୍ଟ୍ରମାନଙ୍କ ସହିତ ସମକକ୍ଷ ହୋଇପାରିଥିଲା, ସେହି ଦେଶ ସମୟର ଭଉଁରୀରେ କିପରି ବିଦେଶୀ ବଣିକମାନଙ୍କ ଚକ୍ରାନ୍ତରେ, ବିଭିନ୍ନ ସମୟରେ ବିଭିନ୍ନ ବିଦେଶୀ ଶାସକଙ୍କଦ୍ୱାରା ପ୍ରତାରିତ ହୋଇ ସର୍ବସ୍ୱାନ୍ତ ହୋଇଥିଲା । ତା'ର ସ୍ୱାଧୀନତାକୁ ଅପହରଣ କରିଦିଆଯାଇଥିବା ବେଳେ, ଉତ୍କଳ ଜନନୀର ଯେଉଁ ଯୋଗ୍ୟତମ ସନ୍ତାନମାନେ ଓଡ଼ିଆ ଜାତି, ଓଡ଼ିଆ ଭାଷାକୁ ରକ୍ଷା କରି ଖଣ୍ଡବିଖଣ୍ଡିତ ଅଞ୍ଚଳର ପୁନରୁଦ୍ଧାର ପାଇଁ ଲଢ଼େଇ କରିଥିଲେ ସେହିମାନଙ୍କ ମଧ୍ୟରୁ କନିକାର ଶେଷ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଅନ୍ୟତମ ।



୧୯୦୨ ମସିହାରେ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ କନିକାର ଶାସନ ଭାର ଗ୍ରହଣ କଲେ । ଏହା ପୂର୍ବରୁ କନିକା ଇଷ୍ଟେଟ କୋର୍ଟ ଅଫ୍ ୱାର୍ଡ୍ସରେ ଥିଲା । ସେତେବେଳକୁ ରାଜେନ୍ଦ୍ର ନାରାୟଣ ଉପଯୁକ୍ତ ବୟସରେ ପହଞ୍ଚି ନଥିବାରୁ ତାଙ୍କର ପାଳିତା ପିତା ରାଜା ପଦ୍ମନାଭଙ୍କର ବିୟୋଗ ହେତୁ ତାଙ୍କର ରାଣୀ କୃଷ୍ଣ ପ୍ରିୟା ପାଟ ମହାଦେଈ ତତ୍ତ୍ୱାବଧାରିକା ରହିଥିଲେ । ଏହି ସମୟ ମଧ୍ୟରେ ରାଜେନ୍ଦ୍ର ନାରାୟଣ ରେଭେନ୍ସା ମହାବିଦ୍ୟାଳୟରୁ ଶିକ୍ଷା ଲାଭ ପରେ ୧୯୦୨ ମସିହାରେ ରାଜ୍ୟଭାର ନେଲେ । ରାଜା ଗାଦିନସୀନ ହେବାଠାରୁ ଉତ୍କଳର ବିଚ୍ଛିନ୍ନାଞ୍ଚଳର କିପରି ଏକତ୍ରିକରଣ ହେବ ୧୯୦୩ ଡିସେମ୍ବର ୩୧ ତାରିଖରେ କଟକଠାରେ ପ୍ରଥମ ଉତ୍କଳ ସମ୍ମିଳନୀ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ ବସିଲା ଏବଂ ଅଭ୍ୟର୍ଥନା କମିଟିର ଅଧକ୍ଷ ରହିଥିଲେ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ।

ଉତ୍କଳ ସମ୍ମିଳନୀର ପୂର୍ବବର୍ତ୍ତୀ ଅନୁଷ୍ଠାନ ଥିଲା 'ଉତ୍କଳ ସଭା' । ଏହାର ପ୍ରତିଷ୍ଠାତା ଥିଲେ ଗୌରୀଶଙ୍କର ରାୟ । ଏହି ସଭାର ପ୍ରଥମ ବୈଠକ ୨୧ ଜୁଲାଇ ୧୮୮୨ରେ ବସିଥିଲା । ଏଥିରେ ଦାବି କରାଯାଇଥିଲା ଓଡ଼ିଶାକୁ ସ୍ୱୟଂ ଶାସିତ କରାଯିବାକୁ । କିନ୍ତୁ ଦୁଃଖର କଥା ଦୀନନାଥ ବାନାର୍ଜୀ ତାହାକୁ ବିରୋଧ କରି ଓଡ଼ିଶା 'ପିପୁଲସ ଆସୋସିଏସନ' ନାମରେ ଅନ୍ୟଏକ ଅନୁଷ୍ଠାନ ଗଢ଼ି ବେଙ୍ଗଲ ଟେନାସି ଆକ୍ଟକୁ ଲେଖି ଦରଖାସ୍ତ କଲେ । ସେହି ଦରଖାସ୍ତ ୧୮୮୩ରେ ଜର୍ଜ କେମ୍ପବେଲ, ହାଉସ୍ ଅଫ୍ କମନକୁ ଯାଇଥିଲା କିନ୍ତୁ ସେହି ଅନୁଷ୍ଠାନ ଅଳ୍ପଦିନ ପରେ ଭାଙ୍ଗିଗଲା, ସୁତରାଂ ଉତ୍କଳ ସଭା ଏକ ଦୃଢ଼ ଅନୁଷ୍ଠାନ ଥିଲା । ମଧୁସୂଦନ ଦାସ ତାହାର ମୁଖ୍ୟ କର୍ମକର୍ତ୍ତା ଥିଲେ । ସେହି ସଭା ୧୮୮୨, ୧୮୮୮, ୧୮୯୮, ୧୮୮୯, ୧୮୯୪ରେ ବସିଥିଲା । ସଭାରେ ଗୃହୀତ ପ୍ରସ୍ତାବଗୁଡ଼ିକ ମଧ୍ୟରେ ଥିଲା ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକୁ ଓଡ଼ିଶା ସଙ୍ଗେ ମିଶାଇବା ଓ ଓଡ଼ିଆକୁ ସରକାରୀ ଭାଷା କରିବା । ୧୮୯୮ରେ ମଧୁବାବୁ ବେଙ୍ଗଲ ବିଧାନସଭା ପରିଷଦକୁ ନିର୍ବାଚିତ ହେଲେ । ଉତ୍କଳସଭା ଅନୁଷ୍ଠାନ ଆଉ ବେଶୀଦିନ କାର୍ଯ୍ୟକ୍ଷମ ହେଲା ନାହିଁ କିମ୍ବା ଓଡ଼ିଆ ଲୋକମାନଙ୍କର ସେହି ଅନୁଷ୍ଠାନପ୍ରତି ଆନ୍ତରିକତା ରହିଲା ନାହିଁ । କାରଣ ସେହି ସଭାରେ ସଭ୍ୟମାନେ

ଥିଲେ ଅଧିକାଂଶ ବଙ୍ଗାଳୀ । ସେ ସବୁକୁ ଦୃଷ୍ଟିରେ ରଖି ପାରଳାଖେମୁଣ୍ଡିର କୁମାର ପଦ୍ମନାଭ ନାରାୟଣ ଦେବ 'ଉତ୍କଳ ହିତୈଷିଣୀ' ନାମରେ ଏକ ଅନୁଷ୍ଠାନ ଗଢ଼ିଲେ ଏବଂ ଶ୍ୟାମସୁନ୍ଦର ରାଜଗୁରୁ ତାହାର ସହଯୋଗୀ ଥିଲେ । ହିତୈଷିଣୀ ସଭା ତରଫରୁ ଅନୁଷ୍ଠିତ କଂଗ୍ରେସ ଅଧିବେଶନକୁ ୧୮୯୪ରେ ମାନ୍ଦ୍ରାଜ, ୧୮୯୫ରେ ପୁନାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନକୁ ପ୍ରତିନିଧି ପଠାଯାଇଥିଲା ଏବଂ ଦାବି ଥିଲା ସମ୍ବଲପୁରରେ ଓଡ଼ିଆ ସରକାରୀ ଭାଷାର ପ୍ରଚଳନ, ଗଞ୍ଜାମର ଓଡ଼ିଆମାନଙ୍କପ୍ରତି ନ୍ୟାୟ, ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରିକରଣ ଇତ୍ୟାଦି । ୧୯୧୧ରେ ବଙ୍ଗଳାଠାରୁ ଓଡ଼ିଶା ବିହାର ଅଲଗା ହେବା ପରଠାରୁ ଉତ୍କଳସଭା କଂଗ୍ରେସ ସହିତ ମିଶି ଗଲା ।

ଉତ୍କଳସଭା ଓ ଉତ୍କଳ ସମ୍ମିଳନୀ ଦୁଇଟି ସମାନ୍ତରାଳ ଅନୁଷ୍ଠାନ ହେଲେ ହେଁ ଉଦ୍ଦେଶ୍ୟ ଏବଂ ଲକ୍ଷ୍ୟ ଅଲଗା ନଥିଲା । ଉତ୍କଳସଭା ଜନପ୍ରିୟ ନ ହେବାର ଏକମାତ୍ର କାରଣ ଥିଲା ସେହି ଅନୁଷ୍ଠାନର ବଙ୍ଗାଳୀ ଓଡ଼ିଆମାନଙ୍କଠାରୁ ଅଧିକ ଥିଲେ କିନ୍ତୁ ୧୯୦୩ ମସିହାରେ ଯେଉଁ 'ଉତ୍କଳ ସମ୍ମିଳନୀ' ଗଢ଼ି ଉଠିଲା ସେହି ସମ୍ମିଳନୀରେ ଓଡ଼ିଆ ପ୍ରେମୀ ବିଖଣ୍ଡିତ ରାଜ୍ୟର ଗଡ଼ଜାତ, ଓଡ଼ିଆ ଭାଷୀ, ବିଚ୍ଛିନ୍ନାଞ୍ଚଳର ରାଜା, ଜମିଦାର ତଥା ସମାଜ ସେବୀ, ଜ୍ଞାନୀଗୁଣି, ମାନ୍ୟଗଣ୍ୟ ବ୍ୟକ୍ତିମାନେ ଯୋଗ ଦେବା ଫଳରେ ଓଡ଼ିଶାର କଥା, ସରକାରଙ୍କ ପାଖରେ ସିଧା ସଳଖ ପହଞ୍ଚିଲା ।

ରାଜା ରାଜେନ୍ଦ୍ର ନାରାୟଣ ଯେଉଁ ସମୟରେ ଉତ୍କଳ ସମ୍ମଳନୀରେ ଯୋଗ ଦେଲେ ତାଙ୍କୁ ମାତ୍ର ସେତେବେଳେ ୨୩ ବର୍ଷ । 'ଉତ୍କଳ ସମ୍ମିଳନୀ'ର ଏହି ପ୍ରଥମ ଅଧିବେଶନରେ ଓଡ଼ିଶା ବାହାରୁ ସେ ୩୩୫ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସେଥିମଧ୍ୟରୁ ପାଞ୍ଚ ଜଣ ପ୍ରମୁଖ ରାଜା ଜାତୀୟ ପଗଡ଼ି ପିନ୍ଧିଥିଲେ । ଉତ୍କଳ ସମ୍ମିଳନୀ ପାଇଁ ଯେଉଁ ପ୍ରଦର୍ଶନୀ ହୋଇଥିଲା ତାହାକୁ ଓଡ଼ିଶାର କମିଶନର ଏକ ବର୍ଣ୍ଣାଢ଼୍ୟ ପରିବେଶରେ ଉଦ୍‌ଘାଟନ କରିଥିଲେ । ଓଡ଼ିଶାର କୃଷି, ଶିଳ୍ପ, ସଂସ୍କୃତିର ବିକାଶ ସହିତ ସେହି ସଭାରେ ମୁଖ୍ୟ ଦାବି ଥିଲା ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ କରାଯାଇ ସମ୍ବଲପୁରରେ ସରକାରୀ ଓଡ଼ିଆ ଭାଷା ପ୍ରଚଳନ କରାଯିବା ଏବଂ ୩୮୧ଟି ଶାଖା ସମିତି ଗଡ଼ା ଯିବାକୁ ସଭାରେ ପ୍ରସ୍ତାବ ଗୃହୀତ ହୋଇଥିଲା । ୧୫ ଜଣ ବଛାବଛା ବେତନଭୋଗୀ ପ୍ରଚାରକ ନିଯୁକ୍ତି କରାଯାଇ, ଯେଉଁ ଶାଖା ସମିତିଗୁଡ଼ିକ ଗଡ଼ା ଯିବାକୁ ପ୍ରସ୍ତାବ କରାଯାଇଥିଲା ସେଥିମଧ୍ୟରୁ କଟକରୁ ୧୬୦, ପୁରୀ-୧୦୯, ବାଲେଶ୍ୱର ୨୪, ମେଦିନୀପୁର-୨, କଲିକତା-୪, ଗଞ୍ଜାମ-୨୩, ସମ୍ବଲପୁର-୫, ଗଡ଼ଜାତ-୪୪ ଜଣ ବଛା ଯାଇଥିଲେ ଏବଂ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ପାଇଁ ଦୁଇଟି ସାମାଜିକ ସଂସ୍କାରମୂଳକ ପ୍ରଚାରପତ୍ର ପ୍ରକାଶ କରାଯାଇଥିଲା । ଏହି ଅଧିବେଶନର ଅବ୍ୟବହିତ ପୂର୍ବରୁ କନିକା ରାଜବାଟୀ ଏବଂ ମଧୁସୂଦନ ଦାସଙ୍କ ବାସଭବନରେ ଅଭ୍ୟର୍ଥନା କମିଟିର ବୈଠକ ୧୯୦୩ ନଭେମ୍ବର ୧୫ ତାରିଖ, ଡିସେମ୍ବର ୬, ୧୦, ୧୬, ୨୦, ୨୧ ଏବଂ ୨୪ ତାରିଖରେ ବସିଥିଲା ।

ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ୧୯୦୪ ମସିହା ଡିସେମ୍ବର ୨୮ ଓ ୨୯ ତାରିଖ କଟକରେ ଅନୁଷ୍ଠିତ ହେଲା । ଏଥିରେ ଧରାକୋଟ ରାଜା ମଦନମୋହନ ସିଂହଦେଓ ସଭାପତି ଥିଲେ । ତୃତୀୟ ଅଧିବେଶନ ୧୯୦୬, ଏପ୍ରିଲ ୧୩ ଓ ୧୪ ତାରିଖରେ ବାଲେଶ୍ୱରରେ ହୋଇଥିଲା । ଏହାର ସଭାପତି ଥିଲେ ତାଳଚେର ରାଜା ଓ ଚେୟାରମ୍ୟାନ ଥିଲେ ରାଜା ବୈକୁଣ୍ଠନାଥ ଦେ ।

ଚତୁର୍ଥ ଅଧିବେଶନ ରମ୍ଭା, ବ୍ରହ୍ମପୁରରେ ୧୯୦୬ ମସିହାରେ ଅନୁଷ୍ଠିତ ହେଲା । ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ କନିକା ରାଜା, ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ଏବଂ ଚେୟାରମ୍ୟାନ ଥିଲେ ବଡ଼ଖେମୁଣ୍ଡି ରାଜା । ସେହି ଅଧିବେଶନରେ ୨୦୦୦ ପ୍ରତିନିଧି ଯୋଗ ଦେଇଥିଲେ । 'ଖଡ଼ଗପୁରର ଉତ୍କଳସମାଜ' ପଠାଇଥିବା ଏକ ଉତ୍ସାହପୂର୍ଣ୍ଣ ପ୍ରବନ୍ଧ ପାଠ କରାଯାଇଥିଲା । ସେହି ସଭାରେ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଓଡ଼ିଆ ଶିକ୍ଷାକୁ ଗୁରୁତ୍ୱ ଦିଆଯାଇଥିବାରୁ ଭାରତ ସରକାରଙ୍କୁ ଧନ୍ୟବାଦ ଜ୍ଞାପନ କରାଯାଇଥିଲା । ବ୍ରହ୍ମପୁର ବ୍ୟତୀତ ବାହାରୁ ଯେଉଁ ପ୍ରତିନିଧିମାନେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ପୁରୀରୁ ୧୦୫ ଜଣ, କଟକ ୯୬ ଜଣ ବାଲେଶ୍ୱରରୁ ୬ ଜଣ ଏବଂ ସମ୍ବଲପୁରରୁ ମାତ୍ର ଜଣେ । ଏହି ସମ୍ମିଳନୀରେ ଟ.୬୨୪୪ଙ୍କା ୩ ଅଣା ଖର୍ଚ୍ଚ ହୋଇଥିବା ବେଳେ ଆୟ ଥିଲା ୧,୧୦୪ ଟଙ୍କା ୮ ଅଣା । ଏହି ଅର୍ଥଗୁଡ଼ିକ ଉକ୍ତ ଅଧିବେଶନରୁ ସଂଗ୍ରହ କରାଯାଇଥିଲା ।

୧୯୦୭ ମସିହା ଜୁନ୍ ମାସ ଶେଷ ଆଡ଼କୁ ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେବ ଓ ମଧୁବାବୁଙ୍କ ସହିତ ବିଲାତ ଗଲେ । ସେହି ଯାତ୍ରାର ଉଦ୍ଦେଶ୍ୟ ଥିଲା ସେକ୍ରେଟାରୀ-ଅଫ୍-ଷ୍ଟେଟ ମରଲେଙ୍କ ଓଡ଼ିଆ ଜାତିର ଦାବୀ ଉପସ୍ଥାପିତ କରିବା, ସେହି ବର୍ଷ ଓଡ଼ିଶାର ବନ୍ୟା ଓ ଦୁର୍ଭିକ୍ଷ ହେତୁ ଆଉ ଉତ୍କଳ ସମ୍ମିଳନୀର ଅଧିବେଶନ ହୋଇପାରିଲା ନାହିଁ । ଷଷ୍ଠ ଅଧିବେଶନ ୧୯୦୮ ଓ ୧୯୦୯ ମସିହାରେ ବସିବା କଥା କିନ୍ତୁ ଉଦ୍ୟୋକ୍ତାମାନଙ୍କର ଅସହଯୋଗ ପରସ୍ପର ଛକାପଞ୍ଝା ଯୋଗୁଁ ଅଧିବେଶନ ହୋଇପାରିଲା ନାହିଁ । ଉତ୍କଳ ସମ୍ମିଳନୀର ସପ୍ତମ ଅଧିବେଶନ ୧୯୧୦ ଡିସେମ୍ବର ମାସ କଟକରେ ବସିଲା । ସେହି ଅଧିବେଶନକୁ ରେଭେନ୍ସା ସାହେବ ଓଡ଼ିଆ ଶିଶୁମାନଙ୍କର ଶିକ୍ଷା ପାଇଁ ହଜାରେ ଟଙ୍କା ପଠାଇଥିଲେ । ଅଷ୍ଟମ ଅଧିବେଶନ ୧୯୧୨ ମସିହାରେ ବ୍ରହ୍ମପୁରରେ ବସିଥିଲା ।

କେତେକ କର୍ମୀଙ୍କ ଅସୂୟା ମନୋଭାବ ଯୋଗୁଁ ମଧୁବାବୁ 'ଉତ୍କଳସଭା' ଓ 'ଉତ୍କଳସମ୍ମିଳନୀ'ରୁ ଇସ୍ତଫା ଦେଲେ । ଗୌରୀଶଙ୍କର ରାୟ ମଧୁବାବୁଙ୍କୁ ପ୍ରବର୍ତ୍ତାଇଲେ ଯେ ତୁମେ ଇସ୍ତଫାକୁ ପ୍ରତ୍ୟାହାର କର ନଚେତ୍ ଅଧିବେଶନ ଆଉ ହେବ କି ନାହିଁ ସନ୍ଦେହ । ସୁତରାଂ

ପରବର୍ତ୍ତୀ ଅଧିବେଶନଗୁଡ଼ିକ ୧୯୧୩, ୧୯୧୪ ଓ ୧୯୧୫ରେ ହୋଇଥିଲା ।

୧୯୧୨ ମସିହାରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଜମିଦାରମାନଙ୍କତରଫରୁ ବଙ୍ଗଳା କାଉନସିଲ୍‌କୁ ନିର୍ବାଚିତ ହେଲେ । ବଙ୍ଗଳା ପ୍ରେସିଡେନ୍‌ସିରୁ ବିହାର-ଓଡ଼ିଶାକୁ କାଢ଼ି ନେବାକୁ ଭାଇସରାୟ ଲର୍ଡ଼ ହାଡ଼ିଓ୍ୱଙ୍କ କଡ଼ା ନିର୍ଦ୍ଦେଶ ଥିଲା । ତାହା ଶେଷ ଅଧିବେଶନ ହେଲେ ହେଁ ଓଡ଼ିଶା ପାଇଁ ଥିଲା ଗୁରୁତ୍ୱପୂର୍ଣ୍ଣ । ପୂର୍ବ ଅଧିବେଶନରେ ଓଡ଼ିଶା ପ୍ରଜାସ୍ୱତ୍ତ୍ୱ ଆଇନର ଯେଉଁ ଚିଠା ମିଃ ଏଫ୍.ଏ. ସ୍ଲାକ୍‌ଙ୍କଦ୍ୱାରା ସଂଶୋଧନ କରାଯାଇଥିଲା ତାହାକୁ ଅନୁମୋଦନ କରାଇ ନେବା ପାଇଁ ବଙ୍ଗାଳୀ ଜମିଦାରମାନେ ପ୍ରବଳ ଉଦ୍ୟମ କରିଥିଲେ । ଓଡ଼ିଶାରେ ସେମାନଙ୍କର ଥିଲା ଚିରସ୍ଥାୟୀ ସ୍ୱତ୍ତ୍ୱ । ସେମାନେ ଅନୁଭବ କରୁଥିଲେ ଓଡ଼ିଶା-ବିହାର ବଙ୍ଗଳାରୁ ଚାଲିଗଲେ ସେମାନଙ୍କର ପ୍ରଭାବ ଆଉ ରହିବ ନାହିଁ । ସେହିବର୍ଷ ଜାନୁଆରୀ ୧୬ ତାରିଖରେ ଓଡ଼ିଶା ପ୍ରଜାସ୍ୱତ୍ତ୍ୱ ଆଇନର ଚିଠା ମିଃ ମାକଫର୍‌ସନ୍ ସରକାରଙ୍କ ପକ୍ଷରୁ ଏକ ପ୍ରସ୍ତାବ କାଉସିଲରେ ଆଗତ ହେବାର ଥିଲା, କିନ୍ତୁ ମଧୁସୂଦନ ଦାସ ସେହି ବିଲକୁ ଆଲୋଚନା କରାନଯାଇ ସ୍ଥଗିତ ରଖିବାକୁ ପ୍ରସ୍ତାବ ଦେଇଥିଲେ । କାରଣ ବିହାର ଓଡ଼ିଶା ସ୍ୱତନ୍ତ୍ର କାଉନସିଲ ଗଠିତ ହେବ ଏବଂ ଓଡ଼ିଶା ପାଇଁ ଉଦ୍ଦିଷ୍ଟ ଥିବା ପ୍ରଜାସ୍ୱତ୍ୱ ଆଇନ ସେହିଠାରେ ବିଚାର ଆଲୋଚନା ହେବ । ତେଣୁ ଏହାଥିଲା ମଧୁବାବୁଙ୍କର ବିକଳ୍ପ ପ୍ରସ୍ତାବ, ସେହି ସମସ୍ୟା ତାଙ୍କୁ ବିବ୍ରତ କରିଥିଲା । ସେତେବେଳେ ସେ କଲିକତାର ତାଙ୍କ ବାସଭବନରେ ବହିସ୍ତୂପ ମଧରେ ବସି ଆଇନ୍ ବହିଗୁଡ଼ିକକୁ ଘାଣ୍ଟୁଥିବାବେଳେ ରାଜେନ୍ଦ୍ର ନାରାୟଣଙ୍କ ସହାୟତା ତାଙ୍କ ମନ ମଧରେ ଉଙ୍କି ମାରୁଥିଲା ଏବଂ ପ୍ରତିମୁହୂର୍ତ୍ତରେ ତାଙ୍କର ଉପସ୍ଥିତି ଅନୁଭବ କରୁଥିଲେ । ରାଜେନ୍ଦ୍ର ନାରାୟଣ ଠିକଣା ସମୟରେ ମଧୁବାବୁଙ୍କ ବାସଭବନରେ ପହଞ୍ଚିଯିବାରୁ ସେ କିଛି ଆଲୋଚନା ନକରି ହଠାତ୍ କହିଲେ, 'ଆଜି ମୁଁ କାଉନ୍‌ସିଲକୁ ଯାଇପାରିବି ନାହିଁ ।' ରାଜେନ୍ଦ୍ର ନାରାୟଣ ବ୍ୟସ୍ତଭରା କଣ୍ଠରେ କହିଲେ, 'ଆପଣ ପ୍ରସ୍ତାବ ଦେଇଛନ୍ତି ବିଲ୍‌ର ଆଲୋଚନାକୁ ସ୍ଥଗିତ ରଖିବା ପାଇଁ, ଆପଣ ଅନୁପସ୍ଥିତ ରହିଲେ ବିଲଟି ଆପେ ଆପେ ଉଡ଼ିଯିବ । ମଧୁବାବୁ ତାଙ୍କୁ କହିଲେ ମୁଁ ଭାବୁଛି ତୁମେ ସେହି ପ୍ରସ୍ତାବଟାକୁ ଆଗତ କଲେ ଯୋଜନାଟି ପଳପ୍ରଦ ହେବ । ତୁମେ ଆଉ ଅଧିକ ଯୁକ୍ତି କର ନାହିଁ । ତୁମେ ଆମ କୌଶଳକୁ ବୁଝିବାକୁ ଚେଷ୍ଟାକର । ତୁମେ ଓଡ଼ିଆ ଜମିଦାରମାନଙ୍କର ପ୍ରତିନିଧି । ତୁମେ ଜମିଦାରମାନଙ୍କ ତରଫରୁ ବିରୋଧ କରିବ । ମୋ' କଥାଗୁଡ଼ାକ ମାକଫରସନ ସାହେବଙ୍କ ଓକିଲିଆ ଯୁକ୍ତି ପରି ଲାଗୁଛି । ରାଜେନ୍ଦ୍ର ନାରାୟଣ ବଙ୍ଗଳା କାଉନସିଲରେ ଶେଷ ଥର ପାଇଁ ମଧୁବାବୁଙ୍କ ପକ୍ଷରୁ ପ୍ରସ୍ତାବ ଆଗତ କରିବେ । ମଧୁବାବୁଙ୍କ କୌଶଳ ଥିଲା ନିଜେ କାଉନ୍‌ସିଲକୁ ନଯାଇ ଓଡ଼ିଆ ଜମିଦାରମାନଙ୍କ ପ୍ରତିନିଧି ଭାବେ ବିଲ୍‌ଟିକୁ ବିରୋଧ କଲେ ବଙ୍ଗଳା ସରକାରଙ୍କ ଉପରେ କିଛି ପ୍ରଭାବ ପଡ଼ିବ । ସେହି କୌଶଳ ଅନୁସାରେ ରାଜେନ୍ଦ୍ର ନାରାୟଣ ଓଡ଼ିଶା-ପ୍ରଜାସ୍ୱତ୍ୱ ବିଲ୍ ଯାଞ୍ଚ କମିଟିକୁ ନପଠାଇ ଆଲୋଚନା ପାଇଁ ସ୍ଥଗିତ ରଖିବା ପାଇଁ ପ୍ରସ୍ତାବଟି କାଉନସିଲ୍‌ରେ ଦେଲେ କିନ୍ତୁ ତାହା ବହୁ ଭୋଟରେ ଅଗ୍ରାହ୍ୟ ହୋଇଗଲା । ରାଜେନ୍ଦ୍ର ନାରାୟଣ କାଉନସିଲରୁ ଫେରି ସିଧା ମଧୁବାବୁଙ୍କୁ କରୁଣ ସ୍ୱରରେ କହିଲେ - ବିଲ ସିଲେକ୍ଟ କମିଟିକୁ ଗଲା ।

ଯେଉଁ ଯାଞ୍ଚ କମିଟି ହେଲା ଓଡ଼ିଶାରୁ ଥିଲେ - ମଧୁସୂଦନ ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, କନିକା ରାଜା ଏବଂ ପବ୍ଲିକ୍ ପ୍ରସିକ୍ୟୁଟର ଜାନକୀ ନାଥ ବୋଷ ବଙ୍ଗଳା କାଉନସିଲର ସରକାରୀ ସଭ୍ୟ ଥିଲେ । ଏହି ତିନିଜଣଙ୍କ ମଧରୁ ଜାନକୀନାଥ ବୋଷ ବିଲକୁ ସମର୍ଥନ ଜଣାଇବାରେ ସରକାରୀ ସଭ୍ୟମାନଙ୍କଠାରୁ ଅଧିକ ଉତ୍ସାହୀ ଥିଲେ । ୧୯୧୨ ମାର୍ଚ୍ଚ ୬ ତାରିଖରେ ବିଲ ସିଲେକ୍ଟ କମିଟିରେ ଉପସ୍ଥାପିତ ହେଲା । ଆଲୋଚନାବେଳେ ମଧୁବାବୁ ଓ ରାଜେନ୍ଦ୍ର ନାରାୟଣ ବିଲକୁ ବିରୋଧ କରି ତୀବ୍ର ଭାବରେ ଓଡ଼ିଶାର-ପ୍ରଜାସ୍ୱତ୍ୱ ଆଇନ ସମ୍ପର୍କରେ ପ୍ରତିବାଦ କରିବାବେଳେ ଓଡ଼ିଶାର ମନୋନୀତ ସଭ୍ୟ ଜାନକୀନାଥ ବୋଷ ମଧୁବାବୁଙ୍କର ଆଇନଗତ ପ୍ରଶ୍ନଗୁଡ଼ିକ ଉପରେ କୌଣସି ମନ୍ତବ୍ୟ ନଦେଇ କେବଳ ନୀରବଦ୍ରଷ୍ଟା ହୋଇ ରହିଲେ, ତେଣୁ ମଧୁବାବୁଙ୍କ ପ୍ରସ୍ତାବ ବହୁ ଭୋଟରେ କାଟ ଖାଇଗଲା । ସପକ୍ଷରେ ୯ ବିପକ୍ଷରେ ୩୧ । ଓଡ଼ିଶାର ପ୍ରଜାସ୍ୱତ୍ୱ ଆଇନ ବିଲକୁ ଅନୁମୋଦନ ନଦେବାପାଇଁ ଭାଇସରାୟ ଲର୍ଡ଼ ହାଡିଓ୍ୱ ଓ ବଙ୍ଗଳାର ଲେଫ୍ଟନେଣ୍ଟ ଗଭର୍ଣ୍ଣର ସାର ଉଇଲିୟମ ଡିଉକ୍‌ଙ୍କ ମଧରେ ବିତର୍କ ଚାଲିଲା ସାର ଉଇଲିୟମଙ୍କ ଅନୁରୋଧ ସତ୍ତ୍ୱେ ଲର୍ଡ଼ହାଡ଼ଓ୍ୱ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନକୁ ଅନୁମୋଦନ କଲେ ନାହିଁ ।

ଓଡ଼ିଶା ବଙ୍ଗଳା ପ୍ରେସିଡ଼େନ୍ସିରୁ ବିଚ୍ଛିନ୍ନ ହେବାପରେ ବିହାର ସହିତ ମିଶି ରହିଲା । ବିହାର-ଓଡ଼ିଶା କାଉନ୍‌ସିଲ ପାଇଁ ନିର୍ବାଚନ ହେଲା । କାଉନ୍‌ସିଲକୁ ମାତ୍ର ୪ ଜଣ ଓଡ଼ିଶାରୁ ନିର୍ବାଚିତ ହେବେ । ସେଥିମଧରୁ ଓଡ଼ିଶାର ଜମିଦାର ମଣ୍ଡଳୀରୁ କନିକାରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଅନ୍ୟତମ ସଦସ୍ୟ ଥିଲେ ।

ବ୍ରିଟିଶ ସରକାରଙ୍କ କମନସ୍-ସଭାରେ ଆଲୋଚନା ହେଲା ଯେ ଭାରତୀୟ ଶାସନତନ୍ତ୍ରରେ କିଛି ଲୋଡ଼ାଯିବ ପରିବର୍ତ୍ତନ ହେବ । ଏଥିରେ ଭାରତର ଶାସନତନ୍ତ୍ର ସମ୍ପର୍କରେ ଜନମତ ଲୋଡ଼ାଯିବ । ଏଥିପାଇଁ ନୂତନ ସେକ୍ରେଟାରୀ-ଅଫ୍-ଷ୍ଟେଟ ଇ.ଏମ୍. ମଣ୍ଟେଗୁ ଭାରତ ଆସିବେ । ଖବରକାଗଜମାନଙ୍କରେ ତାହା ପ୍ରକାଶ ପାଇଲା । ମଧୁସୂଦନ ଦାସ ଏ ଖବର ପାଇ ବାଲେଶ୍ୱରରେ ଦେଶ ମିଶ୍ରଣ ପାଇଁ ଗଢ଼ା ଯାଇଥିବା କାର୍ଯ୍ୟ ନିର୍ବାହିକା କମିଟିର ଥିବା ସଦସ୍ୟମାନଙ୍କୁ ଏକ ଜରୁରୀ ବୈଠକରେ ମିଳିତ ହେବାପାଇଁ ଆହ୍ୱାନ ଦେଲେ । ବାଲେଶ୍ୱର ଅଧିବେଶନରେ ଦେଶମିଶ୍ରଣ ପାଇଁ ଯେଉଁ କମିଟି ଗଢ଼ା ଗଲା ତାହାର ସଭ୍ୟମାନେ ଥିଲେ - ମଧୁସୂଦନ ଦାସ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଗଞ୍ଜାମର ହରିହର ପଣ୍ଡା, ବ୍ରଜସୁନ୍ଦର ଦାସ, ଗୋପବନ୍ଧୁ ଦାସ, ରାୟବାହାଦୁର ସୁଦାମ ଚରଣ ନାୟକ ଓ ଶେରଗଡ଼ର ଶୋଭାଚନ୍ଦ୍ର

ସିଂହଦେଓ । ଏହି କମିଟି ସ୍ଥିର କଲା ସେକ୍ରେଟାରୀ-ଅଫ୍-ଷ୍ଟେଟ ମଣ୍ଟେଗୁଙ୍କୁ ଉତ୍କଳ ସମ୍ମିଳନୀ ପକ୍ଷରୁ ସ୍ମାରକପତ୍ର ଦିଆଯିବ । କମିଟି ସ୍ଥିରକଲା ଯେ ଏହି ସ୍ମାରକପତ୍ର ଦେବା ପାଇଁ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ କଲିକତା ଯିବେ । ସେଠାରେ ମଣ୍ଟେଗୁଙ୍କୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ ପାଇଁ ବୁଝାଇବେ । ୧୯୧୭ ମସିହା ଡିସେମ୍ବର ମାସରେ ଏଥିପାଇଁ ମଣ୍ଟେଗୁ ଓ ଚେମସଫୋର୍ଡ଼ କଲିକତାରେ ଅବସ୍ଥାନ କରୁଥିଲାବେଳେ ଓଡ଼ିଆ ଶ୍ରମିକମାନେ ଆୟୋଜନ କରିଥିଲେ ଏକ ବିରାଟ ଜନସଭା ।

୧୯୧୭ ମସିହାରେ ଦୁଇ ଦିନ ଧରି କଟକରେ ଉତ୍କଳ ସମ୍ମିଳନୀ ବସିଲା । ଏହି ସଭାରେ ଚେୟାରମ୍ୟାନ ଥିଲେ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ । ଏହି ସଭାରେ ମୁଖ୍ୟ ବିଷୟ ଥିଲା ପୁରୀ ଜଗନ୍ନାଥ ମନ୍ଦିର ଏବଂ ଅନ୍ୟାନ୍ୟ ମନ୍ଦିର ମରାମତି ପାଇଁ ଅର୍ଥ ସଂଗ୍ରହ ଏବଂ ସିଂହଭୂମରେ ସରକାରୀ ଭାଷା ରୂପେ ଓଡ଼ିଆର ପ୍ରଚଳନ ପ୍ରଚଳନ ଇତ୍ୟାଦି । ୧୯୧୯ ମାର୍ଚ୍ଚ ୭ ତାରିଖରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଇମ୍ପିରିଆଲ କାଉନସିଲରେ ଓଡ଼ିଶାକୁ ସବ୍-ପ୍ରଭିନ୍ସ ପାଇଁ ପ୍ରସ୍ତାବ ଦେଇଥିଲେ କିନ୍ତୁ ଏହାକୁ ବିଚାର କରି ଦେଖାଯିବ ବୋଲି ପ୍ରତିଶ୍ରୁତି ମିଳିଥିଲା ।

୧୯୨୧-୨୨ରେ କନିକା ପ୍ରଜାଆନ୍ଦୋଳନ ପ୍ରବଳ ଭାବରେ ତେଜିଲା । ଏହାର ପ୍ରସଙ୍ଗ ଥିଲା କନିକାର ରାଜା କନିକାରେ ପ୍ରଜାମାନଙ୍କୁ ଶୋଷଣ କରୁଛନ୍ତି । ଏହାର ପ୍ରତିବାଦରେ ଆନ୍ଦୋଳନ ଚାଲିଲା । କିନ୍ତୁ ରେକର୍ଡ଼ମାନଙ୍କରୁ ସୂଚନା ମିଳେ ଯେ ରାଜା, କନିକା ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ, ରାସ୍ତାଘାଟ ଏବଂ ଦୁର୍ଭିକ୍ଷ ପାଇଁ ଶସ୍ୟଗୋଲା ଏବଂ ପ୍ରଜାମାନଙ୍କ ଜମିଜମା ବନ୍ଦୋବସ୍ତ ଇତ୍ୟାଦି ଜନହିତକର କାର୍ଯ୍ୟ କରିଥିଲେ ମଧ ୧୯୨୧-୨୨ରେ ରାଜେନ୍ଦ୍ର ନାରାୟଣ ଭଞ୍ଜଙ୍କୁ ଏକ ଅତ୍ୟାଚାରୀ ରାଜା ଭାବେ ଚିତ୍ରଣ କରାଯାଇଥିଲା । ଏ ସମ୍ପର୍କରେ ୨୫ ଅଗଷ୍ଟ, ୧୯୨୨ରେ ବିହାର-ଓଡ଼ିଶା କାଉନ୍‌ସିଲରେ ଗଭର୍ଣ୍ଣର ମାକଫରସନ ତାଙ୍କ ଅଭିଭାଷଣରେ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ କାର୍ଯ୍ୟକୁ ଭୁୟସୀ ପ୍ରଶଂସା କରିଥିଲେ । କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ସଂପର୍କରେ ଯେଉଁସବୁ ଅଭିଯୋଗ ବିହାର-ଓଡ଼ିଶା କାଉନସିଲରେ କନିକା ଡିବେଟ ନାମରେ ଆଲୋଚନା ଚାଲିଥିଲା ତାହାସବୁ କାଟ ଖାଇଥିଲା ।

୧୯୨୮ ମସିହା ଡିସେମ୍ବରରେ ସାଇମନ କମିଶନ ପାଟନା ଆସିବେ । ଶାସନ ସଂସ୍କାର ସମ୍ପର୍କରେ ବୁଝିବେ । ଏଣେ ସାଇମନ-କମିଶନକୁ ବୟକଟ କରିବାକୁ କଂଗ୍ରେସ ନୀତିଗତ ନିଷ୍ପତ୍ତି ନେଲା । ଅତୀତରେ ମଣ୍ଟେଗୁ ଚେମସଫୋର୍ଡ଼ ଓଡ଼ିଶାକୁ ସବ୍-ପ୍ରଭିନ୍ସ କରିବାକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ସାଇମନ କମିଶନ ତାହାକୁ କାର୍ଯ୍ୟକାରୀ କରିବେ । ମଧୁବାବୁ କନିକା ରାଜା ରାଜେନ୍ଦ୍ର ନାରାୟଣ ପାଖକୁ ଚିଠି ଲେଖିଛନ୍ତି ପାଟନାରୁ ଯେ ସାଇମନ କମିଶନଙ୍କୁ ସେ ଓଡ଼ିଶା ଆଣିବେ, ଏଣେ କଂଗ୍ରେସକର୍ମୀ ଗୋପବନ୍ଧୁ ଦାସଙ୍କଠାରୁ ବ୍ୟକ୍ତିଗତ ପ୍ରତିଶ୍ରୁତି ଅପେକ୍ଷାରେ ଥିଲେ, ଭାରତରେ ଯେଉଁଠି ଯାହାହେଉ ପଛେ ଦେଶମିଶ୍ରଣ ବା ସ୍ୱତନ୍ତ୍ର ପ୍ରଦେଶ ଗଠନ ଓଡ଼ିଶାର ସ୍ୱାର୍ଥ ଏକ ବିଶେଷ ସମସ୍ୟା ଥିବାରୁ ସାଇମନ-କମିଶନ ଓଡ଼ିଶା ଆସିଲେ ବିକ୍ଷୋଭ ଓ କଳାପତାକା ପ୍ରଦର୍ଶନ ନକରିବାକୁ । କିନ୍ତୁ ଦୁର୍ଭାଗ୍ୟ ଯେ ସମଗ୍ର ଓଡ଼ିଶାରେ କଂଗ୍ରେସ ପାଳନ କଲା ହରତାଳ ସାଇମନ କମିଶନ ଓଡ଼ିଶାକୁ ନଆସିବା ପାଇଁ । ଏପରି ଏକ ପରିସ୍ଥିତିରେ ମଧୁବାବୁ ବ୍ୟତିବ୍ୟସ୍ତ ହୋଇ ରାଜେନ୍ଦ୍ର ନାରାୟଣଙ୍କୁ ଟେଲିଗ୍ରାମଦ୍ୱାରା ଜଣାଇ ଦେଲେ ସାଇମନ ଓଡ଼ିଶା ଆସିବା ଲାଭ ନାହିଁ, ତୁମେ ସେହିଠାରେ ଓଡ଼ିଶାପକ୍ଷରୁ ସ୍ୱାଗତ ସମ୍ବର୍ଦ୍ଧନା ଯେପରି ପ୍ରଦର୍ଶିତ ହୁଏ ଚେଷ୍ଟା କର । ସେତେବେଳେ କନିକା ରାଜା ରାଜେନ୍ଦ୍ର ନାରାୟଣ ବିହାର-ଓଡ଼ିଶାର ଲେଜିସ୍‌ଲେଟିଭ କାଉନସିଲର ସଭ୍ୟ ଥିଲେ । ମଧୁବାବୁଙ୍କ କଥାନୁସାରେ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ବ୍ରଜାସୁନ୍ଦର ଦାସ ଓ ଭିକାରୀଚରଣ ପଟ୍ଟନାୟକ ପ୍ରଭୃତି ପାଟନା ରେଲଷ୍ଟେସନରେ ସାଇମନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ ।

ସାଇମନ କମିଶନ ଓଡ଼ିଶା ତରଫରୁ ଦିଆଯାଇଥିବା ସମ୍ବର୍ଦ୍ଧନାରେ ଅତ୍ୟନ୍ତ ଆନନ୍ଦିତ ହୋଇ ମେଜର ସି.ଆର୍. ଅଟଲୀଙ୍କ ତତ୍ତ୍ୱାବଧାନରେ ଏକ ଅଟଲୀ ସବ୍‌କମିଟି ଗଢ଼ାଇ ଥିଲେ । ସି.ଆର୍. ଅଟଲୀ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଅନୁସନ୍ଧାନ କରିବେ । ଏହି କମିଟିର ଡ. ମୁରାବର୍ଦ୍ଦୀ, କେନ୍ଦ୍ର ବିଧାନସଭାରୁ, ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଏବଂ ଲକ୍ଷ୍ମୀଧର ମହାନ୍ତି ବିହାର-ଓଡ଼ିଶା ବିଧାନସଭାରୁ ସଦସ୍ୟଭାବେ ମନୋନୀତ ହୋଇଥିଲେ । ୧୯୩୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଅଟଲୀ କମିଟି ପ୍ରସ୍ତାବ ଦେଇଥିଲେ କିନ୍ତୁ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବିହାର-ଓଡ଼ିଶା କାଉନ୍‌ସିଲରେ କାର୍ଯ୍ୟନିର୍ବାହୀ ସଭ୍ୟ ଥିବାରୁ ଉକ୍ତ ଚିଠାରେ ଦସ୍ତଖତ ନକରି ଲଣ୍ଡନରେ ହେଉଥିବା ଗୋଲଟେବୁଲ ବୈଠକରେ ପାରଳା ରାଜା ଓଡ଼ିଶା ଏବଂ ମାନ୍ଦ୍ରାଜ ପ୍ରେସିଡେନ୍ସି ତରଫରୁ ଯୋଗ ଦେବା ପାଇଁ କନିକା ରାଜା ସବୁ ପ୍ରକାର ବନ୍ଦୋବସ୍ତ କରିଥିଲେ । ୧୯୩୦ ମସିହାରେ ପାରଳା ଓଡ଼ିଶାରେ ମିଶିଗଲା । ଯେଉଁ ୧୧ଟି ରାଜ୍ୟ ଭାରତରେ ସ୍ୱତନ୍ତ୍ର ପ୍ରଦେଶ ହେଲା ସେଥିମଧ୍ୟରୁ ଓଡ଼ିଶା ଅନ୍ୟତମ ସ୍ୱତନ୍ତ୍ର ପ୍ରଦେଶ । ୧୯୩୬ ଏପ୍ରିଲ ପହିଲାରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଭାବେ ଘୋଷଣା କରାଗଲା । କଟକ ଓଡ଼ିଶାର ରାଜଧାନୀ ହେଲା । ଏହାର ପ୍ରଥମ ଗଭର୍ଣ୍ଣର ହେଲେ ଅଷ୍ଟିନ ହାବାକ୍ । ୧୯୩୬ ଏପ୍ରିଲାରୁ ୧୯୩୭ ମାର୍ଚ୍ଚ ପର୍ଯ୍ୟନ୍ତ ଏହି ନୂତନ ପ୍ରଦେଶ ପରିଚାଳନା ପାଇଁ ଯେଉଁ ୨୧ ଜଣିଆ ଏଡ଼ଭାଇଜରୀ କମିଟି ଗଢ଼ା ଯାଇଥିଲା କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ତହିଁରେ ଥିଲେ ଅନ୍ୟତମ ସଦସ୍ୟ । କନିକା ରାଜାଙ୍କର ଥିଲା ଦେଶପ୍ରୀତି । ମୋଟ ଉପରେ କହିବାକୁ ଗଲେ ୧୯୦୩ଠାରୁ ୧୯୩୭ ପର୍ଯ୍ୟନ୍ତ ଏହାଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ଏପରି ଜଣେ ଉତ୍କଳ ଜନନୀର ଯୋଗ୍ୟତମ ବରପୁତ୍ରକୁ ଏ ରାଜ୍ୟବାସୀ ଆଜି ଭୁଲି ଗଲେଣି ।

**ସହାୟକ ଗ୍ରନ୍ଥ**

୧. Ace. No.H-II-2/27, Orissa State Archives, BBSR. The Oriya Movement by Two Bachelors of Arts, Published by H.H. Panda, Secretary, Oriya Samaja, Ganjam, Aska, 1919, p.329-337.

୨. ସୁରେନ୍ଦ୍ର ମହାନ୍ତି, କୁଳବୃଦ୍ଧ, ଲାର୍କବୁକ୍ସ, ଭୁବନେଶ୍ୱର-୧, ୧୯୯୦, ପୃ.୩୩, ୮୯, ୯୩, ୯୮, ୧୧୯, ୧୪୫, ୧୪୬, ୩୨୧

୩. Jitamitra Parasad Singdeo, Character Assasination in Modern History of Orissa, R.N. Bhattacharya, Kolkata, 2001, p.208-209, 218, 219, 222, 223, 226, 227.

୪. Ace. No. 3628/Pur, Orissa State Archives, BBSR, The Hon'ble Mr. McPherson's Speech on the Kanika Debate in the Legislative Council, Bihar & Orissa 25th Aug, 1922, p.7.

କ୍ୱା.ନଂ.-୩ଆର୍.ଏଫ୍.-୧୭/୩
ଭୋଇନଗର, ଭୁବନେଶ୍ୱର-୨୨

# ଅଂଶୁଘାତ ସତର୍କତା ପାଇଁ ପ୍ରେସ୍ ବିଜ୍ଞପ୍ତି

୧. ବିଗତ କେତେ ବର୍ଷର ପ୍ରଚଣ୍ଡ ଗ୍ରୀଷ୍ମ ପ୍ରବାହ ଯୋଗୁଁ ଅଭୁତପୂର୍ବ ପ୍ରାଣହାନି ଘଟୁଥିବାରୁ ଏବଂ ଚଳିତ ବର୍ଷ ଫେବୃଆରୀ ମାସରେ ରୌଦ୍ରତାପ ବୃଦ୍ଧି ପାଇଥିବା ଦୃଷ୍ଟିରୁ ଚଳିତ ଗ୍ରୀଷ୍ମଋତୁରେ ସମ୍ଭାବ୍ୟ ରୌଦ୍ରତାପଜନିତ ଅଂଶୁଘାତ ଆଶଙ୍କାକୁ ଏଡ଼ାଇ ଦିଆଯାଇ ନପାରେ । ଏଣୁ ସଂପୂର୍ଣ୍ଣ ଖରାରେ କାର୍ଯ୍ୟରତ ଶ୍ରମିକମାନଙ୍କୁ ଚଳିତ ମାର୍ଚ୍ଚ, ଅପ୍ରେଲ, ମେ ଓ ଜୁନ୍ ମାସର ପ୍ରତ୍ୟହ ପୂର୍ବାହ୍ନ ୧୧.୩୦ ଘଣ୍ଟା ଓ ଅପରାହ୍ନ ୩.୩୦ ଘଣ୍ଟା ମଧ୍ୟରେ ସୃଷ୍ଟ ପ୍ରଚଣ୍ଡ ରୌଦ୍ରତାପ ଜନିତ ଅଂଶୁଘାତରୁ ରକ୍ଷା ପାଇବା ପାଇଁ ଶ୍ରମ ଓ ନିୟୋଜନ ବିଭାଗ ପକ୍ଷରୁ ବିହିତ ପଦକ୍ଷେପ ନେବା ପାଇଁ ସମସ୍ତ ରାଜସ୍ୱ କମିଶନର, ସମସ୍ତ ଜିଲ୍ଲାପାଳ, ଜିଲ୍ଲା ଶ୍ରମ ଅଧିକାରୀ ଓ ରାଜ୍ୟ ଶ୍ରମ କମିଶନରଙ୍କୁ ଆବଶ୍ୟକୀୟ ନିର୍ଦ୍ଦେଶନାମା ଜାରି କରାଯାଇଛି ।

୨. ପୁନଶ୍ଚ ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ଶ୍ରମ ଓ ନିୟୋଜନ ବିଭାଗ, ଓଡ଼ିଶା ସରକାର ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରି ଜଣାଇବାକୁ ଚାହାନ୍ତି ଯେ, ଖରାରେ କାର୍ଯ୍ୟରତ ଶ୍ରମିକମାନେ ପ୍ରଚଣ୍ଡ ରୌଦ୍ରତାପ ଜନିତ କାରଣରୁ ଜଳହୀନତା, ରକ୍ତଲବଣତା ହ୍ରାସ ଏବଂ ଜ୍ୱର ଇତ୍ୟାଦି ରୋଗର ଶିକାର ହେବାର ସମ୍ଭାବନା ଯଥେଷ୍ଟ ଅଧିକ ।

୩. ଏତଦ୍ୱାରା ଓଡ଼ିଶା ସରକାରଙ୍କର ସମସ୍ତ ବିଭାଗ ତଥା ଓଡ଼ିଶାରେ ଥିବା ଭାରତ ସରକାରଙ୍କର ବିଭାଗ, ବେସରକାରୀ ନିଯୁକ୍ତିଦାତା, ସମସ୍ତ ବାଣିଜ୍ୟ ଓ ଶିଳ୍ପ ସଂସ୍ଥା, ଦୋକାନ ଓ ବ୍ୟବସାୟ ପ୍ରତିଷ୍ଠାନର ମାଲିକ ଏବଂ ଠିକାଦାରମାନଙ୍କୁ ଅନୁରୋଧ କରାଯାଉଛି ଯେ, ସେମାନଙ୍କ ଅଧୀନରେ ବାହାରେ କାର୍ଯ୍ୟରତ ଶ୍ରମିକମାନଙ୍କୁ ମାର୍ଚ୍ଚ, ଅପ୍ରେଲ, ମେ ଓ ଜୁନ୍ ମାସର ପ୍ରଚଣ୍ଡ ରୌଦ୍ରତାପରୁ ରକ୍ଷା କରିବା ନିମନ୍ତେ ପ୍ରତ୍ୟହ ମଧାହ୍ନ ୧୧.୩୦ ଘଣ୍ଟାରୁ ଅପରାହ୍ନ ୩.୩୦ ଘଣ୍ଟା ପର୍ଯ୍ୟନ୍ତ କାର୍ଯ୍ୟରେ ନ ଲଗାଇବାକୁ ବିଧିବଦ୍ଧ ବ୍ୟବସ୍ଥା କରିବେ ଓ ଆବଶ୍ୟକ ସ୍ଥଳେ କାର୍ଯ୍ୟ ନିର୍ଘଣ୍ଟର ସମୟ ପରିବର୍ତ୍ତନ କରିବେ ।

୪. ଯଦି କୌଣସି କାର୍ଯ୍ୟ ଜରୁରୀ ବୋଲି ମନେହୁଏ କିମ୍ବା ଅତ୍ୟାବଶ୍ୟକୀୟ ସେବା ଯେଉଁଥି ପାଇଁକି ଶ୍ରମିକମାନଙ୍କୁ ଉପରୋକ୍ତ ସମୟ ପାଇଁ ବିଶ୍ରାମ ଦିଆଯାଇ ପାରିବ ନାହିଁ, ତେବେ ଉପରୋକ୍ତ ନିଯୁକ୍ତିଦାତାମାନେ ଶ୍ରମିକମାନଙ୍କୁ ସମ୍ଭାବ୍ୟ ପ୍ରଚଣ୍ଡ ରୌଦ୍ରତାପରୁ ରକ୍ଷା କରିବା ପାଇଁ ନିମ୍ନମତେ ସତର୍କତାମୂଳକ ପଦକ୍ଷେପ ନେବେ ।

୧. ଶୀତଳ ପାନୀୟ ଜଳର ସୁବ୍ୟବସ୍ଥା
୨. ଛାୟା ପ୍ରଦାନ ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା
୩. ସ୍ୱାସ୍ଥ୍ୟସେବା ପାଇଁ ଡାକ୍ତରୀ ଚିକିତ୍ସାର ବ୍ୟବସ୍ଥା
୪. ପ୍ରତ୍ୟେକ ଶ୍ରମିକ ପାଇଁ ଓ.ଆର୍.ଏସ୍. ପ୍ୟାକେଟ୍ର ବ୍ୟବସ୍ଥା

୫. ଉପରୋକ୍ତ ପରିପ୍ରେକ୍ଷୀରେ ଜିଲ୍ଲାର ମୁଖ୍ୟ ଚିକିତ୍ସା ଅଧିକାରୀ (ସି.ଡି.ଏମ୍.ଓ.), ଉପମଣ୍ଡଳ ଚିକିତ୍ସାଧିକାରୀ (ଏସ୍.ଡି.ଏମ୍.ଓ.), ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର (ପି.ଏଚ୍.ସି. କମ୍ୟୁନିଟ୍ ହେଲ୍ଥ ସେଣ୍ଟର (ସି.ଏଚ୍.ସି.) ଚିକିତ୍ସାଳୟଗୁଡ଼ିକର ଚିକିତ୍ସାଧିକାରୀ ତଥା କର୍ମଚାରୀ ରାଜ୍ୟ ବୀମା ଯୋଜନା ଅଧୀନରେ ଥିବା ଚିକିତ୍ସାଳୟମାନଙ୍କର ଚିକିତ୍ସାଧିକାରୀମାନଙ୍କୁ ପ୍ରଚଣ୍ଡ ରୌଦ୍ରତାପଜନିତ ପରିସ୍ଥିତିର ସମ୍ଭାବ୍ୟ ମୁକାବିଲା ସହ ରୋଗୀମାନଙ୍କର ତଦ୍ଜନିତ ରୋଗର ଚିକିତ୍ସା ପାଇଁ ସତର୍କ ରହିବାକୁ ଅନୁରୋଧ କରାଯାଉଛି ।

(ଶ୍ରମ ଓ ନିୟୋଜନ ବିଭାଗ, ଓଡ଼ିଶା ସରକାରଙ୍କ ପକ୍ଷରୁ ପ୍ରଦତ୍ତ)

# ଚୈତ୍ର ରଥଯାତ୍ରା

ନିରଞ୍ଜନ ଦାଶ

ରଥଯାତ୍ରା । ଉତ୍କଳର ପୁରପଲ୍ଲୀରେ ଏହି ଯାତ୍ରାର ଏକ ସ୍ୱତନ୍ତ୍ର ଗାରିମା ଅଛି । ସଂସ୍କୃତ 'ରମ୍' ଧାତୁର ଅର୍ଥ ବିହାର । ରମ୍+ଥ=ରଥ । ଅର୍ଥାତ୍ ବିହାର ବା ଗମନ ଉପଯୋଗୀ ଯାନ । ଭାରତୀୟ ଆର୍ଯ୍ୟ ସଂସ୍କୃତିରେ ରଥର ଭୂମିକା, ପରମ୍ପରା ଓ ନିର୍ମାଣ ବୈଦିକ କାଳରୁ ପ୍ରଚଳିତ ।

ରଥଯାତ୍ରା ସୃଷ୍ଟିର ଐତିହାସିକ କାଳ ନିରୂପଣ କରିବାକୁ ଯାଇ ଡକ୍ଟର ହରେକୃଷ୍ଣ ମହତାବ ବୌଦ୍ଧଧର୍ମକୁ ଆଧାର କରି ରଥଯାତ୍ରା ଖ୍ରୀ:୪ର୍ଥ ଶତକରୁ ହୋଇଛି ବୋଲି ଓଡ଼ିଶା ଇତିହାସରେ ଉଲ୍ଲେଖ କରିଛନ୍ତି । ଅନ୍ୟ କେତେକଙ୍କ ମତ ଅନୁଯାୟୀ ଏହି ଯାତ୍ରା ସପ୍ତମ ଶତାବ୍ଦୀରୁ ହେଉଛି ବୋଲି କୁହାଯାଉଛି ।

ଓଡ଼ିଶାରେ ଶ୍ରୀକ୍ଷେତ୍ର ପୁରୀରେ ରଥଯାତ୍ରା ବା ଘୋଷଯାତ୍ରା ପୃଥିବୀ ବିଖ୍ୟାତ । ଏହା ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ଦିନ ଅନୁଷ୍ଠିତ ହୋଇଥାଏ । ସେହିପରି ଯାଜପୁରର ବିରଜା କ୍ଷେତ୍ରରେ ନବଦିନ ଯାଏଁ ଦେବୀ ଗୁଣ୍ଡିଚା ଆଶ୍ୱିନ ଶୁକ୍ଳ ପ୍ରତିପଦ ତିଥିରେ ପାଳନ କରାଯାଏ । ପୌଷଶୁକ୍ଳ ଦଶମୀରେ କୋଣାର୍କଠାରେ ସୂର୍ଯ୍ୟ ରଥଯାତ୍ରା ଏବଂ ଭୁବନେଶ୍ୱରରେ ଏକାମ୍ରେଶ୍ୱର ଲିଙ୍ଗରାଜଙ୍କର ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଅଶୋକାଷ୍ଟମୀ ଯାତ୍ରା ବା ଶ୍ରୀ ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କର ରଥଯାତ୍ରା ପାଞ୍ଚଦିନ ବ୍ୟାପି ଅନୁଷ୍ଠିତ ହୋଇଆସୁଛି ।



ଭୁବନେଶ୍ୱରରେ ରୁକ୍ମଣା ରଥ

ମହାପ୍ରଭୁ ଲିଙ୍ଗରାଜ କୃତ୍ତିବାସ ଭାବରେ ବିଖ୍ୟାତ । 'ତୀର୍ଥ ଚିନ୍ତାମଣି' ନାମକ ଗ୍ରନ୍ଥରୁ କୃତ୍ତିବାସ ଲିଙ୍ଗରାଜଙ୍କ ମାହାତ୍ମ୍ୟ ଓ ଅଶୋକାଷ୍ଟମୀ ଦିବସରେ ଲିଙ୍ଗରାଜଙ୍କ ଦର୍ଶନର ବୈଶିଷ୍ଟ୍ୟ ବର୍ଣ୍ଣନା କରାଯାଇଛି । ସେଥିରେ ବର୍ଣ୍ଣିତ ଅଛି ଯେ, ଅଶୋକାଷ୍ଟମୀ ଦିବସରେ ଅର୍କବର୍ଣ୍ଣ ରଥରେ ଅବସ୍ଥାପିତ କୃତ୍ତିବାସଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ଶିବଲୋକ ଦର୍ଶନ ପ୍ରାପ୍ତ ହୋଇଥାନ୍ତି । ଏକାମ୍ରକ୍ଷେତ୍ର ବା ଚକ୍ରକ୍ଷେତ୍ର ଭୁବନେଶ୍ୱର ମହାପ୍ରଭୁ ଲିଙ୍ଗରାଜଙ୍କ କ୍ଷେତ୍ରଭାବରେ ଯେପରି ବିଦିତ, ପ୍ରାଚୀନ ଯୁଗରୁ ବିଭିନ୍ନ ଯାନିଯାତ୍ରା ଓ ପର୍ବପର୍ବାଣି ପାଇଁ ସେହିଭଳି ଆଦରଣୀୟ । ଶ୍ରୀକ୍ଷେତ୍ରରେ ଯେପରି ବାରମାସରେ ତେରଯାତ୍ରା ଅନୁଷ୍ଠିତ ହୁଏ, ଏକାମ୍ର କ୍ଷେତ୍ରରେ ସେହିଭଳି ଚତୁର୍ଦ୍ଦଶ ଯାତ୍ରା ଅନୁଷ୍ଠିତ ହୋଇ ଆସୁଅଛି । ପ୍ରାୟ ତ୍ରୟୋଦଶ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ରଚିତ 'ସ୍ୱର୍ଣ୍ଣାଦି ମହୋଦୟ', 'ଏକାମ୍ର ଚନ୍ଦ୍ରିକା', 'କପିଳ ସଂହିତା' ପ୍ରଭୃତି ଉପପୁରାଣଗୁଡ଼ିକରେ ଏହାର ପ୍ରମାଣ ମିଳେ । 'ସ୍ୱର୍ଣ୍ଣାଦି ମହୋଦୟ'ରେ ରଥ ଉପରେ ଭୁବନେଶ୍ୱର, ସ୍କନ୍ଦ, ନନ୍ଦୀ, ଉମା, 'ଗୋପାଳିନୀ' ପ୍ରଭୃତି ରଥାରୂଢ଼ ହୋଇଥାନ୍ତି ବୋଲି ବହୁଳ ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

ରୁକୁଣା ରଥ - ପୁରାଣକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ରୁକ୍ମଣୀ ହେଉଛନ୍ତି ଶ୍ରୀକୃଷ୍ଣଙ୍କ ପତ୍ନୀ । ଯଦି ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖର ବଳଦେବ ହୁଅନ୍ତି, ବାସୁଦେବଙ୍କ ପତ୍ନୀ ରୁକ୍ମିଣୀ ଲୋକାଚାର ମତେ ଚନ୍ଦ୍ରଶେଖରଙ୍କ ଭାଇବୋହୂ ହେବେ ଏବଂ ଦେଢ଼ଶୂରଙ୍କ ସହ ଭାଇବୋହୂ କସ୍ମିନ୍‌କାଳେ ଏକତ୍ର ଯାତ୍ରା କରିପାରିବେ ନାହିଁ । ମାତ୍ର ଗବେଷକଙ୍କ ମତରେ ସପ୍ତମ ଶତାବ୍ଦୀରେ ଯଯାତି କେଶରୀ ଭୁବନେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ଏବଂ ଦଶମ-ଏକାଦଶ ଶତାବ୍ଦୀରେ ବର୍ତ୍ତମାନର ମନ୍ଦିର ନିର୍ମାଣ ହୋଇଥିଲା । ଏହି ଶତାବ୍ଦୀ ବେଳକୁ ମଧ୍ୟ ଅଶୋକାଷ୍ଟମୀ ରଥଯାତ୍ରା ପ୍ରଚଳିତ ହୋଇଥିବାର ଅନୁମାନ କରାଯାଏ । କେଶରୀ ବଂଶର ରାଜାମାନେ ଶୈବ ଧର୍ମାବଲମ୍ବୀ ଥିବାରୁ ଲିଙ୍ଗରାଜଙ୍କ ରଥକୁ ଅରୁଣ ବର୍ଣ୍ଣରେ ଆଚ୍ଛାଦିତ କରି ଚଳନ୍ତି ପ୍ରତିମାଙ୍କର ରଥଯାତ୍ରା କରାଉଥିଲେ । ତତ୍ପରେ ବୈଷ୍ଣବ ଧର୍ମର ପ୍ରଚଳନ କାଳରେ ଅର୍ଥାତ୍ ଗଙ୍ଗ ରାଜତ୍ୱ ସମୟରେ ଏହି ରଥଯାତ୍ରାର ପରିବର୍ତ୍ତନ କରାଯାଇ

ରଥରେ ଚନ୍ଦ୍ରଶେଖର, ରକ୍ମଣୀ ଓ ଦୋଳଗୋବିନ୍ଦଙ୍କର ବିଗ୍ରହ ଶୋଭା ପାଇଲା । 'ଶିବ ପୁରାଣ' ଅନୁଯାୟୀ ଶିବଙ୍କର ତ୍ରିପୁର ସଂହାର ସମ୍ପର୍କରେ ଏକ ଉପାଖ୍ୟାନ ପ୍ରଣିଧାନଯୋଗ୍ୟ । ତାରକାସୁରର ତିନିପୁତ୍ର ବ୍ରହ୍ମାଙ୍କ ବରରେ ବଳୀୟାନ ହୋଇ ଏପରି ଏକ ବର ଲାଭ କରିଥିଲେ, ଯାହାକି, ସେହିମାନଙ୍କଦ୍ୱାରା ପ୍ରସ୍ତୁତ ତିନି ପ୍ରସାଦକୁ ଗୋଟିଏ ମାତ୍ର ଶରରେ ଧ୍ୱଂସ କରିପାରୁଥିବେ । ସେମାନଙ୍କଦ୍ୱାରା ସ୍ୱର୍ଗରେ ସ୍ୱର୍ଣ୍ଣ, ବାୟୁମଣ୍ଡଳରେ ରୌପ୍ୟ ଓ ପୃଥିବୀରେ ଲୌହ ନିର୍ମିତ ପ୍ରାସାଦ ନିର୍ମାଣ ହୋଇଥିଲା । ଏଭଳି ଦୁରାତ୍ମାଙ୍କୁ ଧ୍ୱଂସ କରିବା ପାଇଁ ସମସ୍ତ ଦେବତାଙ୍କଦ୍ୱାରା ପ୍ରଦତ୍ତ ବିବିଧ ବୈଭବଯୁକ୍ତ ଦିବ୍ୟରଥ ମହାଦେବଙ୍କୁ ପ୍ରଦାନ କରାଯାଇ ଏହାର ସାରଥୀ ରୂପେ ସ୍ୱୟଂ ବ୍ରହ୍ମା ଅବସ୍ଥାପିତ ହେଲେ । ଏହି ରଥରେ ଯାତ୍ରା ପୂର୍ବକ ତ୍ରିପୁରାରୀ ସମସ୍ତ ତ୍ରିପୁରାଙ୍କୁ ଶର ମାରି ଧ୍ୱଂସ କରି ଦେଇଥିଲେ । ସେହି ଦିବସକୁ ସ୍ମରଣ ଉଦ୍ଦେଶ୍ୟରେ ବିଜୟ ଉତ୍ସବ ଭାବରେ ପାଳନ କରାଯାଏ ।

ସେଥିରେ ବର୍ଣ୍ଣିତ ଅଛି ଯେ, ଅଶୋକାଷ୍ଟମୀ ଦିବସରେ ଅର୍କବର୍ଣ୍ଣ ରଥରେ ଅବସ୍ଥାପିତ କୃତ୍ତିବାସଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ଶିବଲୋକ ଦର୍ଶନ ପ୍ରାପ୍ତ ହୋଇଥାନ୍ତି ।

ତ୍ରିପୁର ସଂହାର ପରେ ମହାଦେବ ଏହି ରଥକୁ ପରିତ୍ୟାଗ କରିଥିଲେ । କିନ୍ତୁ ସ୍ମାରକୀ ଉତ୍ସବ ଭାବରେ ଏହା ପାଳନ କରାଯାଉଥିବାରୁ ବାହୁଡ଼ା ଦିନ ରଥର ପଶ୍ଚାତରେ ଏକ ଦ୍ୱାର ଖୋଲାଯାଇ ସେହି ଦ୍ୱାର ଦେଇ ଠାକୁରମାନେ ରଥାରୂଢ଼ ହୋଇଥାନ୍ତି । ଏଣୁ ଲୋକମତରେ 'ରୁକୁଣା ରଥ ଅଣଲେଉଟ' ପଦଟି ପ୍ରଚଳିତ ହୋଇଅଛି ।

ଅଶୋକାଷ୍ଟମୀ ରଥଯାତ୍ରା ଏକ ସମନ୍ୱୟଭିତ୍ତିକ ଯାତ୍ରା । ଯାହା କୁହାଯାଏ, ଦଧିକୁ ଯେତେ ମନ୍ଥିବ, ଲବଣୀ ଉତ୍ପାଦ ହେବ । ସେହିଭଳି ଆବହମାନ କାଳରୁ ପ୍ରଚଳିତ ଯାତ୍ରାର ପଶ୍ଚାତ୍ ଅବଲୋକନ କଲେ ଜଣାଯାଏ ଯେ, ପ୍ରାରମ୍ଭରୁ ପ୍ରତିଷ୍ଠିତ ଶୈବଧର୍ମର ମହୀରୁହ ଉପରେ ପରକୁ ପର ବିଭିନ୍ନ ଧର୍ମର ଆଗମନ ଓ ପ୍ରସ୍ଥାନ ନିଜ ନିଜର ସ୍ମୃତି ଚିହ୍ନଟିଏ ଲେଖାଏଁ ଛାଡ଼ିଯାଉଛନ୍ତି ଏହି ପୀଠ ଉପରେ ଏବଂ ଶୈବ, ବୈଷ୍ଣବ, ବୌଦ୍ଧ, ଜୈନ ଆଦି ଧର୍ମର ସମନ୍ୱୟ ଘଟିଆସିଛି ଏହି ଏକାମ୍ରକ୍ଷେତ୍ର, ଭୁବନେଶ୍ୱରରେ । ରଥର ନାମ 'ଦେବଦଳନ' ହୋଇଥିଲେ ହେଁ ଲୋକମୁଖରେ 'ରୁକୁଣା ରଥ' ନାମରେ ଗୃହୀତ ହୋଇଯାଇଛି ଯୁଗରୁ ଯୁଗକୁ ।

ବରିଷ୍ଠ କ୍ଷିପ୍ର ଲେଖକ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

---

## ଅପ୍ରେଲ ୧୨ରେ ଲକ୍ଷ୍ମୀପୁର ବିଧାନସଭା ଆସନ ପାଇଁ ଉପନିର୍ବାଚନ

ବିଧାୟକ ଶ୍ରୀ ଅନନ୍ତରାମ ମାଝୀଙ୍କ ବିୟୋଗ ଯୋଗୁଁ ଖାଲି ପଡ଼ିଥିବା ୮୩-ଲକ୍ଷ୍ମୀପୁର (ସଂରକ୍ଷିତ) ବିଧାନସଭା ଆସନ ପାଇଁ ଉପନିର୍ବାଚନ ନିମନ୍ତେ ଭାରତର ନିର୍ବାଚନ କମିଶନଙ୍କପକ୍ଷରୁ ବିଜ୍ଞପ୍ତି ଜାରି କରାଯାଇଛି ।

ଲୋକ ପ୍ରତିନିଧି ଆଇନ ୧୯୫୧ (୧୯୫୧ ଓ ୪୩) ଧାରା ୧୫୦ର ଉପଧାରା (୨) ଏବଂ ଧାରା ୩୦ ଓ ୫୬ ଅନୁଯାୟୀ ଏହି ବିଜ୍ଞପ୍ତି ପ୍ରକାଶ ପାଇଛି ।

ଗତ ତା.୧୯.୦୩.୨୦୦୮ ରିଖରେ ଏଥିନିମନ୍ତେ ବିଜ୍ଞପ୍ତି ପ୍ରକାଶ ପାଇଥିଲା । ସେବେଠାରୁ ମନୋନୟନ ପତ୍ର ଦାଖଲ ପ୍ରକ୍ରିୟା ଆରମ୍ଭ ହୋଇଛି । ପ୍ରକାଶିତ ବିଜ୍ଞପ୍ତି ଅନୁଯାୟୀ ଗତ ମାର୍ଚ୍ଚ ମାସ ୨୬ ତାରିଖ ବୁଧବାର ଦିନ ମନୋନୟନ ପତ୍ର ଦାଖଲର ଶେଷ ଦିବସ ଥିଲା । ୨୭ ତାରିଖ ଦିନ ମନୋନୟନ ପତ୍ରଗୁଡ଼ିକ ଯାଞ୍ଚ କରାଯାଇ ୨୯ ତାରିଖ ସୁଦ୍ଧା ମନୋନୟନ ପତ୍ର ପ୍ରତ୍ୟାହାରର ଅନ୍ତିମ ଦିବସ ଥିଲା । ଆବଶ୍ୟକ ପଡ଼ିଲେ ଅପ୍ରେଲ ୧୨ ତାରିଖ ଶନିବାର ଦିନ ସକାଳ ୭ଟାରୁ ଅପରାହ୍ନ ୫ଟା ପର୍ଯ୍ୟନ୍ତ ଭୋଟ ଗ୍ରହଣ କରାଯିବ ଏବଂ ଅପ୍ରେଲ ୧୮ ତାରିଖ ଶୁକ୍ରବାର ସୁଦ୍ଧା ନିର୍ବାଚନ ପ୍ରକ୍ରିୟା ସଂପୂର୍ଣ୍ଣ ହେବ ବୋଲି ରାଜ୍ୟ ନିର୍ବାଚନ ଅଧିକାରୀଙ୍କ କାର୍ଯ୍ୟାଳୟ ସୂତ୍ରରୁ ଜଣାଯାଇଛି ।

(ସୂଚନା ଓ ଲୋକ ସଂପର୍କ ବିଭାଗ)

# ଆମ ସଂସ୍କୃତିରେ ଦୋଳ ଉତ୍ସବର ପରମ୍ପରା

ଜେନାମଣି ଲକ୍ଷ୍ମୀକାନ୍ତ

**ଭା**ରତୀୟ ସଂସ୍କୃତିର ଅନନ୍ୟ ପ୍ରବକ୍ତା ଏବଂ ପ୍ରଜ୍ଞାପୁରୁଷ ରାହୁଳ-ସଂସ୍କୃତାୟନ, ଭାରତୀୟ ଜନଜୀବନରେ ପର୍ବପର୍ବାଣି ଓଷାବ୍ରତ ଓ ଯାନିଯାତ୍ରାର ଉଦ୍ଦ୍ୟେଶିକା ଓ ମହତ୍ୱ ସଂପର୍କରେ ବଖାଣିବାକୁ ଯାଇ ପାରଭିକୀରେ ସଂକ୍ଷେପରେ ଏହା ସୂଚାଇଥିଲେ - 'ଫୁଲ ପାଇଁ ମହକ ଯାହା : ଜନ ଜୀବନ ପାଇଁ ଲୋକ ସଂସ୍କୃତି ଓ ଉତ୍ସବ ତାହା ।' ଏହା ତର୍କଣାଠାରୁ ଉପଲବ୍ଧି ଏବଂ ଅନ୍ତର୍ନିରିକ୍ଷଣର ଏକ ଜ୍ୱଳନ୍ତ ପ୍ରସଙ୍ଗ ଆମ ସମସ୍ତିଙ୍କ ପାଇଁ ।

ଲୋକ ସଂସ୍କୃତିର ଏକ ବଳିଷ୍ଠ ବିଭବ ହେଉଛି ଉତ୍ସବ ସଂସ୍କୃତି । ଏବଂବିଧ ପର୍ବପର୍ବାଣି ଓ ଉତ୍ସବଗୁଡ଼ିକ ଏକ ଦିଗରୁ ଆଧାତ୍ମିକ ଐତିହ୍ୟ ଅନୁବନ୍ଧିତ ଏବଂ ଅପର ଦିଗରୁ ସାମାଜିକ ହର୍ଷୋଲ୍ଲାସ, ରୀତି ରିଓ୍ୱାଜ ଋତୁ ଉପଯୋଗୀ ଖାଦ୍ୟପେୟ ଉପଚାର ସମେତ ସାମାଜିକ ସୌହାର୍ଦ୍ଦ୍ୟ ସଂହତି ଓ ସଂପ୍ରୀତି ବର୍ଦ୍ଧନରେ ସହାୟକ ହୋଇଥାଏ ।

ଏହା ଦୋହରାଇବା ଅନାବଶ୍ୟକ ଯେ ଆମ ଜନଜୀବନରେ ସଂପ୍ରତି ପାଳନ କରାଯାଉଥିବା ପର୍ବପର୍ବାଣି ଓଷା ବ୍ରତ ଯାନିଯାତ୍ରା ମଧ୍ୟରୁ କେତେକ ମୁଖ୍ୟତଃ ଧର୍ମ ଓ ଅଧ୍ୟାତ୍ମ ଅନୁବନ୍ଧିତ । ଆଉ କେତେକ ଋତୁ ଏବଂ ସାମାଜିକ ଚଳଣି ଓ ରୀତି ରିଓ୍ୱାଜ ଆଧାରିତ ଅଟେ । ଅନ୍ୟ ଭାଷାରେ କହିଲେ ଏହିସବୁ ପର୍ବପର୍ବାଣି ପ୍ରତ୍ୟେକ ଜାତିର ଜାତୀୟ ସ୍ୱାତନ୍ତ୍ର୍ୟର ସ୍ମାରକୀ । ମେକ୍ସ ମୁଲାରଙ୍କ ଭାଷାରେ 'ସଭ୍ୟତା ଓ ସଂସ୍କୃତି ହିଁ ପ୍ରତ୍ୟେକ ଜାତିର ଜାତୀୟ ସ୍ୱାତନ୍ତ୍ର୍ୟର ସ୍ମାରକୀ । ମେକ୍ସ ମୁଲାରଙ୍କ ଭାଷାରେ 'ସଭ୍ୟତା ଓ ସଂସ୍କୃତି ହେଉଛି ମାଟି ଓ ପ୍ରତିମୂର୍ତ୍ତିର ପ୍ରତିରୂପ ।' ଏହା ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱଭଳି । ଗୋଟିଏ ଘଷରାପାର୍ଶ୍ୱ ଯୋଗୁଁ ମୁଦ୍ରା ଯେଭଳି ତାର ବ୍ୟବହାରିକ ମୂଲ୍ୟ ହରାଇବସେ, ସେହିପରି ଏ କ୍ଷେତ୍ରରେ ଦେଖାଯାଇଥାଏ । ଏଇଥିପାଇଁ କୁହନ୍ତି- ସଭ୍ୟତା ଶରୀରର ପୋଷାକ ହେଲେ, ସଂସ୍କୃତି ଶରୀରର ଆତ୍ମାଭଳି ସଭ୍ୟତା ବୃକ୍ଷର ବଲ୍କଳ ହେଲେ ସଂସ୍କୃତି ହେଉଛି ତାର ମଂଜ ଏବଂ ସଭ୍ୟତା ରୁଚିର ପାଥେୟ ହେଲେ ସଂସ୍କୃତି ନୀତି ଓ ଆଦର୍ଶର ପଥ ସଦୃଶ ।

ଆମ ସନାତନ ସଂସ୍କୃତିର ମାର୍ଗଦର୍ଶୀ ତତ୍ତ୍ୱବିତ ଋଷି ମହର୍ଷୀଗଣ ଏଇଥିପାଇଁ ପର୍ବପର୍ବାଣୀ ଓଷାବ୍ରତ ଯାନିଯାତ୍ରାର ଉଦ୍ଦେଶିକା ରୂପେ ଏଭଳି ପୌରାଣିକ ଆଖ୍ୟାୟିକା ମାଧ୍ୟମରେ ଦିବ୍ୟଜୀବନର ଆଧାତ୍ମିକ ପ୍ରେରଣାରେ ଉଦ୍‌ବୁଦ୍ଧ ଏବଂ ଅନୁପ୍ରାଣୀତ ହେବା ପାଇଁ ଖୋରାକ ଯୋଗାଇ ଥାଏ । ପର୍ବପର୍ବାଣି ପାଳନର ମହତ୍ୱ କ'ଣ ବୋଲି ଜଣେ ଶିଷ୍ୟର ପ୍ରଶ୍ନରେ 'ମହର୍ଷୀ କଣାଦ'ଙ୍କର ବ୍ୟାଖାନ ଓ ଉତ୍ତର ଥିଲା- 'ସବୁ ପର୍ବପର୍ବାଣି ବହୁଜନ ହିତାୟ, ବହୁଜନ ସୁଖାୟ ଅଭିପ୍ରାୟରେ ପ୍ରତ୍ୟାର୍ପିତ । ବ୍ୟଷ୍ଟି ଓ ଗୋଷ୍ଠୀ ଜୀବନର ସୁଖଶାନ୍ତି, ସୌହାର୍ଦ୍ଦ୍ୟ ସଂପ୍ରତି ଏହାର ପଥ ଓ ପାଥେୟ ।' ଲୋକପ୍ରିୟ ପର୍ବପର୍ବାଣି ମଧ୍ୟରେ ପୋଙ୍ଗଲ, ବିହୁ, ବୁଦ୍ଧ ପୂର୍ଣ୍ଣିମା ରକ୍ଷାବର୍ଦ୍ଧନ, ଓନାମ୍ ଇଦ, ଗଣେଷ ଚତୁର୍ଥୀ, ଦୁର୍ଗାପୂଜା, ଦଶହରା ଦୀପାବଳୀ ଲୋହାରି, ନବରାତ୍ର ମହାଶିବ ରାତ୍ରୀ, ଜନ୍ମାଷ୍ଟମୀ ରାମନବମୀ ଓ ଦୋଳଯାତ୍ରା ଓ ହୋଲି ଅନ୍ୟତମ ।

ଏହାର ଅର୍ଥ- ରଙ୍ଗ ହୋରି ଉତ୍ସବ । ଦୋଳଯାତ୍ରା ଓ ବସନ୍ତୋତ୍ସବକୁ ଇଂରାଜୀରେ 'ହୋଲି ଫେଷ୍ଟିଭାଲ' ବୋଲି କୁହନ୍ତି । ହୋଲି ଏଇ ନାମକରଣ ପଛରେ ପୌରାଣିକ ଆଖ୍ୟାୟିକାନୁଯାୟୀ ବିଷ୍ଣୁଭକ୍ତ ବାଳୁତ ପ୍ରହ୍ଲାଦଙ୍କ ପିତା ଅସୁର ରାଜା ହିରଣ୍ୟକଷ୍ୟପୁ ଅତ୍ୟନ୍ତ ନାସ୍ତିକ ଓ ଅହଂକାରୀ ଥିଲା, ବିଷ୍ଣୁଭକ୍ତ ପୁତ୍ର ପ୍ରହ୍ଲାଦଙ୍କୁ ବିଷ୍ଣୁ ଅନୁରକ୍ତିରୁ ନିବୃତ କରିବା ପାଇଁ ସକଳ ଅପଚେଷ୍ଟା ସତ୍ୱେ ବିଫଳ ହେବାରୁ, ପରିଶେଷରେ ନିଜ ଭଉଣୀ ହୋଲୀକା କୋଳରେ ପୁତ୍ର ପ୍ରହ୍ଲାଦକୁ ବସାଇ ନିଆଁରେ ପୋଡ଼ି ମାରି ଦେବା ପାଇଁ ଚକ୍ରାନ୍ତ ହିରଣ୍ୟକଶିପୁ କରିଥିଲା । ହୋଲିକା ନିଆଁରେ ପୋଡ଼ି ମରିବା ପାଇଁ ବର ପାଇଥିଲା ଏଣୁ ସିଏ ନିଜ କୋଳରେ ପ୍ରହ୍ଲାଦକୁ ଧରି ଜଳନ୍ତା ନିଆଁରେ ବସିଥିଲା । ପରିଣାମ ଥିଲା କିନ୍ତୁ ଏକାନ୍ତ ବିସ୍ମୟକର । ହୋଲିକା ନିଆଁରେ ଭସ୍ମିଭୂତ ହେଲା, ହେଲେ ବିଷ୍ଣୁ କୃପା ପ୍ରାପ୍ତ ବାଳୁତ ପ୍ରହ୍ଲାଦକୁ ଅଗ୍ନି ସ୍ପର୍ଶକରି ପାରିନଥିଲା । ଏହି ଆଖ୍ୟାୟିକାକୁ ପ୍ରତୀକ ରୂପେ ଗ୍ରହଣ କରି ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ସତ୍ୟ ଓ ସଦାଚାରର ସୁନିଶ୍ଚୟ ବିଜୟ ପର୍ବ ରୂପେ 'ରଂଗ ହୋରି' ଉତ୍ସବ ସହ ହୋଲିକା ଅଗ୍ନି ବା ହୋରି ଅଗ୍ନି-ପ୍ରଜ୍ୱଳନର ପରମ୍ପରା ପ୍ରଚଳିତ ଏଇ ଭାରତରେ ।

ହୋଲି ଉତ୍ସବ ପାଳନକୁ ପ୍ରଣୋଦିତ କରୁଥିବା ଅନ୍ୟ ଏକ ପୌରାଣିକ ଆଲେଖୀକାନୁଯାୟୀ ହୋଲି ଅସୁରୁଣୀର ପୁତ୍ର ମେଣ୍ଢାସୁରକୁ ମାରିବା ପାଇଁ ଶ୍ରୀକୃଷ୍ଣ ତାହାର ମୁଖଗହ୍ୱର ମଧ୍ୟକୁ ପ୍ରବେଶ କରି ତାକୁ

ଅକ୍ଳେଶର ବଧ କରିଥିଲେ । ମେଣ୍ଢାସୁର ବରପ୍ରାପ୍ତ ହୋଇଥିଲା ଯେ ତା' ଦେହର ରକ୍ତ ଭୂମିରେ ପଡ଼ିଲେ ତା' ମଧ୍ୟରୁ ରକ୍ତବୀଜ ରୂପେ ସିଏ ପୁନଶ୍ଚ ଜନ୍ମଲାଭ କରିବ । ତେଣୁ ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଲାଗିଥିବା ମେଣ୍ଢାସୁରର ହତ୍ୟା ହେତୁ ରକ୍ତଛିଟାକୁ ଭୂମିରେ ନପଡ଼ିବାକୁ ଦେବା ଉଦ୍ଦେଶ୍ୟରେ କୃଷ୍ଣ ପ୍ରାଣାଧିକା ପ୍ରିୟବନ୍ଦା ଗୋପାଙ୍ଗନାମାନେ ରଙ୍ଗନାଥ ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଲାଲ ରଙ୍ଗର ଫଗୁ/ଅବିର ବୋଲି ଦେଇ ଥିଲେ । ଏହି ଆଖ୍ୟାୟିକା ଏକ ଜନଶ୍ରୁତିର ଭଗ୍ନାଂଶ ରୂପେ 'ବସନ୍ତ ଉତ୍ସବ' ବା ଦୋଳ ଉତ୍ସବ ଅବସରରେ ରାଧାମାଧବଙ୍କ ଅର୍ଚ୍ଚନା ଓ ଫଗୁଅର୍ପଣ ସହ ରଙ୍ଗ ହୋରି ଖେଳ ହୋଲିର ମୁଖ୍ୟ ବିଭବ ରୂପେ କ୍ରମଶ ଲୋକପ୍ରିୟ ହେବାରେ ଲାଗିଛି କେଉଁ ଆଇମା ଅମଳରୁ ଅକୁମାରୀ ହିମାଚଳ ।

ଫଗୁ ବା ଅବିର ସ୍ନେହ ସଦିଚ୍ଛା ଓ ସଂପ୍ରୀତିର - ପ୍ରତୀକ ବୋଲି କେହି କେହି କହୁଥିଲା ବେଳେ, ଥୋକେ କହୁନ୍ତି ଏହା ସ୍ୱାସ୍ଥ୍ୟରକ୍ଷାକାରୀ । ଫଗୁଣ ଅବିରରେ ଔଷଧୀୟ ଗୁଣଥାଏ ଓ ତାହା ଚର୍ମରୋଗର ନିବାରକ । ବସନ୍ତଋତୁ ସମାଗମରେ ପରିଦୃଷ୍ଟ ବିବିଧ ଚର୍ମରୋଗ ତଥା ହାଡ଼ଫୁଟି ରୋଗର ପ୍ରତିରୋଧକ ବୋଲି ଶୁଶ୍ରୁତଙ୍କ ନିର୍ଣ୍ଣୟ ରହିଛି । ଏଥିପାଇଁ ଆଗରୁ ପଳାଶଫୁଲ ସଂଗ୍ରହ କରି ପ୍ରାକୃତିକ-ଅବିର ପ୍ରସ୍ତୁତ କରାଯାଏ । କେହି କେହି ଚାଉଳ ଗୁଣ୍ଡରେ ହଳଦି ଓ ରଙ୍ଗିଣୀ ଫୁଲ ଗୁଣ୍ଡ ମିଶାଇ ଅବଧି ପ୍ରସ୍ତୁତ କରିଥାଆନ୍ତି । ଏବେ ଅବିର ନୁହେଁ, ରାସାୟନିକ ଓ ଖଣିଜ ପ୍ରଭାବରେ ସଂପୂର୍ଣ୍ଣ ବିବିଧ ରଂଗ ଓ ପ୍ରଲେପର ବ୍ୟବହାର ଯାହାକୁ ଯେତେ ।

ଅଗଣିତ ଶ୍ରଦ୍ଧାଳୁ ଏହି ବସନ୍ତୋତ୍ସବକୁ ରାମୋତ୍ସବ ରୂପେ ପାଳନ୍ତି । କୃଷ୍ଣଭକ୍ତ ଗୋଡ଼ୀୟ ବୈଷ୍ଣବମାନଙ୍କ ସମେତ ଯଦୁବଂଶୀ ଯାଦବମାନଙ୍କର ଏହା ଏକ ମହାନ୍ ପର୍ବ ରୂପେ ପରିଚିତ । ହୋଲି ସହ ଭଗବାନ ଶିବ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ବୋଲି ଶୈବଧର୍ମାବଲମ୍ବୀ ଶିବଭକ୍ତମାନଙ୍କର ବିଶ୍ୱାସ ରହିଛି । ଏଣୁ କେତେକ ପ୍ରମୁଖ ଶୈବପୀଠ (ଶିବାଳୟ)ରେ ଏହି ଅବସରରେ ପ୍ରଥମେ ଭାଙ୍ଗପଣା ଓ ଅବିର ବୋଲାରେ ହୋରି ଖେଳିବାର ପରମ୍ପରା ଦୃଷ୍ଟିଗୋଚର ହୋଇଥାଏ । ହୋଲି ହେଉଛି ସୌହାର୍ଦ୍ଦ୍ୟ, ସଂପ୍ରୀତି ସଂହତି ଓ ମିଳନର ଉତ୍ସବ । ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ସବୁ ସଂପ୍ରଦାୟର ଲୋକେ ପ୍ରାୟ ଏଥିରେ ଅଂଶ ଗ୍ରହଣ କରିଥାଆନ୍ତି, ହୋଲି ସଦିଚ୍ଛା ଜ୍ଞାପନ ଓ ରଂଗ ପ୍ରଲେପନ ବ୍ୟତୀତ ଏଇ ଦିନ ହୋଇଲି ମିଠାଇ ବା ମିଷ୍ଟାନ୍ନ ଉପହାର ଦେବାର ରୀତି କ୍ରମଶଃ ଜନାଦୃତ ହେବାରେ ଲାଗିଛି ।

ସର୍ବଭାରତୀୟ ସାଂସ୍କୃତିକ ପରମ୍ପରାର ମୁଖ୍ୟସ୍ରୋତରୁ ଉତ୍କଳର ହୋଲି ପର୍ବପାଳନ ସଂପୂର୍ଣ୍ଣ ଭିନ୍ନ ବା ପୃଥକ୍ ନୁହେଁ । ଅଥଚ ଏହା ନିଜସ୍ୱ ରୀତି ରେଓ୍ୱାଜରେ ଯେଭଳି ରୁଚିର ସେଭଳି ମନୋହାରୀ । ଓଡ଼ିଆ ଧର୍ମ ଦର୍ଶନ ଓ ସଂସ୍କୃତିରେ ଶ୍ରୀମନ୍ଦିରରେ ଫଗୁ ଦଶମୀ ଦିନଠାରୁ ଶ୍ରୀଜୀଉଙ୍କ ଦୋଳଯାତ୍ରା-ତ୍ରୟୋଦଶୀ ଯାଏ ଚାଲିଥାଏ । ଯିଏ ଜଗନ୍ନାଥ ସିଏ ଶ୍ରୀକୃଷ୍ଣ । ଏଣୁ ଏହି ଅବସରରେ ରାଧାମାଧବ ଉପାସନା, ଦୋଳପରିକ୍ରମା ପ୍ରଭୃତି ଉତ୍ସବ ସମାରୋହରେ ପାଳିତ ହୋଇଥାଏ । ଓଡ଼ିଶାର ପୁରପଲ୍ଲୀରେ ରାଧାକୃଷ୍ଣ ଓ ଜଗନ୍ନାଥ ମନ୍ଦିରରେ ଅନୁରୂପ ପର୍ବପାଳିତ ହୁଏ । ସୁଶୋଭିତ ବିମାନରେ ରାଧାକୃଷ୍ଣ ନିଜ ମନ୍ଦିର ଛାଡ଼ି ଶ୍ରଦ୍ଧାଳୁ ଭକ୍ତଜନଙ୍କ ସହ ଭେଟାଭେଟ ହୋଇ ଦ୍ୱାର ଦ୍ୱାର ବୁଲି ପଣା ଓ ଚାଟେରି ଖାଆନ୍ତି । ପରିଶେଷରେ ମେଲଣ ପୀଠ ବା ପଡ଼ିଆରେ ସକଳ ବିମାନ ଏକତ୍ର ହେବା ଉତ୍ତାରୁ ସେଠାରେ ମେଲଣ ପର୍ବ ଅନୁଷ୍ଠିତ ହୋଇଥାଏ । କ୍ରମଶଃ ଏହା ବହୁ ଅଞ୍ଚଳରେ ଆଞ୍ଚଳିକ ଯାନିଯାତ୍ରା ପ୍ରଧାନ । ଉଦାହରଣ ସ୍ୱରୂପ- କଟକ ଜିଲ୍ଲାର ମାହାଙ୍ଗା ବ୍ଲକ ଅନ୍ତର୍ଗତ ପ୍ରଖ୍ୟାତ ଓଲକଣା ମେଳଣ ଏବଂ ଖୋର୍ଦ୍ଧାର ହରିରାଜପୁର ପ୍ରସିଦ୍ଧ ଦୋଳଯାତ୍ରା କିମ୍ବା ଭଦ୍ରକର କାଳିମେଷା ମେଳଣ ସଂପର୍କରେ ଉଲ୍ଲେଖ କରାଯାଇପାରେ ।

ଦୋଳ ଉତ୍ସବ ବା ହୋଲିପର୍ବ ଉତ୍କଳୀୟ ମହାନ ସାଂସ୍କୃତିକ ପରମ୍ପରାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ରାଧାକୃଷ୍ଣ ଉପାସନାର ଆଧାତ୍ମିକ ପରମ୍ପରାରେ ଉତ୍କଳର ପ୍ରାଚୀନ ସାହିତ୍ୟ ଯେଭଳି ଋଦ୍ଧିମନ୍ତ, ଓଡ଼ିଶାର ସ୍ଥାପତ୍ୟ, ଚିତ୍ରଣ ପରମ୍ପରା ଲୋକ ସଂସ୍କୃତିରେ ଅନୁରୂପ ଭାବେ ଅନୁବନ୍ଧିତ । ଏହି ମହାର୍ଘ୍ୟ ପର୍ବ ଅବସରରେ ଓଡ଼ିଶୀ ସଂକୀର୍ତ୍ତନ, ରାସଲୀଳା ଓ ଗୋଟିପୁଅ ନୃତ୍ୟ ପ୍ରଦର୍ଶନ ବ୍ୟତୀତ ଉତ୍କଳୀୟ ଯାଦବମାନଙ୍କର ନୃତ୍ୟ ଗୀତରେ ସାଂସ୍କୃତିକ କାର୍ଯ୍ୟକ୍ରମ ଜାତି ଧର୍ମ ନିର୍ବିଶେଷରେ ମହାସମାରୋହରେ ପାଳିତ ହୋଇଥାଏ । ଏହା ମିଳନ ଓ ଭାଇଚାରାର ଏକ ଲୋକପ୍ରିୟ ପର୍ବ ରୂପେ କ୍ରମଶଃ ଜନଜୀବନରେ ତା'ର ଆସ୍ଥାନ ମାଡ଼ି ବସିବାରେ ଲାଗିଛି । ଏହା ଯେଭଳି ଆଶା ସଂଚାରୀ ସେଭଳି ଉତ୍ସାହପ୍ରଦ ଅଟେ । କିନ୍ତୁ ଏହା ଗଭୀର କ୍ଷୋଭ ଓ ପରିତାପର ବିଷୟ ଯେ- କେତେକ କ୍ଷେତ୍ରରେ ଏହି ମହାନ୍ ପର୍ବ ପାଳନ ଆଳରେ ଅପସଂସ୍କୃତିର ଅନୁପ୍ରବେଶ ଓ ଦୌରାତ୍ମ୍ୟ କାଁ ଭାଁ ଦୃଷ୍ଟିଗୋଚର ହେଉଛି । କେଉଁଠି ହୋଲି ଖଟି ପାଇଁ ବଟି ଆଦାୟ ହେଉଛି ତ କେଉଁଠି ଅଘିରା ଦିଅଁ ପାଇଁ । ପ୍ରଜ୍ୱଳନ ପାଇଁ ଜବରଦସ୍ତ ଚାନ୍ଦାଭେଦା ସଂଗ୍ରହ । କେଉଁ ଜୋର ଜବରଦସ୍ତ ରଂଗ ପ୍ରୟୋଗ ସହ ଅଶାଳୀନ ବ୍ୟବହାର ଏବଂ ଅଯଥା କଳି ତକରାଳ, ଦାଦାଗିରି ସାଙ୍ଗକୁ ଅଙ୍କୁଶବିହୀନ ମାଦକ ଦ୍ରବ୍ୟର ପର୍ଯ୍ୟାପ୍ତ ସେବନ ହେତୁ ଗୋଷ୍ଠିକନ୍ଦଳ ଏବଂ ସାଂପ୍ରଦାୟିକ ହିଂସାକାଣ୍ଡ ବଢୁଥିବା ଦେଖିବାକୁ ମିଳୁଛି ।

ପ୍ରଜ୍ଞାଭାରତୀ
୧୯୨ ବି, ଶେଫାଳିକ ରେସିଡ଼େନ୍ସି
ଲୁଇସ୍ ରୋଡ଼ (କେଦାରଗୌରୀ) ପାର୍କ ସାମ୍ନା
ଭୁବନେଶ୍ୱର - ୧୪

-----

# ଓଡ଼ିଶାରେ ଶାଗୁଣାର ସ୍ଥିତି, ପରିସ୍ଥିତି ଓ ପରିବେଶ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

**ସମାଜ, ସାହିତ୍ୟ, ଧର୍ମ, ପୁରାଣ ଓ ପରିବେଶରେ ଶାଗୁଣା**

ଶାଗୁଣା ସାଧାରଣ ଲୋକଙ୍କ ନଜରରେ ଏକ ମଢ଼ଖିଆ (Carriontaking) ପକ୍ଷୀ । ତେବେ ଏହା ଏପରି ଏକ ପକ୍ଷୀ ଯେ ଏହାର ଆଲୋଚନା ଧର୍ମ, ପୁରାଣ, ସାହିତ୍ୟ ତଥା ବିଜ୍ଞାନରେ ଦେଖିବାକୁ ମିଳେ । ପୁରୀର ଶ୍ରୀମନ୍ଦିର ଦକ୍ଷିଣଦ୍ୱାର ପାର୍ଶ୍ୱରେ ଏକ ସ୍ଥାନରେ ଉପର ଭାଗରେ ବିରାଟକାୟ ପକ୍ଷୀ ଡେଣା ମେଲାଇ ବସିଥିବାର ଗଠନ ରହିଛି । ଆଉ ଡେଣାର ଦୁଇପାର୍ଶ୍ୱରେ ଅନେକ ବସିଛନ୍ତି । ଏ ପକ୍ଷୀକୁ ପୁରୀରେ ସମ୍ପାତି ଚଢ଼େଇ ଖୋଲି କୁହନ୍ତି । ଏହା ହିଁ 'ଜଟାୟୁ' ପକ୍ଷୀ ନାମରେ ଅଭିହିତ । ଜଟାୟୁ ଆମ ପୁରାଣରେ ସାଧୁ ଶାଗୁଣା ଭାବରେ ଗଣ୍ୟ । ଏପରିକି ପୁରୀରେ ଦୁର୍ଗାପୂଜା ଦୁର୍ଗା ଭସାଣି ଦିବସରେ ସମସ୍ତ ଦୁର୍ଗାଦେବୀ ଶ୍ରୀମନ୍ଦିରଠାରେ ଠୁଳ ହୋଇଥାଆନ୍ତି । ଆଉ ଏ ଦୁର୍ଗାଦେବୀଙ୍କ ସମାବେଶରେ ମଧ୍ୟ ଏକ ସମ୍ପାତି ଚଢ଼େଇ ବା ଜଟାୟୁ ମଧ୍ୟ ସ୍ଥାନ ପାଇଥାଏ ପ୍ରତ୍ୟେକ ବର୍ଷ । ପାର୍ସୀ (Parsee)ମାନେ ଶାଗୁଣାକୁ ଏକ ସ୍ୱତନ୍ତ୍ର ସ୍ଥାନ ଓ ମାନ୍ୟତା ଦେଇଥାଆନ୍ତି । ତାଙ୍କର ମୃତ ଶରୀରଗୁଡ଼ିକୁ ଏ ଶାଗୁଣା କିପରି ଖାଇ ଶେଷ କରିବ ଓ ଏପରି କଲେ ସେମାନଙ୍କର ମଙ୍ଗଳ ବା ଶୁଭ ବୋଲି ବିଶ୍ୱାସ ଆଜି ବି ରହିଛି । ଏହା ଭାରତର 'ପରିବେଶ ସୁରକ୍ଷାକାରୀ ପ୍ରାଣୀ' (Scavenger of the nature) ଭାବରେ ବିବେଚିତ । ଗୋଟିଏ ମଢ଼ ବା ମୃତ ଶରୀର ଖୁବ୍ କମ୍ ସମୟରେ ଶ୍ମଶାନ ବା ସେପରି ପରିତ୍ୟକ୍ତ ସ୍ଥାନରୁ ସଫା କରିବାରେ ଏପରି ଶାଗୁଣାମାନଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ତେଣୁ ଦୁର୍ଗନ୍ଧମୟ ପରିବେଶକୁ ଦୁର୍ଗନ୍ଧମୁକ୍ତ କରିବାରେ ଏମାନେ ଖୁବ୍ ସହାୟକ ହୋଇଥାଆନ୍ତି ବୋଲି ପରିବେଶ ବିଜ୍ଞାନରେ ଏହାର ଆଲୋଚନା ଅନେକ । ତେବେ ମୋଟାମୋଟି ଶାଗୁଣା ଆମ ପରିବେଶର ଏକ ମୁଖ୍ୟ ଉପକାରୀ ମେହନ୍ତର ଭାବରେ ଅଭିହିତ ।

ପ୍ରାଣୀ ବିଜ୍ଞାନୀଙ୍କ ଭାଷାରେ ଶାଗୁଣା ଗୋଟିଏ ରାସ୍ତା ଝାଡୁଦାର ବା ରାସ୍ତା ସମ୍ମାର୍ଜକ ଶୀକାରୀ ପକ୍ଷୀ । ଏମାନେ ଚିଲ (Kite), ଇଗଲ (Eagle), ଛଞ୍ଚାଣ (Hawk) ଓ ଫାଲକନ୍ (Falcon) ଆଦି ଗୋଷ୍ଠୀର । ଏମାନେ ପୃଥିବୀର ଅଧିକାଂଶ ସ୍ଥାନରେ ବ୍ୟାପ୍ତ । ମାତ୍ର ଆଦୌ ଦେଖାଯାଆନ୍ତି ନାହିଁ ଅଷ୍ଟ୍ରେଲିଆରେ ଓ ଅଧିକାଂଶ ମହାସାଗରୀୟ ଦ୍ୱୀପମାନଙ୍କରେ । ଆମ ରାଜ୍ୟ ଓଡ଼ିଶାରେ ଶାଗୁଣା ନାମକୁ ଅନେକ ଉଚ୍ଚାରଣ ନକରି ଗୁଧ୍ର ବୋଲି କହିଥାଆନ୍ତି । ହିନ୍ଦୀରେ ଏହା ଗିଧ୍ ଭାବରେ ପରିଚିତ ।



**ଶାଗୁଣା ସଂଖ୍ୟା ହ୍ରାସର କାରଣ**

ପରିବେଶର ସନ୍ତୁଳନ ରଖିବା ସହ ପଚାସଢ଼ା ଶବ ଖାଇ ପ୍ରକୃତିର ପରିବେଶକୁ ପରିଷ୍କାର ରଖୁଥିବା ପକ୍ଷୀ, ଶାଗୁଣା ଏବେ ବିଲୁପ୍ତ ପ୍ରାୟ । ଭାରତରେ କାହିଁକି ସମଗ୍ର ପୃଥିବୀରେ ଏମାନଙ୍କ ସଂଖ୍ୟା ଏତେ ପରିମାଣରେ କମିଯାଇଛି ତାହା ସତରେ ବଡ଼ ଉଦ୍‌ବେଗଜନକ । ଓଡ଼ିଶାରେ ଏମାନେ ବର୍ତ୍ତମାନ ବେଶୀ ନାହାନ୍ତି କହିଲେ ଚଳେ । ଯାହାବି ଥିଲେ ମହାବାତ୍ୟା ପରେ ପରେ ଆଉ ବୋଧହୁଏ ସମ୍ପୂର୍ଣ୍ଣ ରୂପେ ନାହାନ୍ତି । ଓଡ଼ିଶାର ସମସ୍ତ ଶ୍ମଶାନ ଓ ତା'ର ଆଖପାଖ ଅଞ୍ଚଳ ଶାଗୁଣାଶୂନ୍ୟ । ବିଶ୍ୱର ବହୁ ଅଞ୍ଚଳରୁ ଏହି ପକ୍ଷୀ କ୍ରମଶଃ ଲୋପପାଇ ଆସିଥିବା ଘଟଣା ପରିବେଶବିତ୍ ତଥା ପ୍ରାଣୀବିତ୍‌ମାନଙ୍କୁ ଚିନ୍ତା ଓ ଶଙ୍କାରେ ପକାଇଛି । ଶାଗୁଣା ବାସ୍ତବିକ ଏକମାତ୍ର ପକ୍ଷୀ ଯାହାର କି ଦୁଇ ତିନି ଦଶନ୍ଧି ମଧ୍ୟରେ ମହତ୍ୱପୂର୍ଣ୍ଣ ଭାବରେ ସଂଖ୍ୟା ହ୍ରାସ ଘଟିଛି । ପୃଥିବୀର ଅନ୍ୟ କୌଣସି ପ୍ରାଣୀର ଏପରି ସ୍ୱଳ୍ପ ବା ସୀମିତ ସମୟ ମଧ୍ୟରେ ସଂଖ୍ୟା ହ୍ରାସ ଘଟିବାର ନଜିର ବା ପ୍ରମାଣ ପ୍ରାୟ ନାହିଁ । ଶାଗୁଣା ବଂଶ ଯେଉଁପରି ଭାବେ ବିଲୋପ ଦିଗକୁ ଚାଲିଯାଇଛି, ତାହାର ପୁନରୁଦ୍ଧାର ସେତିକି ସହଜସାଧ୍ୟ ନୁହେଁ । ତାହାର ଏକ ମୁଖ୍ୟ କାରଣ ହେଉଛି ବର୍ଷକୁ ଗୋଟିଏ ମାତ୍ର ଛୁଆର ପ୍ରସବ । ଏପରି ଘଟଣାକୁ ଅନୁଧ୍ୟାନ କରି ବଂଶବୃଦ୍ଧି ଦିଗରେ ଉଦ୍ୟମ ଆଜିଠୁଁ ଅବ୍ୟାହତ ରଖିଲେ ହୁଏତ ଡୋଡ଼ୋପକ୍ଷୀ ପରି ଲୋପ ପାଇଯାଇଥିବା ପକ୍ଷୀଠାରୁ ଏହାକୁ ରକ୍ଷା କରାଯାଇପାରିବ, ତେବେ ଏମାନଙ୍କ ହ୍ରାସର କାରଣ କ'ଣ ?

ଭଲଭାବରେ ଦେଖିଲେ ଅନୁମାନ କରି ହେବ ଯେ ବର୍ତ୍ତମାନ ଧରାବକ୍ଷରୁ ଅଧିକାଂଶ ପ୍ରାଣୀବଂଶର ଅବକ୍ଷୟ ଘଟିଛି । ଏହାର ମୁଖ୍ୟ କାରଣ ଆଜିର ବୁଦ୍ଧିମାନ ମଣିଷ ବା ତା'ର ବିଭିନ୍ନ ଅମାନୁଷିକ କାର୍ଯ୍ୟକଳାପ । ଏ କାର୍ଯ୍ୟକଳାପରେ ମୁଖ୍ୟ ସ୍ଥାନ ଅଧିକାର କରିଛି ମନୁଷ୍ୟକୃତ ଜଙ୍ଗଲ କ୍ଷୟ । ତା'ପରେ ଅନ୍ୟାନ୍ୟ କାରଣଗୁଡ଼ିକ ହେଉଛି ସହରାଞ୍ଚଳ ପ୍ରତିଷ୍ଠା, ଜୀବଜନ୍ତୁ ଶିକାର ଓ ଶିଳ୍ପ କାରଖାନା ଆଦି ତଥା ବନ୍ଧବାଡ଼ ନିର୍ମାଣ । ମୋଟାମୋଟି ପ୍ରାଣୀମାନଙ୍କର ବାସସ୍ଥାନ ଅଭାବ ହିଁ ପ୍ରାଣୀ ସଂଖ୍ୟାକ୍ଷୟର କାରଣ । ତେବେ ଶାଗୁଣା ପରି ଜୀବର ହଠାତ୍ ସଂଖ୍ୟାହ୍ରାସ ନିମିତ୍ତ ନିର୍ଦ୍ଦିଷ୍ଟ କେତେକ କାରଣ ଜଣାଯାଇଛି । ସେଗୁଡ଼ିକ ନିମ୍ନରେ ଦିଆଗଲା ।

**୧. ବାସସ୍ଥାନ ବା ଆବାସସ୍ଥଳୀ ନଷ୍ଟ**

ଭାରତୀୟ ଉପ-ମହାଦେଶର ଧଳାପିଠିଆ ଶାଗୁଣା (White backed vulture) ଏବେ ସଂଯୁକ୍ତ ରାଷ୍ଟ୍ର ସଂଗଠନର ଲୋହିତ ତଥ୍ୟ ପୁସ୍ତକରେ ଅତ୍ୟନ୍ତ ଅବକ୍ଷୟମୁଖୀ ପକ୍ଷୀ ଭାବରେ ସ୍ଥାନିତ । ଏହାର ମୁଖ୍ୟ କାରଣଟି ଆବାସସ୍ଥଳୀ ନଷ୍ଟବୋଲି ଅଧିକ ଉପଯୋଗୀ ମନେ ହୋଇପାରେ । କାରଣ ଶାଗୁଣାମାନଙ୍କର ପ୍ରିୟ ସ୍ଥାନ ହେଉଛି ବେଶ୍ ବଡ଼ ଝଙ୍କାଳିଆ ଦ୍ରୁମ । ମହାବାତ୍ୟାରେ ଓଡ଼ିଶାର ସମ୍ପୂର୍ଣ୍ଣ ଉପକୂଳ ଜଙ୍ଗଲ ନଷ୍ଟ ହୋଇଯିବା ଫଳରେ ଶାଗୁଣା ବଂଶ ଏଠାରୁ ଲୋପ ପାଇବାର କାରଣ ବୋଲି ଅନେକ ପରିବେଶବିତ୍‌ଙ୍କ ମତ ।



**୨. ଶାଗୁଣାକୁ ରୋଗ ଆକ୍ରମଣ**

ପାକିସ୍ଥାନ ଓ ଭାରତର ଅନେକ ପକ୍ଷୀ ଗବେଷକଙ୍କ ମତାନୁଯାୟୀ ଗାଉଟ ନାମକ ରୋଗ ମୁଖ୍ୟତଃ ଶାଗୁଣା ବଂଶ ଲୋପପାଇଁ ଦାୟୀ । ଏ ରୋଗରେ ୟୁରିକ୍ ଅମ୍ଳ ନାମକ ଏକପ୍ରକାର ରାସାୟନିକ ପଦାର୍ଥ ପକ୍ଷୀମାନଙ୍କ ଶରୀରରୁ ନିଷ୍କାସିତ ହୋଇପାରୁ ନଥିବାରୁ ଏ ରୋଗ ସୃଷ୍ଟିର କାରଣ ବୋଲି ଅନୁମାନ କରାଯାଏ । ମୃତ୍ୟୁ ଘଟୁଥିବା ପଶୁପକ୍ଷୀଙ୍କୁ ଆହାର ଭାବରେ ଗ୍ରହଣ କରୁଥିବା ଶାଗୁଣାଙ୍କ ସ୍ଥାନରେ କୁକୁର, ବିଲୁଆ ଏହି ମୃତ ପଶୁପକ୍ଷୀଙ୍କ ପଚାମାଂସ ଖାଇବା ଯୋଗୁଁ ବିଭିନ୍ନ ରୋଗର ଶିକାର ହେଉଛନ୍ତି । କେବଳ ଭାରତରେ ନୁହେଁ, ପଡ଼ୋଶୀ ଦେଶ ପାକିସ୍ଥାନ ଓ ନେପାଳରେ ମଧ୍ୟ ଶାଗୁଣାଙ୍କ ସଂଖ୍ୟା ବହୁ ପରିମାଣରେ ହ୍ରାସ ପାଇଛି ।

ବିଭିନ୍ନ ଗୃହପାଳିତ ପଶୁଙ୍କୁ ଡାଇକ୍ଲୋଫେନାକ୍ ନାମକ ଦିଆଯାଉଥିବା ଔଷଧ ଯୋଗୁଁ ଶାଗୁଣାମାନଙ୍କ ଶରୀରରେ ଏହାର ପ୍ରଭାବ ପଡୁଥିବା ଏବଂ ସେମାନେ ମୃତ୍ୟୁର ଶିକାର ହେଉଥିବା ଜଣାପଡ଼ିଛି । ଏହି ଔଷଧଟି ପଶୁମାନଙ୍କର ଯନ୍ତ୍ରଣା ନିବାରକ ଔଷଧ ଭାବରେ ବ୍ୟବହାର କରାଯାଇଥାଏ । ଯେଉଁ ଗୃହପାଳିତ ପଶୁମାନଙ୍କୁ ଏହି ଔଷଧ ପ୍ରୟୋଗ କରାଯାଇଥାଏ, ସେହି ପଶୁମାନଙ୍କର ମୃତ୍ୟୁପରେ ଶାଗୁଣା ସେମାନଙ୍କର ମାଂସ ଭକ୍ଷଣ କଲେ ତାହା ଶରୀରରେ ଜମା ହୋଇ ଭୟଙ୍କର ରୋଗ ସୃଷ୍ଟି କରେ ବୋଲି ବୈଜ୍ଞାନିକମାନଙ୍କର ମତ । ଏଥିରୁ ଶାଗୁଣା ମୁକ୍ତି ପାଇବା ସମ୍ଭବ ନୁହେଁ । ଶାଗୁଣାଙ୍କ ଚିକିତ୍ସା ମଧ୍ୟ ସମ୍ଭବପର ନୁହେଁ ବୋଲି ଧୀରେ ଧୀରେ ଏମାନଙ୍କ ବଂଶର କ୍ଷୟ ଘଟିଲା । ମହାରାଷ୍ଟ୍ରର ମୁମ୍ବାଇସ୍ଥିତ ପ୍ରାକୃତିକ ଇତିହାସ ସଙ୍ଗଠନ (Bombay Natural History Society or BNHS)ର ମୁଖ୍ୟ ବୈଜ୍ଞାନିକ ଡକ୍ଟର ଭିଭୁ ପ୍ରକାଶଙ୍କ ମତ ଯେ ବୈଜ୍ଞାନିକ ପରୀକ୍ଷଣ ଓ ନିରୀକ୍ଷଣାନୁସାରେ ଶାଗୁଣାକୁ ଶରୀରରେ ବେଶ୍ ପରିମାଣରେ ଡାଇକ୍ଲୋଫେନକ୍ ବୃଦ୍ଧି ଓ ଜମାର କାରଣ ହିଁ ସେମାନଙ୍କ ମୃତ୍ୟୁ । ମୃତ ଶାଗୁଣାମାନଙ୍କର ଟିସୁ ଭାରତ ଓ ଭାରତ ବାହାରେ ପରୀକ୍ଷା କରି ଏପରି ଉପସଂହାର ମିଳିଛି । ତା'ବ୍ୟତୀତ ତାଙ୍କ ମତରେ ମଧ୍ୟ ଏକ ପ୍ରକାର ଭୂତାଣୁଜନିତ ରୋଗ ଶାଗୁଣାଙ୍କ ମୃତ୍ୟୁର ଅନ୍ୟ ଏକ କାରଣ । ତାଙ୍କର ଆଉ ଏକ ମତ ହେଲା ଯେ ବିଷାକ୍ତ ମଦ୍ଦ ତଥା ପୁଷ୍ଟିହୀନତା ହିଁ ତାଙ୍କ ମୃତ୍ୟୁର କାରଣ । ତେବେ ବର୍ତ୍ତମାନ ପରିପ୍ରେକ୍ଷୀରେ ଡାଇକ୍ଲୋଫେନାକ୍ ହିଁ ସର୍ବଶ୍ରେଷ୍ଠ କାରଣ ବୋଲି ଅନେକ ଗବେଷକ ସୂଚନା ଦିଅନ୍ତି । ଏହି ଔଷଧ ଶାଗୁଣାର ରେଚନ କାର୍ଯ୍ୟ ତଥା ଉଦରୀୟ ଗାଉଟ୍ ପାଇଁ ଦାୟୀ । ଫଳରେ ଶାଗୁଣାଗୁଡ଼ିକ ଶାରୀରିକ କଷ୍ଟ ଭୋଗି ଶେଷରେ ମୃତ୍ୟୁ ମୁଖରେ ପଡ଼ିଥାଆନ୍ତି ।

**୩. ପରିବେଶ ପ୍ରଦୂଷଣ** (Environmental Pollution)

ଶାଗୁଣାମାନେ ମାଂସ ଭକ୍ଷଣକାରୀ ପ୍ରାଣୀ ହୋଇଥିବାରୁ ଏମାନଙ୍କ ସଂଖ୍ୟା ସିଧାସଳଖ ପରିବେଶ ଉପରେ ନିର୍ଭରଶୀଳ । ବର୍ତ୍ତମାନ ପରିବେଶରେ ବିଭିନ୍ନ ପ୍ରଦୂଷକ ଯଥା କୀଟନାଶକ, ଅନିଷ୍ଟକୀଟ ନାଶକ, ଭାରୀ ଧାତୁ ଏବଂ ଅନ୍ୟାନ୍ୟ ପ୍ରଦୂଷଣକାରୀ ରାସାୟନିକ ପଦାର୍ଥ ବି ଏମାନଙ୍କ ମୃତ୍ୟୁର କାରଣ ହୋଇପାରେ ।

## ଶାଗୁଣାଙ୍କ ସଂଖ୍ୟା ପାଇଁ ଆଶଙ୍କା ଓ ସଚେତନତା

ପରିବେଶର ଏକ ମୁଖ୍ୟ ଉପକାରୀ ବନ୍ଧୁ ଭାବରେ ଶାଗୁଣା ସଂଖ୍ୟାର ଆଖିଦୃଶିଆ ହ୍ରାସ ସମସ୍ତଙ୍କୁ ଚିନ୍ତିତ କରିଥିଲା । ସେଥିରେ କେବଳ ଯେ ରାଜ୍ୟ ସରକାର, କେନ୍ଦ୍ର ସରକାର, ପ୍ରଧାନମନ୍ତ୍ରୀ ଓ ବିଭିନ୍ନ ଦେଶ ତଥା ଅନେକ ବେସରକାରୀ ସଂଗଠନର ମୁଣ୍ଡବ୍ୟଥାର କାରଣ ହୋଇଥିଲା । ଏବେ ଦେଖିବା ବିଭିନ୍ନ ସ୍ତରରେ କି କି ପ୍ରକାର ସଚେତନତା ପ୍ରକାଶ ପାଇଛି ।

### ୧. ଓଡ଼ିଶା ସରକାରଙ୍କ ପଦକ୍ଷେପ

୨୦୦୪ ମସିହାରେ ଶାଗୁଣାମାନଙ୍କୁ ଠାବ କରିବା ପାଇଁ ତଥା ସେମାନଙ୍କର ବଂଶବୃଦ୍ଧି ନିମନ୍ତେ ଓଡ଼ିଶା ରାଜ୍ୟ ବନ୍ୟପ୍ରାଣୀ ନିର୍ଦ୍ଦେଶାଳୟ ପକ୍ଷରୁ ପ୍ରଥମେ ଉଦ୍ୟମ ଆରମ୍ଭ ହୋଇଥିଲା । ପରିବେଶର ସହାୟକ ବୋଲି କୁହାଯାଉଥିବା ଶାଗୁଣାମାନଙ୍କର ସୁରକ୍ଷା ପାଇଁ ପଦକ୍ଷେପ ସ୍ୱରୂପ କେଉଁ କେଉଁ ସ୍ଥାନରେ ଏହି ପକ୍ଷୀମାନେ ଦେଖାଯାଉଛନ୍ତି, ତାହା ଜାଣିବା ଲାଗି ସାଧାରଣ ଲୋକଙ୍କ ସହଯୋଗ ଲୋଡ଼ା ଯାଇଥିଲା । ଏ ସଂକ୍ରାନ୍ତରେ ଖବରକାଗଜରେ ବିଜ୍ଞାପନ ଦିଆଯିବା ପରେ ଜନସାଧାରଣ ମଧ୍ୟ ଏଥିପ୍ରତି ଆଗ୍ରହ ପ୍ରକାଶ କରିଥିଲେ । ତେଣୁ ରାଜ୍ୟର ବିଭିନ୍ନ ସ୍ଥାନରୁ ଅନେକଗୁଡ଼ିଏ ପତ୍ର ଆସି ପହଞ୍ଚିଥିଲା । ଏଥିରେ ସେମାନଙ୍କ ଅବସ୍ଥିତି ସହିତ ସୁରକ୍ଷା ସମ୍ବନ୍ଧରେ ମତାମତ ମିଳିଥିଲା । ବିଭାଗୀୟ କର୍ତ୍ତୃପକ୍ଷ ପତ୍ରଗୁଡ଼ିକ ପାଇବା ପରେ ସଂପୃକ୍ତ ଅଞ୍ଚଳରେ ଶାଗୁଣାମାନେ ଅଛନ୍ତି କି ନାହିଁ ସେ ସଂକ୍ରାନ୍ତରେ ଅନୁଧ୍ୟାନ କରିବା ପାଇଁ ଉକ୍ତ ଇଲାକାରେ ଥିବା ଡିଏଫ୍‌ଓମାନଙ୍କୁ ଦାୟିତ୍ୱ ଦେଇଥିଲେ । ତଦନୁଯାୟୀ ଡିଏଫ୍‌ଓମାନେ ପତ୍ରପ୍ରେରକଙ୍କ ପ୍ରଦତ୍ତ ସୂଚନାନୁଯାୟୀ ପକ୍ଷୀମାନଙ୍କ ଅନୁଧ୍ୟାନ ଓ ଠାବ କରିବା ସହ ସରକାରଙ୍କୁ ଏ ବାବଦରେ ବିବରଣୀ ପ୍ରଦାନ କରିବା ଲାଗି କୁହାଯାଇଥିଲା । କେତେକ ସ୍ଥାନରେ ପର୍ଯ୍ୟବେକ୍ଷଣ ସହ ଅନୁଧ୍ୟାନ ହୋଇଥିଲା ।

୨୦୦୪ ମସିହାରେ ଶାଗୁଣାମାନଙ୍କୁ ଠାବ କରିବା ପାଇଁ ତଥା ସେମାନଙ୍କର ବଂଶବୃଦ୍ଧି ନିମନ୍ତେ ଓଡ଼ିଶା ରାଜ୍ୟ ବନ୍ୟପ୍ରାଣୀ ନିର୍ଦ୍ଦେଶାଳୟ ପକ୍ଷରୁ ପ୍ରଥମେ ଉଦ୍ୟମ ଆରମ୍ଭ ହୋଇଥିଲା । ପରିବେଶର ସହାୟକ ବୋଲି କୁହାଯାଉଥିବା ଶାଗୁଣାମାନଙ୍କର ସୁରକ୍ଷା ପାଇଁ ପଦକ୍ଷେପ ସ୍ୱରୂପ କେଉଁ କେଉଁ ସ୍ଥାନରେ ଏହି ପକ୍ଷୀମାନେ ଦେଖାଯାଉଛନ୍ତି, ତାହା ଜାଣିବା ଲାଗି ସାଧାରଣ ଲୋକଙ୍କ ସହଯୋଗ ଲୋଡ଼ା ଯାଇଥିଲା ।

ଓଡ଼ିଶାର ଜଟାଧାର ମୁହାଣ ହିଁ ଥିଲା ଶାଗୁଣାମାନଙ୍କର ବଡ଼ ନିବାସ ସ୍ଥଳୀ । ହଜାର ହଜାର ସଂଖ୍ୟାର ଶାଗୁଣା ସେଠାରେ ବସବାସ କରୁଥିଲେ । ମାତ୍ର ଏବେ ସେଠାରେ ଶାଗୁଣା ଶୂନ୍ୟ । ୧୯୯୯ ମସିହା ଅକ୍ଟୋବର ୨୯ ତାରିଖ ମହାବାତ୍ୟା ପରେ ପରେ ସମଗ୍ର ଓଡ଼ିଶାରେ ଶାଗୁଣା ବଂଶ ପ୍ରାୟ ଲୋପ ପାଇଗଲା । ମହାବାତ୍ୟା ପରେ ପରେ ଶହ ଶହ ଶବ ପଚି ସଢ଼ିଗଲା । ଅନେକ ସ୍ୱାସ୍ଥ୍ୟସେବା ଅନୁଷ୍ଠାନ ଶବଦାହ କରାଇଲେ । ମାତ୍ର ସେ ସମୟରେ ଗୋଟିଏ ହେଲେ ଶାଗୁଣା ଦେଖାଯାଉନଥିଲେ । ଏବେ ମଶାଣିରେ ଜୀବମାନଙ୍କ ଶବ ପଚିସଢ଼ି ଦୁର୍ଗନ୍ଧରେ ପରିବେଶ ବିଷାକ୍ତ ହୋଇଉଠୁଛି । ଅବଶ୍ୟ ଓଡ଼ିଶା ସରକାର ୨୦୦୩ ମସିହାରେ ଏକ ପଦକ୍ଷେପ ନେଇ ଚାରିଶହ ଶାଗୁଣା ଶାବକଙ୍କୁ ଆଣି ଓଡ଼ିଶାର ଅନେକ ମଶାଣିରେ ଛାଡ଼ିଥିଲେ । ଦୁଇ ବର୍ଷ ପରେ ସେମାନଙ୍କ ସତ୍ତା ନାହିଁ ।

ମହାବାତ୍ୟା ପରେ ପରେ ଶହ ଶହ ଶବ ପଚି ସଢ଼ିଗଲା । ଅନେକ ସ୍ୱାସ୍ଥ୍ୟସେବା ଅନୁଷ୍ଠାନ ଶବଦାହ କରାଇଲେ । ମାତ୍ର ସେ ସମୟରେ ଗୋଟିଏ ହେଲେ ଶାଗୁଣା ଦେଖାଯାଉନଥିଲେ । ଏବେ ମଶାଣିରେ ଜୀବମାନଙ୍କ ଶବ ପଚିସଢ଼ି ଦୁର୍ଗନ୍ଧରେ ପରିବେଶ ବିଷାକ୍ତ ହୋଇଉଠୁଛି ।

ତେବେ ଶାଗୁଣାର କୃତ୍ରିମ ପ୍ରଜନନ ପାଇଁ ଓଡ଼ିଶାରେ ଏକ କେନ୍ଦ୍ର ଖୋଲିବା ସକାଶେ କେନ୍ଦ୍ରୀୟ ଚିଡ଼ିଆଖାନା କର୍ତ୍ତୃପକ୍ଷ ଆଗ୍ରହ ପ୍ରକାଶ କରିଛନ୍ତି ।

### ୨. ବିଭିନ୍ନ ଦେଶର ସଚେତନତା

ସୁଖର କଥା ଯେ ଶାଗୁଣାମାନଙ୍କ ବଂଶରକ୍ଷା ନିମନ୍ତେ ଅନେକ ରାଷ୍ଟ୍ର ବେଶ୍ ଆଗଭର ହୋଇ ଉଠିଛନ୍ତି । ଅନେକ ରାଷ୍ଟ୍ର ମଧ୍ୟ ଉଦ୍ୟମ ଆରମ୍ଭ କରି ସାରିଲେଣି । ଋଷିଆର ଏକ ସ୍ୱାସ୍ଥ୍ୟସେବୀ ଅନୁଷ୍ଠାନ ଏମାନଙ୍କର ବଂଶବୃଦ୍ଧି ପାଇଁ ଏକ ଶାଗୁଣା ପ୍ରଜନନ କେନ୍ଦ୍ର ପ୍ରତିଷ୍ଠା ଦିଗରେ ଆଗେଇ ପ୍ରଜନନ କରାଇବାରେ ଲାଗି ପଡ଼ିଛନ୍ତି । ଆମେରିକୀୟ ବିମାନବାହିନୀ ଦାବି କରନ୍ତି ଯେ ଶାଗୁଣାର ବିଶାଳକାୟ ଲମ୍ବା ଡ଼େଣାଦ୍ୱାରା ଉଡ଼ାଜାହାଜ ଅନେକ ଅସୁବିଧାର ସମ୍ମୁଖୀନ ହୁଏ ଏବଂ ଅତୀତରେ ଅନେକ ଦୁର୍ଘଟଣା ମଧ୍ୟ ଘଟିଛି ।

ଶାଗୁଣାମାନଙ୍କ ବଂଶ କ୍ରମେ ହ୍ରାସ ପାଉଥିବାରୁ ବାର୍ଡ଼ ଲାଇଫ୍‌ର ନେଟ୍‌ୱାର୍କ ସଦସ୍ୟ ଥିବା ବମ୍ବେ ପ୍ରାକୃତିକ ଇତିହାସ ସଙ୍ଗଠନ, ପକ୍ଷୀ ସଂରକ୍ଷଣ ସଂସ୍ଥା, ନେପାଳ, ପାକିସ୍ଥାନର ପକ୍ଷୀ ସମିତି, ଇଂଲଣ୍ଡର ଆର୍‌ଏସ୍.ପି.ବି. ପକ୍ଷୀ ଜୀବନ ସଂସ୍ଥା ଆଦି ଗଭୀର ଉଦ୍‌ବେଗ ପ୍ରକାଶ କରିଛନ୍ତି । କାଠମାଣ୍ଡୁ ସମ୍ମିଳନୀରେ ଶାଗୁଣାମାନଙ୍କ ବଂଶ ଲୋପ ଉପରେ ଏକ ସନ୍ଦର୍ଭ ଆଲୋଚନା କରାଯାଇଥିଲା । ଏଥିରେ ଉଲ୍ଲେଖ କରାଯାଇଥିଲା ଯେ ପ୍ରତ୍ୟେକ ବର୍ଷ ୩୦ ଭାଗ ଶାଗୁଣା ପୃଥିବୀର ପକ୍ଷୀ ଜଗତରୁ ହ୍ରାସ ପାଉଛନ୍ତି । ଏହା ଦ୍ୱାରା ବିଶ୍ୱ ପରିବେଶବିଦ୍‌ଗଣ ଚିନ୍ତିତ ହୋଇ ଆମେରିକାରେ ଏକାଠି ହୋଇ ଶାଗୁଣା ସଂକଟ ଉପରେ ଏକ ଆଲୋଚନା କରିଥିଲେ । ସେହି ଆଲୋଚନାର ବିଷୟବସ୍ତୁ ଏକ ପୁସ୍ତିକା ଆକାରରେ ପ୍ରକାଶ କରି ମିଳିତ ଜାତିସଂଘକୁ ପ୍ରଦାନ କରାଯାଇଥିଲା ।

୨୦୦୪ ମସିହା ମେ ମାସ ୨୦ ତାରିଖରେ ହଙ୍ଗେରୀଠାରେ ଆୟୋଜିତ ହୋଇଥିବା ଏକ ବୈଠକରେ ୱାସିଙ୍ଗଟନ୍ ଷ୍ଟେଟ୍ ୟୁନିଭରସିଟିର ବୈଜ୍ଞାନିକ ଲିଣ୍ଡସ ଓକ୍‌ସ ଏକ ତଥ୍ୟ ଉପସ୍ଥାପନ କରି

ଶାଗୁଣାମାନଙ୍କର ସଙ୍କଟାପନ୍ନ ପରିସ୍ଥିତି ଓ ପରିଣାମ ଦିଗରେ ଗଭୀର ଉଦ୍‌ବେଗ କରିଥିଲେ ।

୨୦୦୪ ମସିହା ନଭେମ୍ବର ମାସରେ ବ୍ୟାଙ୍କକ୍‌ଠାରେ ଅନୁଷ୍ଠିତ ତୃତୀୟ ଅଧିବେଶନରେ ଦକ୍ଷିଣ ଏସିଆର ଶାଗୁଣା ସମ୍ବନ୍ଧରେ ଆଲୋଚନା କରାଯାଇଥିଲା । ଏ ଆଲୋଚନାଚକ୍ରରେ ଆନ୍ତର୍ଜାତିକ ପ୍ରକୃତି ଓ ପ୍ରାକୃତିକ ସମ୍ବଳ ସଂରକ୍ଷଣ ସଙ୍ଗଠନର ସର୍ବସମ୍ମତି ପ୍ରସ୍ତାବ ଏ ଦିଗରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଏ ସମ୍ମିଳନୀର ନିର୍ଯ୍ୟାସ ଥିଲା ଯେ ତିନି ପ୍ରକାର ଦକ୍ଷିଣ ଏସୀୟ ଶାଗୁଣାଙ୍କ ସଂଖ୍ୟା ଆଶାତୀତ ଭାବରେ ହ୍ରାସ ପାଇଛି । ଅର୍ଥାତ୍ ଦକ୍ଷିଣ ଏସିଆରେ ଗତ ଦଶନ୍ଧି ମଧ୍ୟରେ ଶତକଡ଼ା ୯୭ ଭାଗ ଏ ଶାଗୁଣାଙ୍କ ସଂଖ୍ୟାର ହ୍ରାସ । ଆଉ ଏ ତିନି ପ୍ରକାର ଶାଗୁଣା ହେଉଛନ୍ତି ସମ୍ପୂର୍ଣ୍ଣ ଭାବରେ ଦକ୍ଷିଣ ପୂର୍ବ ଏସିଆ ଅଞ୍ଚଳର । ଏମାନେ ହେଲେ ଲମ୍ବାଚଞ୍ଚୁ ଶାଗୁଣା, ସରୁ ଚଞ୍ଚୁ ଶାଗୁଣା ଓ ଧଳା ପିଠିଆ ଶାଗୁଣା । ଏମାନଙ୍କ ସଂଖ୍ୟାକୁ ନେଇ ମଧ୍ୟ ପ୍ରକାଶ ପାଇଥିଲା ଯେ ସମଗ୍ର ଭାରତୀୟ ଉପମହାଦେଶରେ ଏମାନଙ୍କ ହ୍ରାସର ପରିମାଣ ଶତକଡ଼ା ୯୫ରୁ ଅଧିକ ।

ପ୍ରଫେସର
ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀ ବିହାର, ଭୁବନେଶ୍ୱର-୪

# ଅପ୍ରେଲ ମାସରୁ ରାଜ୍ୟର ସମସ୍ତ ରେଜିଷ୍ଟ୍ରେସନ କାର୍ଯ୍ୟାଳୟକୁ କମ୍ପ୍ୟୁଟରୀକରଣ କରାଯିବ

ରାଜ୍ୟରେ କାର୍ଯ୍ୟ କରୁଥିବା ସମସ୍ତ ରେଜିଷ୍ଟ୍ରେସନ କାର୍ଯ୍ୟାଳୟକୁ ପର୍ଯ୍ୟାୟକ୍ରମେ କମ୍ପ୍ୟୁଟରୀକରଣ କରାଯିବ ବୋଲି ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହାକୁ ପବ୍ଲିକ୍-ପ୍ରାଇଭେଟ୍ ପାର୍ଟନରସିପ୍ (ପି.ପି.ପି.) ଢଙ୍ଗରେ ଏବଂ ବୁଟ୍ ମଡ଼େଲରେ କାର୍ଯ୍ୟକାରୀ କରାଯିବ ବୋଲି ସ୍ଥିର କରାଯାଇଅଛି । ଏଥିପାଇଁ ସରକାର ଓଡ଼ିଶା କମ୍ପ୍ୟୁଟର ଆପ୍ଲିକେସନ ସେଣ୍ଟର (ଓକାକ୍) ଏବଂ ଇନ୍‌ଫ୍ରାଷ୍ଟ୍ରକ୍ଚର ଲିଜିଂ ଏବଂ ଫାଇନାନ୍‌ସିଆଲ ସର୍ଭିସେସ୍ ଲିମିଟେଡ୍ (ଆଇ.ଏଲ୍.ଆଣ୍ଡ ଏଫ୍.ଏସ୍.)କୁ ସାମିଲ କରି ଏକ ଜଏଣ୍ଟ ଭେଞ୍ଚର କମ୍ପାନୀ ଗଠନ କରି କାର୍ଯ୍ୟ ଆରମ୍ଭ କରିଛନ୍ତି । ଏହାର ହାର୍ଡ଼ୱେର ଏବଂ ସଫ୍ଟୱେରର ଖର୍ଚ୍ଚ ବାବଦକୁ ୨୮ କୋଟି ଟଙ୍କା ଏବଂ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ବ୍ୟବସ୍ଥାକୁ ଚାଲୁ ରଖିବା ଏବଂ ରକ୍ଷଣାବେକ୍ଷଣ ବାବଦକୁ ୩୫ କୋଟି ଟଙ୍କାର ଏକ ଖର୍ଚ୍ଚ ଅଟକଳ ପ୍ରସ୍ତୁତ କରାଯାଇଅଛି । ଏହାଛଡ଼ା ବିଗତ ୧୩ ବର୍ଷରୁ ଆଜି ପର୍ଯ୍ୟନ୍ତ ରେଜିଷ୍ଟ୍ରେସନ କାର୍ଯ୍ୟାଳୟଗୁଡ଼ିକର ଡାଟା ସବୁର ଡିଜିଟାଇଜେସନ ଏବଂ ସ୍କାନିଂ ବାବଦକୁ ୮ କୋଟି ଟଙ୍କା ଖର୍ଚ୍ଚ କରାଯିବ । ଏହି କମ୍ପ୍ୟୁଟରୀକରଣ କାର୍ଯ୍ୟ ସମାପ୍ତ ହେଲେ ଲୋକମାନେ ସେମାନଙ୍କ ଦୈନନ୍ଦିନ କାର୍ଯ୍ୟ ଯଥା ରେଜିଷ୍ଟ୍ରେସନ ଡିଡ୍, ଇ.ସି., ସାର୍ଟିଫିକେଟ୍ କପି ଆଦି କାର୍ଯ୍ୟ କମ୍ ଖର୍ଚ୍ଚରେ ଏବଂ ଯଥେଷ୍ଟ କମ୍ ସମୟ ମଧ୍ୟରେ କରାଇ ପାରିବେ ।

ଆସନ୍ତା ଅପ୍ରେଲ ଏକ ତାରିଖରେ ଆରମ୍ଭ ହେବାକୁ ଥିବା ଏହି କାର୍ଯ୍ୟ ଦୁଇଟି ପର୍ଯ୍ୟାୟରେ କାର୍ଯ୍ୟକାରୀ କରାଯିବ । ପ୍ରଥମ ଦଫାରେ ଆଇ.ଜି.ଆର୍. ଏବଂ ସମସ୍ତ ୩୦ ଗୋଟି ଜିଲ୍ଲାକୁ ସାମିଲ୍ କରାଯିବାକୁ ଯୋଜନା ରଖାଯାଇଥିବା ବେଳେ ଦ୍ୱିତୀୟ ପର୍ଯ୍ୟାୟରେ ରାଜ୍ୟର ଅବଶିଷ୍ଟ ୧୪୬ଟି ରେଜିଷ୍ଟ୍ରେସନ କାର୍ଯ୍ୟାଳୟକୁ ଏଥିରେ ଅନ୍ତର୍ଭୁକ୍ତ କରାଯିବ । ଅନ୍‌ଲାଇନ ମାଧ୍ୟମରେ ପଂଜୀକରଣ କାର୍ଯ୍ୟକୁ ସହଜ କରିବା ପାଇଁ ଏହି ବ୍ୟବସ୍ଥାକୁ ସମସ୍ତ ତହସିଲ୍, ରାଜ୍ୟ ଭୂଲେଖ ଏବଂ ମ୍ୟୁନିସିପାଲିଟିମାନଙ୍କସହ ସଂଯୋଗ କରାଯିବାର ବ୍ୟବସ୍ଥା ରହିବ । ଏ ବାବଦରେ ସମସ୍ତ ଖର୍ଚ୍ଚ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗଦ୍ୱାରା ବହନ କରାଯିବ ବୋଲି ଜଣାଯାଇଛି ।

# ସେଦିନର ବ୍ୟବସ୍ଥାପକ ଓ ମନ୍ତ୍ରୀ ମଧୁସୂଦନ ଦାସ

ଡକ୍ଟର ଉଦ୍ଧବ ଚରଣ ନାୟକ

୧୮୮୦ ମସିହାରେ ମଧୁବାବୁ କଲିକତା ଛାଡ଼ି କଟକ ଆସିଲେ ଓକିଲାତି କରିବା ପାଇଁ । ସେହି ସମୟରେ କଟକ ବାର୍‌ରେ ବଙ୍ଗାଳୀ ଓକିଲମାନଙ୍କର ପ୍ରାଦୁର୍ଭାବ ଥିଲା ବହୁତ ବେଶୀ । ଫଳରେ ମଧୁବାବୁଙ୍କୁ କଟକ ବାରରେ ବସିବା ପାଇଁ ଟିକିଏ ଜାଗା ମିଳିଲା ନାହିଁ । ତତ୍କାଳୀନ ମାନ୍ୟବର ବିଚାରପତି କକ୍‌ଲାନ ସାହେବଙ୍କ ଦୟାରୁ ଗୋଟିଏ ଛୋଟ କୋଠରୀ ମିଳିଲା ମଧୁବାବୁଙ୍କୁ । ସେ କଲିକତା ହାଇକୋର୍ଟର ପଞ୍ଜିକୃତ ଓକିଲ ଭାବରେ ଓକିଲାତି ଆରମ୍ଭ କଲେ । ମଧୁବାବୁ ୧୮୮୭-୧୮୯୦ ଯାଏଁ ରେଭେନ୍ସା ମହାବିଦ୍ୟାଳୟରେ ଆଇନ ପ୍ରଫେସର ଭାବରେ କାର୍ଯ୍ୟ କଲେ । ପୁରୀର ଗୋଟିଏ ଛୋଟ ମୋକଦ୍ଦମାରୁ ତାଙ୍କ ନାଁ ଓକିଲ ଭାବରେ ବିଖ୍ୟାତ ହୋଇଗଲା । ପୁରୀର ମାନ୍ୟବର ସବ୍‌ଜଜ୍‌ଙ୍କ ଅଦାଲତରେ ସେ ଏହି କେସ୍‌ଟି ଲଢ଼ି ଜିଣିଲେ । ମୋକଦ୍ଦମାଟି ଥିଲା - ଜଣେ ସାଧାରଣ ଲୋକ ଓ ଧନପତି ମଠ ମହନ୍ତଙ୍କ ମଧ୍ୟରେ । ଟଙ୍କା ଦେଇ ମହନ୍ତ ସବୁ ଓକିଲଙ୍କୁ କିଣି ନେଲେ, ହେଲେ ମଧୁବାବୁଙ୍କୁ କିଣି ପାରିଲେ ନାହିଁ । ମଧୁବାବୁ ସାଧାରଣ ଲୋକଟିର ଓକିଲ ହେଲେ ଏବଂ ସେହି ମୋକଦ୍ଦମାରେ ବିଜୟୀ ହେଲେ ।



ଏହାବ୍ୟତୀତ ମଧୁବାବୁ ଅନେକ ବଡ଼ ମୋକଦ୍ଦମା ଲଢ଼ି ବିଜୟୀ ହେଲେ । ସେଗୁଡ଼ିକ ହେଲା, ଜଗନ୍ନାଥ ମନ୍ଦିର କେସ୍ ୧୮୮୫-୧୮୮୮, ମାନସିଂହ ପାଟଣା ଡକାୟତି ମାମଲା ୧୯୦୨, ଖଣ୍ଡପଡ଼ା ରାଜାଙ୍କ କେସ୍, କେନ୍ଦୁଝର ରାଜାଙ୍କ କେସ୍, ପଟିଆ ରାଜାଙ୍କର ପୋଷ୍ୟପୁତ୍ର ଗ୍ରହଣ କେସ୍ ଓ ପୁରୀର ଗଜପତି ରାମଚନ୍ଦ୍ର ଦେବଙ୍କ ପୋଷ୍ୟପୁତ୍ର ଗ୍ରହଣ କେସ୍ ଇତ୍ୟାଦି । ୧୮୮୭ରେ କଲିକତା ହାଇକୋର୍ଟର ପ୍ଲିଡ଼ର, ୧୯୧୬ରେ ପାଟଣା ହାଇକୋର୍ଟର ପ୍ଲିଡ଼ର ଏବଂ ମନ୍ତ୍ରିତ୍ୱ ତ୍ୟାଗ ପରେ ୧୯୨୫ରେ ପାଟନା ହାଇକୋର୍ଟର ଓକିଲ ଭାବରେ କାର୍ଯ୍ୟ କରି ମଧୁବାବୁ ବେଶ୍ ଖ୍ୟାତି ଅର୍ଜନ କଲେ ।

୧୮୯୧ ମସିହାରେ ମଧୁବାବୁ କଟକ ଜିଲ୍ଲାବୋର୍ଡ଼ର ଉପାଧ୍ୟକ୍ଷ ଭାବରେ ନିର୍ବାଚିତ ହୋଇ ଦକ୍ଷତାରସହ କାର୍ଯ୍ୟ ନିର୍ବାହ କଲେ । ଫଳରେ ତାଙ୍କ ଦକ୍ଷତାରେ ମୁଗ୍ଧ ହୋଇ ତତ୍କାଳୀନ ଓଡ଼ିଶା କମିଶନର ମିଃ ଜି. ଷ୍ଟିଭେନସନ୍ ଜିଲ୍ଲାବୋର୍ଡ଼ର ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରିବା ପାଇଁ କ୍ଷମତା ପ୍ରଦାନ କଲେ । ମଧୁବାବୁ କଟକ ଜିଲ୍ଲାବୋର୍ଡ଼ର ଅଧ୍ୟକ୍ଷ ଭାବରେ ୧୮୯୧-୧୮୯୬ ଯାଏଁ କାର୍ଯ୍ୟ ନିର୍ବାହ କଲେ । ସେତେବେଳେ ବଙ୍ଗ-ବିହାର-ଓଡ଼ିଶା ମିଶି କରିଥାଏ ଗୋଟିଏ ପ୍ରଦେଶ । ୧୮୯୬ରେ ବଙ୍ଗ ସରକାର ପ୍ରସ୍ତାବ କଲେ କି, ବର୍ଦ୍ଧମାନ ଓ ଓଡ଼ିଶାକୁ ମିଶାଇ ଗୋଟିଏ ଆସନ ବ୍ୟବସ୍ଥାପକ ସଭାରେ ରହିବ । ମଧୁବାବୁ ଏହାର ଘୋର ବିରୋଧ କଲେ । ଫଳରେ ସରକାର ଏହି ପ୍ରସ୍ତାବ ବାତିଲ କରିବା ପାଇଁ ବାଧ୍ୟ ହେଲେ । ଏହାବ୍ୟତୀତ ମଧୁବାବୁ ଥିଲେ ଜଣେ ଦକ୍ଷ ବିଧାୟକ ଓ ସଚ୍ଚୋଟ ମନ୍ତ୍ରୀ । ମଧୁବାବୁ ବଙ୍ଗ ବ୍ୟବସ୍ଥାପକ ସଭାରେ ସଭ୍ୟ ଭାବରେ ୧୮୯୬, ୧୮୯୭, ୧୯୦୦, ୧୯୦୧-୧୯୦୨ ଓ ୧୯୦୮-୧୯୧୧ ପ୍ରତିନିଧିତ୍ୱ କରି ଦକ୍ଷତା ପ୍ରଦର୍ଶନ କଲେ ।

ମଧୁବାବୁ ଥିଲେ ଜଣେ ବିଚକ୍ଷଣ ବ୍ୟବସ୍ଥାପକ । ଓଡ଼ିଶାର ଦାବି ଓ ଓଡ଼ିଆ ଜାତିର ସ୍ୱାର୍ଥରକ୍ଷା ପାଇଁ ସେ ବରାବର ବଙ୍ଗ ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ ଆଗତକରି ସଫଳତା ହାସଲ କରିବାରେ ଲାଗିଲେ । ସେହି ସମୟରେ ଓଡ଼ିଶା ପ୍ରତ୍ୟେକ କ୍ଷେତ୍ରରେ ଥିଲା ଅବହେଳିତ । ସରକାରୀ ଚାକିରି କ୍ଷେତ୍ରରେ ବଙ୍ଗାଳୀମାନଙ୍କୁ ବିଶେଷ ଅଗ୍ରାଧିକାର ପ୍ରଦାନ କରାଯାଉଥିଲା । ମଧୁବାବୁ ଦାବି କଲେ ଯେ, 'ରେଭେନ୍ସା କଲେଜରୁ ବି.ଏଲ୍. ପାସ୍ କରୁଥିବା ପିଲାଙ୍କୁ ଓଡ଼ିଶାରେ ମୁନ୍‌ସଫ ଭାବରେ ନିଯୁକ୍ତି ପ୍ରଦାନ କରାଯାଉ ।' ତାଙ୍କର ଏହି ଦାବିକୁ ସରକାର ମାନି ନେଲେ । ବଙ୍ଗଳାର ଶିବପୁର ଅପେକ୍ଷା ଓଡ଼ିଶାରେ କୃଷି ମହାବିଦ୍ୟାଳୟ ପ୍ରତିଷ୍ଠା ହେବା ଉଚିତ ବୋଲି ସେ ବଳିଷ୍ଠ ଯୁକ୍ତି ଉପସ୍ଥାପିତ କଲେ । ଓଡ଼ିଆମାନଙ୍କୁ ସବ୍‌ଡେପୁଟୀ ଚାକିରି ଦେବାରେ ସେତେବେଳେ ଥିଲା ପକ୍ଷପାତ ନୀତି । ଏ ସଂପର୍କରେ ମଧୁବାବୁ ଦୃଢ଼ ଭାବରେ ବ୍ୟବସ୍ଥାପକ ସଭାରେ ଆଲୋଚନା କଲେ । ରେଭେନ୍ସା କଲେଜରେ ଇତିହାସ ବିଭାଗ ଖୋଲିବା ପାଇଁ ଓଡ଼ିଶାରେ ପ୍ରଚଳିତ ଶିକ୍ଷାନୀତିରେ ସଂଶୋଧନ ଆଣିବା ପାଇଁ ସେ ମଧ୍ୟ ଦାବି ଉପସ୍ଥାପନ

କଲେ । ଓଡ଼ିଶାର ସ୍ୱାର୍ଥରକ୍ଷା ଥିଲା ତାଙ୍କ ବ୍ୟବସ୍ଥାପକ ଜୀବନର ମୂଳଲକ୍ଷ୍ୟ ।

୧୯୧୨ ମସିହାରେ ବିହାର-ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା । ମଧୁବାବୁ ହେଲେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ । ସେ ୧୯୧୩-୧୯୨୩ ଯାଏ ଏହି ବ୍ୟବସ୍ଥାପକ ସଭାର ସଭ୍ୟ ହୋଇଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ ଓ ଜାତୀୟବାଦୀ ବ୍ରଜସୁନ୍ଦର ଦାସ ଆଦି ମଧ ଥିଲେ ସେତେବେଳେ ବ୍ୟବସ୍ଥାପକ ସଭାର ସଦସ୍ୟ । ମଧୁବାବୁ ସରକାରୀ କଳ ଓ କାର୍ଯ୍ୟକ୍ରମର ତୀବ୍ର ସମାଲୋଚନା କରୁଥିଲେ । କଟକରେ ଇଞ୍ଜିନିଅରିଂ ସ୍କୁଲ ଖୋଲିବା ପାଇଁ ସେ ଦାବି ଉଠାଇ ଥିଲେ । ବ୍ୟବସ୍ଥାପକ ସଭାରେ ତାଙ୍କର ପ୍ରତ୍ୟେକଟି ବକ୍ତୃତା ଥିଲା ଆବେଗପୂର୍ଣ୍ଣ । ସେଥିରେ ବାସ୍ତବତା ପରିଲକ୍ଷିତ ହେଉଥିଲା । ସେ ତୀବ୍ର ସମାଲୋଚନା ମାଧମରେ ସରକାରଙ୍କୁ ମନାଇ ନିଜମତକୁ ସହଜରେ ସାବ୍ୟସ୍ତ କରିପାରୁଥିଲେ । ତାଙ୍କ ଭାଷଣରେ ମାଦକତା ଓ ଆକର୍ଷଣ ପୂରି ରହିଥିଲା । ଫଳରେ ତାଙ୍କୁ 'ସାପୁଆ କେଳା' ବୋଲି କୁହାଯାଇଥିଲା । ନିଜର ବାଗ୍ମୀତା, ଦକ୍ଷତା ଓ ପାରଦର୍ଶିତା ପାଇଁ ସେ ୧୯୧୩ ମସିହାରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭା ତରଫରୁ ଇମ୍ପେରିଆଲ ଲେଜିସ୍ଲେଟିଭ କାଉନ୍ସିଲକୁ ସଭ୍ୟ ମନୋନୀତ ହୋଇ ଯାଇଥିଲେ ।

ମଧୁସୂଦନ ଦାସ ବିହାର-ଓଡ଼ିଶା ସରକାରଙ୍କର ପ୍ରଥମ ସ୍ୱାୟତ୍ତ ଶାସନ ମନ୍ତ୍ରୀ ଭାବରେ ୧୯୨୧ ମସିହାରେ ଦାୟିତ୍ୱ ଗ୍ରହଣ କଲେ । ୧୯୨୧-୧୯୨୩ ମସିହା ଯାଏଁ ସେ ଏହି ବିଭାଗର ମନ୍ତ୍ରୀ ଥିଲେ । ବିହାର-ଓଡ଼ିଶାର ପ୍ରଥମ ଛୋଟଲାଟ ଥିଲେ ଲର୍ଡ଼ ସିହ୍ନା । ସେ ଇଚ୍ଛା କରିଥିଲେ, ମିଃ ମଧୁସୂଦନ ଦାସ ମନ୍ତ୍ରୀ ହୁଅନ୍ତୁ । ତାଙ୍କପରି ବନ୍ଧୁ, ପରାମର୍ଶଦାତା ଓ ତତ୍ତ୍ୱାବଧାରକ ଜଣେ ମନ୍ତ୍ରୀ ହୋଇ ରହିଲେ ଛୋଟଲାଟ ଭାବରେ ଲର୍ଡ଼ ସିହ୍ନା ଗୋଟିଏ ପ୍ରଦେଶର ଶାସନ ଦାୟିତ୍ୱ ସୂଚାରୁ ରୂପରେ ତୁଲାଇ ପାରିବେ । ଏଣୁ ଲର୍ଡ଼ ସିହ୍ନାଙ୍କ ସୁପାରିଶରେ ମିଃ ମଧୁସୂଦନ ଦାସ ମନ୍ତ୍ରୀତ୍ୱ ଲାଭ କରିଥିଲେ । ମିଃ. ଦାସ ଥିଲେ ଲର୍ଡ଼ ସିହ୍ନା ଓ ଶ୍ରୀମତୀ ସିହ୍ନାଙ୍କର ଜଣେ ବ୍ୟକ୍ତିଗତ ପରମ ହିତୈଷୀ ବନ୍ଧୁ । ମିଃ ମଧୁସୂଦନ ଦାସଙ୍କ ମନ୍ତ୍ରିତ୍ୱ କାଳରେ ବହୁ ସ୍ମରଣୀୟ ଘଟଣା ଘଟିଯାଇଥିଲା, ଯାହାକି ଆଜିର ଅମଲା ଓ ମନ୍ତ୍ରୀମାନଙ୍କ ପାଇଁ ପ୍ରଣିଧାନଯୋଗ୍ୟ । ମଧୁବାବୁ ମନ୍ତ୍ରୀ ଭାବରେ ପାଟନା ସହରରେ ଯାଇ ପହଞ୍ଚିଲେ । ଦେଖିଲେ ମନ୍ତ୍ରୀମାନଙ୍କ ରହିବା ପାଇଁ ଘର ନାହିଁ । ସେ ଗୋଟିଏ ଭଡ଼ାଘର ନେଇ ରହିଲେ । ସ୍ୱାୟତ୍ତ ଶାସନ ବିଭାଗ ସହ ସ୍ୱାସ୍ଥ୍ୟ ଓ ପୂର୍ତ୍ତ ବିଭାଗ ସଂଲଗ୍ନ ହୋଇଥିଲା । ମଧୁବାବୁ ଥିଲେ ଏହି ସବୁ ବିଭାଗ ଦାୟିତ୍ୱରେ ।

ଦିନେ ମୁଖ୍ୟଯନ୍ତ୍ରୀ ଓ ଅଧୀକ୍ଷଣ ଯନ୍ତ୍ରୀ ତାଙ୍କ ଘରକୁ ଆସି ଝିଅ ଶୈଳବାଳାଙ୍କୁ କହିଲେ, ମନ୍ତ୍ରୀଙ୍କ ବାସଗୃହ ନିର୍ମାଣ ପାଇଁ ପ୍ଲାନ ଏଷ୍ଟିମେଟ ତିଆରି ହୋଇ ରହିଛି । ମନ୍ତ୍ରୀ ତାକୁ ଅନୁମୋଦନ କରିଦେଲେ ଛ'ମାସରେ ଘର ତିଆରି ହୋଇଯିବ । ଏଥିପାଇଁ ଦରକାର ମାତ୍ର ୬୫୦୦୦ ଟଙ୍କା । ଶୈଳବାଳା ବାପାଙ୍କୁ ଏକଥା କହିଲେ । ମଧୁବାବୁ କହିଲେ, 'ଏତେ ଟଙ୍କା ଅନୁମୋଦନ କରିବା ପାଇଁ ମୋ' ବିବେକ କହୁନାହିଁ । ବର୍ତ୍ତମାନ ଲୋକ ବହୁସଂଖ୍ୟାରେ ଝାଡ଼ା, ବାନ୍ତି, ହଇଜା, ପ୍ଲେଗ ଓ ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ମରୁଛନ୍ତି । ସେଥିପାଇଁ ଟଙ୍କା ଦରକାର । ସେପଟକୁ ନଜର ଦେବା ହେଉଛି ମୋର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।' ବିହାରର ଗୟା ଜିଲ୍ଲାରେ ସେତେବେଳକୁ ପ୍ଲେଗ ଜୋରରେ ଲାଗିଥାଏ । ପ୍ଲେଗ ସଂକ୍ରମଣ ଭୟରେ କୌଣସି ଡାକ୍ତର ପ୍ଲେଗ ପୀଡ଼ିତ ଅଞ୍ଚଳକୁ ଯାଉନଥାନ୍ତି । ସମ୍ବାଦପତ୍ରରେ ଏହିସବୁ ଅଭିଯୋଗ ବାହାରୁଥାଏ । ବିଭାଗୀୟ ଆଇ.ସି.ଏସ୍. ସେକ୍ରେଟାରୀ ହାଲେଟ୍ ସାହେବ ଅସହାୟତାର ଯୁକ୍ତି ଦେଖାଇ ଆନନ୍ଦରେ ବସି ଥାଆନ୍ତି । ସେହି ସମୟରେ ମନ୍ତ୍ରୀ ମିଃ ମଧୁସୂଦନ ଦାସ ପ୍ଲେଗ ସଂକ୍ରମଣ ରିପୋର୍ଟ ବସି ଅନୁଧ୍ୟାନ କରୁଥାଆନ୍ତି । ତାଙ୍କ ଟେବୁଲ ଉପରେ ପଡ଼ିଛି ପ୍ଲେଗ ସମ୍ବନ୍ଧୀୟ ଡାକ୍ତରୀ ପୁସ୍ତକ ।

ଶୈଳବାଳା ବେଶୀ ବ୍ୟସ୍ତ କରିବାରୁ ମଧୁବାବୁ ଚିତ୍କାର କରି କହିଲେ, 'ବିହାର ବର୍ତ୍ତମାନ ପ୍ଲେଗ ଓ କାଳାଜ୍ୱରରେ ଆକ୍ରାନ୍ତ । ରୋଗୀମାନଙ୍କ ଚିକିତ୍ସା ପାଇଁ ପଇସା ନାହିଁ । ମୁଁ ସ୍ୱାସ୍ଥ୍ୟ ବିଭାଗର ମନ୍ତ୍ରୀ ହୋଇ ଏହି ସମୟରେ ନିଜେ ରହିବା ଘର ତିଆରି ପାଇଁ ଖର୍ଚ୍ଚ କରିବି ଟ.୬୫୦୦୦ଙ୍କା ! ପାଟନାରେ ତୁମକୁ ଯଦି ଏହି ଘର ଭଲ ନ ଲାଗୁଛି, ତେବେ ତୁମେ ଆଜି ସନ୍ଧ୍ୟା ଟ୍ରେନରେ କଟକ ଫେରିଯାଅ... ଗେଟ୍ ଆଉଟ୍' - ଶୈଳବାଳା ସେଠାରୁ ଚାଲି ଆସିଲେ । ଦିନକ ପରେ ମଧୁବାବୁ ଶୈଳଙ୍କୁ ବୁଝାଇ ଦେଇ କହିଲେ, 'ସରକାରୀ ଘର ତୋଳାହେବ ନୂଆ ରାଜଧାନୀରେ । ଲୋକଙ୍କଠାରୁ ବହୁଦୂରରେ ସେ ଜାଗା । ଜଣେ ଲୋକ ପ୍ରତିନିଧି ଓ ମନ୍ତ୍ରୀ ହିସାବରେ ଲୋକଙ୍କ ଭିତରେ ଲୋକଙ୍କ ପାଖରେ ମୋର ରହିବା ନିହାତି ଦରକାର ।' ମନ୍ତ୍ରୀ ହୋଇ ମଧୁବାବୁ ଗୋଟିଏ ଭଡ଼ା ଘରେ ବହୁ ଅସୁବିଧାରେ ରହୁଥିଲେ ।

ମଧୁବାବୁ ତାଙ୍କର ଚପରାଶୀ ଓ ଜମାଦାରକୁ କଡ଼ା ହୁକୁମ ଦେଇ କହିଥାଆନ୍ତି - 'କୌଣସି ଲୋକ ମୋର ସାକ୍ଷାତ ପାଇଁ ଆସିଲେ, ମୋତେ ସଙ୍ଗେ ସଙ୍ଗେ ଜଣେଇବ । କେହି ଯେପରି ଏଠାରେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା ନକରନ୍ତି ସେଥିପ୍ରତି ନଜର ଦେବ ।' ଦିନକର କଥା- ସେଦିନ ଉପରବେଳା ମନ୍ତ୍ରୀ ଚା' ଖାଇବା ପାଇଁ ବସିଛନ୍ତି । ନିର୍ବାହୀ ଯନ୍ତ୍ରୀ ଏକଥା ମଧୁବାବୁଙ୍କୁ ଜଣାଇଲେ ନାହିଁ । ଓଭରସିଅର ବିଚରା ମନ୍ତ୍ରୀଙ୍କ ଚା'ପାନ ଶେଷ ଯାଏଁ ଅପେକ୍ଷା କରି ରହିଲେ । ମଧୁବାବୁ ଆସି ଦେଖିଲେ ଜଣେ ଭଦ୍ରଲୋକ ବହୁ ସମୟଧରି ଅପେକ୍ଷା କରିଛନ୍ତି । ସେ ରାଗିଯାଇ ଜମାଦାରକୁ କହିଲେ, 'ଭବିଷ୍ୟତରେ ଆଉଥରେ ଏପରି ଅବହେଳା କଲେ ତୁମକୁ ଚାକିରିରୁ ବାହାର କରି ଦେବି ।' ତା'ପରେ ସେ ଓଭରସିଅରଙ୍କୁ ନିଜ କୋଠରି ଭିତରକୁ ନେଇଗଲେ । ଚା' ଦେଲେ । ବନ୍ଧୁତାପୂର୍ଣ୍ଣ ବ୍ୟବହାର ଦେଖାଇଲେ ।

ସେ କ'ଣ ପାଇଁ ଆସିଛନ୍ତି ବୁଝିଲେ । ଓଭରସିଅର ମନ୍ତ୍ରୀଙ୍କର ଏପରି ବ୍ୟବହାରରେ ବହୁତ ଖୁସି ହୋଇଗଲେ । ମନକୁ ମନ କହିଲେ, ଏପରି ବ୍ୟବହାର ସେ କେବେ ହେଲେ ତାଙ୍କ ଉପରିସ୍ଥ ହାକିମଙ୍କଠାରୁ ପାଇ ନାହାନ୍ତି । ମଧୁବାବୁ ଥରେ ସେଇ ଓଭରସିଅରଙ୍କ ଘରକୁ ଯାଇ ତାଙ୍କ ପରିବାର ସହ ମଧ ରାତ୍ରୀ ଭୋଜନ କରିଥିଲେ ।

ମନ୍ତ୍ରୀ ହିସାବରେ ପ୍ରଥମ ଶ୍ରେଣୀରେ ଗସ୍ତ କରିବା ପାଇଁ ତାଙ୍କ ପାଖରେ ଥାଏ ଦୁଇଟି ଟିକେଟର ୱାରେଣ୍ଟ । ସହକର୍ମୀଙ୍କ ପାଇଁ ଅନ୍ୟଶ୍ରେଣୀରେ ଆସନ ସଂରକ୍ଷଣ ପାଇଁ ସୁବିଧା ଥାଏ । ଥରେ ସେ ଗସ୍ତରେ ବାହାରିଲେ । ତାଙ୍କ ସହ ବାହାରିଲେ ଶୈଳବାଳା । ଷ୍ଟେସନରେ ପହଞ୍ଚି ଆଉ ଗୋଟିଏ ପ୍ରଥମ ଶ୍ରେଣୀ ଟିକେଟ କିଣି ଆଣିବା ପାଇଁ ମଧୁବାବୁ ଲୋକ ପଠାଇଲେ । ଶୈଳବାଳା ମଧୁବାବୁଙ୍କୁ ପଚାରିଲେ, 'କାହା ପାଇଁ ଆପଣ ଟିକେଟ ଆଣିବା ପାଇଁ ପଠେଇଲେ ?' 'ଏହା ତୋରି ପାଇଁ ବୋଲି' ମଧୁବାବୁ ଉତ୍ତର ଦେଲେ । ତା'ପରେ ସେ ୱାରେଣ୍ଟ ପଛରେ ଥିବା ନିୟମକୁ ପଢ଼ି ଶୈଳବାଳାଙ୍କୁ ବୁଝାଇ ଦେଲେ, 'ଏହି ୱାରେଣ୍ଟ କେବଳ ମନ୍ତ୍ରୀ ପାଇଁ ତାଙ୍କ ପରିବାରର ଅନ୍ୟ କାହାପାଇଁ ନୁହେଁ ।' ଶୈଳବାଳା ପଚାରିଲେ 'ତେବେ ଅନ୍ୟମନ୍ତ୍ରୀମାନେ କ'ଣ କରନ୍ତି ?' ମଧୁବାବୁ କହିଲେ, 'କିଏ କ'ଣ କରୁଛି ? ମୋର ସେକଥା ଜାଣିବା ଦରକାର ନାହିଁ । ମୁଁ ଜାଣେ ମୋତେ କ'ଣ କରିବାକୁ ହେବ ।' ଏପରି ଅନେକ କଥା ରହିଛି ।

ମନ୍ତ୍ରୀ ହିସାବରେ ମଧୁବାବୁ ପଦପଦବୀର ସୁବିଧା ନେଇ କୌଣସି ବ୍ୟକ୍ତିଗତ ସ୍ୱାର୍ଥ ହାସଲ କରିନଥିଲେ । ମଧୁବାବୁ ଥିଲେ ଜଣେ ଦୃଢ଼ ଶୃଙ୍ଖଳାସମ୍ପନ୍ନ ବ୍ୟକ୍ତି । ନିଜର ଅଧସ୍ତନ କର୍ମଚାରୀଙ୍କପ୍ରତି ସେ ଦୟା ଓ ସ୍ନେହ ପ୍ରଦର୍ଶନ କରୁଥିଲେ । ନିଜର ଷ୍ଟେନୋ, ଚପରାଶି ଓ ଜମାଦାରଙ୍କୁ କେବେ ନିଜର କୌଣସି ବ୍ୟକ୍ତିଗତ କାର୍ଯ୍ୟରେ ଲଗାଇଲେ ପଟେକରୁ ପଇସା କାଢ଼ି କରି ଦେଉଥିଲେ । ମନ୍ତ୍ରୀ ହିସାବରେ ତାଙ୍କ ଅଧୀନରେ ଥିବା ବିଭିନ୍ନ କାର୍ଯ୍ୟାଳୟ, ମୁଖ୍ୟଦପ୍ତର ଓ ବିଭାଗୀୟ ଅଧିକାରୀମାନଙ୍କର କାର୍ଯ୍ୟାବଳୀକୁ ତଦାରଖ କରି କୌଣସି ବ୍ୟତିକ୍ରମ ଦେଖିଲେ କଟୁ ମନ୍ତବ୍ୟ ପ୍ରଦାନ କରୁଥିଲେ । ବହୁ ଗୋରାଲୋକ, ଯେଉଁମାନେ କି ବଡ଼ ବଡ଼ ଅଧିକାରୀ ଭାବରେ ତାଙ୍କ ବିଭାଗ ଅଧୀନରେ କାମ କରୁଥିଲେ ସେମାନେ ମଧୁବାବୁଙ୍କ ପ୍ରତି ମନେ ମନେ ବିରକ୍ତି ଭାବ ପ୍ରକାଶ କରୁଥିଲେ । ବେଳଉଣ୍ଟି ଏହି ଗୋରା କର୍ମଚାରୀମାନେ ମଧୁବାବୁଙ୍କଠାରେ ପ୍ରତିଶୋଧ ନେବାକୁ ପଛାଉନଥିଲେ । ସେଥିପ୍ରତି ମଧୁବାବୁଙ୍କର ଖାତିରି ନଥାଏ ।

ଗୋଟିଏ ଗୋରା କର୍ମଚାରୀ ସବୁବେଳେ ଭାରତୀୟ କର୍ମଚାରୀମାନଙ୍କ ପ୍ରତି ଖରାପ ବ୍ୟବହାର ପ୍ରଦର୍ଶନ କରେ । ଅପମାନିତ କରେ । ଏକଥା ମଧୁବାବୁଙ୍କ କାନରେ ପଡ଼ିଲା । ଦିନେ ସେ ସେହି ଗୋରା କର୍ମଚାରୀଙ୍କୁ ଦିନସାରା ଠିଆ କରାଇ ଫାଇଲ ଦେଖାଇବାକୁ କହିଲେ । ବିଚରା ଗୋରା ଅଫିସର କାନ୍ଦ କାନ୍ଦ ହୋଇଗଲେ । ନିଜର ଭୁଲ୍ ବୁଝିପାରିଲେ ସିନା, ମଧୁବାବୁଙ୍କୁ ଅପମାନିତ କରିବା ପାଇଁ ସୁଯୋଗ ନିମନ୍ତେ ଉଣ୍ଡି ରହିଲେ । ସେଦିନ ପାଟନାର ଗୋଟିଏ ହୋଟେଲରେ ଖୁବ ଧୁମ୍‌ଧାମରେ ମଉଜ ମଜ୍‌ଲିସ୍ ଚାଲିଥାଏ । ମଧୁବାବୁ ଯାଇଥାଆନ୍ତି ସେଇ ହୋଟେଲକୁ ନିମନ୍ତ୍ରିତ ହୋଇ । ଯାହାକୁ ମଧୁବାବୁ ଦିନସାରା ଠିଆ କରାଇ ଦେଇଥିଲେ, ସେହି ଗୋରା ଲୋକ ଜଣକ ମଧୁବାବୁଙ୍କ ପାଖକୁ ମାଡ଼ି ଆସି ବିଦ୍ରୁପ ସ୍ୱରରେ କହିଲେ, 'ମିଃ ଦାସ ! ଆପଣ ଜାଣନ୍ତି, ବ୍ରିଟିଶ ଶାସନରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ ।' ମଧୁବାବୁ ଠୋ ଠୋ କରି ହସି ଦେଇ କହିଲେ, 'ମୁଁ କ'ଣ ଜାଣିବି ମ, ମୋ' ଗାଁରେ ଯେଉଁ ପିଲା ପ୍ରାଥମିକ ବିଦ୍ୟାଳୟରେ ପଢ଼େ ସେ ତ ଏକଥା ଜାଣିଛି ।' ଆଉ ମୋ' କଥା କ'ଣ ପଚାରୁଛନ୍ତି ? ହେଲେ ବନ୍ଧୁ ! ବ୍ରିଟିଶ ସାମ୍ରାଜ୍ୟରେ କାହିଁକି ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ କହିଲ ଦେଖି ? କାରଣ ସୂର୍ଯ୍ୟ ଚାହାନ୍ତି ନାହିଁ ତୁମମାନଙ୍କୁ ଅନ୍ଧାରରେ ଛାଡ଼ି ଦେବା ପାଇଁ । ତୁମମାନଙ୍କ ଉପରେ ସବୁବେଳେ ନଜର ରଖି ଥାଆନ୍ତି । ସଦାବେଳେ କାହା ଉପରେ ନଜର ରଖାଯାଏ ଜାଣ ? ଆପଣ ଠିକ୍ ଠିକ୍ ବୁଝିପାରୁଥିବେ ? ନା, ମୁଁ ଖୋଲିକରି ଆଉ ଟିକିଏ ବୁଝାଇ କରି କହିବି ?' ବାସ୍ ଏତିକିରେ ଗୋରା ଅଫିସର ଜଣକ ଏକା ନିଶ୍ୱାସରେ ତଳ ମୁହାଁ ହୋଇ ମଧୁବାବୁଙ୍କ ପାଖରୁ ଦ୍ରୁତ ବେଗରେ ଚାଲିଗଲେ ।

ମଧୁବାବୁ ଅବୈତନିକ ଭାବରେ ମନ୍ତ୍ରୀପଦରେ ରହିବା ପାଇଁ ଇଚ୍ଛା ପ୍ରକାଶ କଲେ । ସେ ଦରମା ପାଉଥିଲେ ମାସକୁ ପାଞ୍ଚହଜାର ଟଙ୍କା ମନ୍ତ୍ରୀ ହିସାବରେ । ହେଲେ ବ୍ରିଟିଶ ସରକାର ଏଥିରେ ରାଜି ହେଲେ ନାହିଁ । ମଧୁବାବୁ ସ୍ୱାୟତ୍ତ ଶାସନ ବିଭାଗର ମନ୍ତ୍ରିତ୍ୱକୁ ଅବୈତନିକ କରିବା ପାଇଁ ବହୁ ଅକାଟ୍ୟ ଯୁକ୍ତି ୧୯୨୨ ମସିହା ବଜେଟ ଭାଷଣରେ ଉତ୍ଥାପନ କଲେ । ତାଙ୍କର ଏହି ବକ୍ତବ୍ୟ ତାଙ୍କର ସମାଲୋଚକମାନଙ୍କୁ ମଧ ମୁଗ୍ଧ ଓ ସ୍ତବ୍ଧ କରି ଦେଇଥିଲା । ହେଲେ ବ୍ରିଟିଶ ସରକାର ତାଙ୍କ ମତରେ ରାଜି ହେଲେ ନାହିଁ । ଫଳରେ ନୀତିଗତ ଦୃଷ୍ଟିରୁ ମିଃ ମଧୁସୂଦନ ଦାସ ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ନୀତି ଦୃଷ୍ଟିରୁ ମନ୍ତ୍ରିମଣ୍ଡଳରୁ ଇସ୍ତଫା ପ୍ରଦାନ କରିଥିବା ମନ୍ତ୍ରୀ ହିସାବରେ ଭାରତର ସେ ପ୍ରଥମ ଓଡ଼ିଆ ମନ୍ତ୍ରୀ । ବୀର ଖୋର୍ଦ୍ଧା ମାଟିରୁ ତାଙ୍କର ପୂର୍ବ ପୁରୁଷମାନଙ୍କର ଜନ୍ମ । ସେ ୧୯୨୩ ମସିହା ମାର୍ଚ୍ଚ ୮ ତାରିଖରେ ସେ ମନ୍ତ୍ରୀପଦରୁ ଇସ୍ତଫା ପ୍ରଦାନ କଲେ । ନୀତି ଦୃଷ୍ଟିରୁ ଇସ୍ତଫା ପ୍ରଦାନ କରିଥିବା ଦ୍ୱିତୀୟ ଭାରତୀୟ ମନ୍ତ୍ରୀ ହେଲେ ଲାଲ ବାହାଦୁର ଶାସ୍ତ୍ରୀ । ମଧୁବାବୁଙ୍କ ଇସ୍ତଫା ଖବର ପାଇ ସମସ୍ତେ ଚକିତ ହୋଇଗଲେ । ସମସ୍ତେ ଅନୁଭବ କଲେ, ପ୍ରଶାସନ କ୍ଷେତ୍ରରେ ଘଟିଲା ଅପୂରଣୀୟ କ୍ଷତି । ଏମିତି ଥିଲେ ଆମର ଓଡ଼ିଆ ପୁଅ ମଧୁବାବୁ ।

ସାଇ ଦିଗ୍‌ବଳୟ, ଇ-୬୫
ୟୁନିଟ୍-୮, ଭୁବନେଶ୍ୱର-୧୨

# ଓଡ଼ିଶାର ଅଦ୍ୱିତୀୟ ବରପୁତ୍ର ମଧୁବାବୁ

ଗୁରୁକଲ୍ୟାଣ ମହାପାତ୍ର

ଅବିଭକ୍ତ କଟକ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀ ସତ୍ୟଭାମାପୁରରେ ୧୮୪୮ ଅପ୍ରେଲ ୨୮ରେ ଜନ୍ମଗ୍ରହଣ କରିଥିବା ମଧୁସୂଦନ ଦାସ ଆଧୁନିକ ଓଡ଼ିଶାର ଜଣେ ଅଦ୍ୱିତୀୟ ବରପୁତ୍ର ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ଆଜି ଓଡ଼ିଆମାନେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଛନ୍ତି । ସେମାନଙ୍କୁ ଚିହ୍ନଟ କରିବା ପ୍ରକ୍ରିୟା କୌଣସି ସରକାରୀ ବା ବେସରକାରୀ ଅନୁଷ୍ଠାନ ଏଯାଏଁ କରି ପାରିନାହିଁ । କିନ୍ତୁ ଅନେକ କ୍ଷେତ୍ରରେ ପ୍ରଥମ ଓଡ଼ିଆ ହେବାର ଗୌରବ ସେ ଲାଭ କରିଥିଲେ । ପୁଣି ନିଜର ଉଚ୍ଚଶିକ୍ଷା, ସାଧୁତା, ସଚ୍ଚୋଟପଣିଆ, ପରୋପକାରିତା ଗୁଣ ସମେତ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଭାବେ ପ୍ରତିଷ୍ଠା କରିବା ଦିଗରେ ସେ ଯେପରି ଅହରହ ଉଦ୍ୟମ କରି ଆସିଥିଲେ, ଓଡ଼ିଶାର ଇତିହାସରେ ସେଥିପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ ।



୧୮୫୩ ମସିହାରେ ମାଗୁଣୀ ଅବଧାନଙ୍କ ତତ୍ତ୍ୱାବଧାନରେ ପ୍ରଥମେ ଗ୍ରାମ ଚାଟଶାଳୀରେ ବିଦ୍ୟାରମ୍ଭ କରିଥିବା ମଧୁବାବୁ ବାଲ୍ୟଶିକ୍ଷା ସମାପ୍ତ ପରେ କଟକ ଜିଲ୍ଲା ସ୍କୁଲ (ରେଭେନ୍ସା କଲିଜିଏଟ୍ ସ୍କୁଲ)ରେ ପଢ଼ିଥିଲେ ସେସମୟରେ ତାଙ୍କ ପରି ଜଣେ ମଧ୍ୟବିତ୍ତ ପରିବାରର ବ୍ୟକ୍ତି ବ୍ୟୟବହୁଳ କଲିକତା ମହାନଗରରେ ଅଧ୍ୟୟନ କରିବା ହୁଏତ ଦୁରୂହ ବ୍ୟାପାର ଥିଲା । ଟେଲିଫୋନ, ମୋବାଇଲ ଫୋନ, ରେଳଗାଡ଼ି ବା ବ୍ୟୋମଯାନର କୌଣସି ସୁବିଧା ସେ ଯୁଗରେ ନଥିଲା ।

ମଧୁବାବୁ ଯୋବ୍ରାରୁ ଗୋଟିଏ ଡଙ୍ଗାରେ ବସି ସେତେବେଳେ ଚାନ୍ଦବାଲି ପର୍ଯ୍ୟନ୍ତ ଯାଇଥିଲେ ଆଉ ସେଠାରୁ ଗୋଟିଏ ଖ୍ରୀଷ୍ଟିଆନ୍ ପରିବାରର ସହାୟତାରେ ଷ୍ଟିମର୍ ଯୋଗେ ଜଳପଥରେ କଲିକତା ଯାତ୍ରା କରିଥିଲେ, ସେବେଳର କଥା ଭାବି ବସିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । କଲିକତାର ଖ୍ରୀଷ୍ଟିଆନ କଲେଜରେ ଅଧ୍ୟୟନ କରି ୧୮୭୦ରେ କଲିକତାର ଲଣ୍ଡନ ମିସ୍‌ନାରୀ ସୋସାଇଟି କଲେଜରୁ ବି.ଏ. ପାଶ୍ କରି ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ହେବାର ସେ ଗୌରବ ଅର୍ଜନ କରିଥିଲେ । ପରେ ୧୮୭୮ ମସିହାରେ ସେ ବି.ଏଲ୍. ପାଶ୍ କରି ଓଡ଼ିଶାର ପ୍ରଥମ ଡିଗ୍ରୀଧାରୀ ଆଇନଜୀବୀ ହେବାର ମର୍ଯ୍ୟାଦା ମଧ୍ୟ ଲାଭ କରିଥିଲେ । କଲିକତାର 'ଫ୍ରି ଚର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ'ରେ ୧୮୭୧ ମସିହାରେ ଏମ୍.ଏ. ଶ୍ରେଣୀରେ ସେ ନାମ ଲେଖାଇବା ମଧ୍ୟ ଓଡ଼ିଶା ପାଇଁ ବଡ଼ କଥା ଥିଲା । ୧୮୭୩ ମସିହାରେ ସେ ଇଂରାଜୀ ବିଷୟରେ ଏମ୍.ଏ. ପାଶ୍ କରିସାରିଥିଲେ ।

ଉଚ୍ଚଶିକ୍ଷା ପ୍ରାପ୍ତି ପରେ ଓଡ଼ିଶାର ସ୍ୱାଭିମାନକୁ ଓଡ଼ିଶା ବାହାରେ ପ୍ରତିଷ୍ଠା କରିବାକୁ ତଥା ଓଡ଼ିଆମାନଙ୍କୁ ଦରିଦ୍ରାବସ୍ଥାରୁ ଉପରକୁ ଉଠାଇବା ଲାଗି ମଧୁବାବୁ ତାଙ୍କ ଜୀବନରେ ଯେଉଁ ସଂକଳ୍ପ ନେଇଥିଲେ, ଅନେକ ପରିମାଣରେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ତାହା ଅନୁପ୍ରାଣିତ କରିଥିବା ପରି ମନେ ହୁଏ ।

ଓଡ଼ିଶାର କୃଷି କ୍ଷେତ୍ର ଓ ଯାତ୍ରାପଥକୁ ଉନ୍ନତ କରିବାକୁ ସେ ୧୮୮୪ ମସିହାରେ ଓଡ଼ିଶା କେନାଲ୍‌ଗୁଡ଼ିକର ସଂପ୍ରସାରଣ ସହିତ କୃଷିର ଉନ୍ନତି କଥା ଚିନ୍ତା କରି କେତେକ ପଦକ୍ଷେପ ନେଇଥିଲେ । ଏହାର ଦୁଇବର୍ଷ ପୂର୍ବରୁ 'ଉତ୍କଳ ସଭା' ଅନୁଷ୍ଠାନ ୧୮୮୨ ମସିହା ଅଗଷ୍ଟ ୩ ତାରିଖରେ କଟକଠାରେ ମଧୁବାବୁଙ୍କ ଉଦ୍ୟମରେ ଗଠିତ ହୋଇଥିଲା-ଓଡ଼ିଶାର ସ୍ୱାର୍ଥରକ୍ଷା ସକାଶେ ଆନ୍ଦୋଳନ କରିବା ଉଦ୍ଦେଶ୍ୟରେ । ଏହାର ପ୍ରଥମ ବୈଠକ କଟକରେ ତା.୨୧.୦୮.୧୮୮୨ରିଖରେ ଭିଙ୍ଗାରପୁରର ତତ୍କାଳୀନ ଜମିଦାର ଶ୍ରୀ କାଶୀନାଥ ଦାସଙ୍କ ସଭାପତିତ୍ୱରେ

ଉଚ୍ଚଶିକ୍ଷା ପ୍ରାପ୍ତି ପରେ ଓଡ଼ିଶାର ସ୍ୱାଭିମାନକୁ ଓଡ଼ିଶା ବାହାରେ ପ୍ରତିଷ୍ଠା କରିବାକୁ ତଥା ଓଡ଼ିଆମାନଙ୍କୁ ଦରିଦ୍ରାବସ୍ଥାରୁ ଉପରକୁ ଉଠାଇବା ଲାଗି ମଧୁବାବୁ ତାଙ୍କ ଜୀବନରେ ଯେଉଁ ସଂକଳ୍ପ ନେଇଥିଲେ, ଅନେକ ପରିମାଣରେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ତାହା ଅନୁପ୍ରାଣିତ କରିଥିବା ପରି ମନେ ହୁଏ ।

ଅନୁଷ୍ଠିତ ହୋଇଥିଲା । କାଶୀନାଥ ତାହାର ସଭାପତି ଥିବାବେଳେ ମଧୁବାବୁ ଥିଲେ ଉପସଭାପତି ଓ ଗୌରୀଶଙ୍କର ରାୟ ଥିଲେ ସମ୍ପାଦକ ।

୧୮୬୯ରେ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ଏହା ସତ୍ତ୍ୱେ ୧୮୮୬ରେ ପୁରୀର ହିନ୍ଦୁ ଠାକୁର ରାଜା (ଓଡ଼ିଶାରେ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଭାବେ ଖ୍ୟାତ)ଙ୍କ ପୁରୀ ମନ୍ଦିର ପ୍ରଶାସନରେ ଭୂମିକା ପକ୍ଷରେ ଓ ତତ୍କାଳୀନ ବ୍ରିଟିଶ୍ ସରକାରଙ୍କ ବିରୋଧରେ ମଧୁବାବୁ ଆରମ୍ଭ କରିଥିଲେ ପ୍ରତିବାଦ ଓ ଆନ୍ଦୋଳନ । ନିଜେ ସେ ବଙ୍ଗଳା ଭାଷାରେ ଅଧିକାଂଶ ସମୟରେ କଥାବାର୍ତ୍ତା ହେଉଥିଲେ ମଧ ଓଡ଼ିଶାରେ ସେହିବର୍ଷ ଅର୍ଥାତ୍ ୧୮୮୬ରେ ବଙ୍ଗଳା ଭାଷାର ପ୍ରଚଳନକୁ ତୀବ୍ର ବିରୋଧ କରିଥିଲେ । ଅଦ୍ଭୁତ ! ୧୮୮୭ରେ ପୁରୀ ମନ୍ଦିର ପ୍ରଶାସନ ମାମଲାରେ ଗଜପତିଙ୍କ ପକ୍ଷ ନେଇ କଲିକତା ହାଇକୋର୍ଟରେ ସେ ମୋକଦ୍ଦମା ଲଢ଼ିଥିଲେ । ବାରିଷ୍ଟର୍ ଜେ.ଟି. ଉଡ୍‌ରୋଫ୍ ଓ ମିଷ୍ଟର୍ ସାଣ୍ଡେଲ୍ ତାଙ୍କୁ ସେହି ମୋକଦ୍ଦମାରେ ସହାୟତା କରିଥିଲେ । ସେହି ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାରେ ସେ ଜୟଯୁକ୍ତ ହୋଇ ଓଡ଼ିଆ ହିନ୍ଦୁମାନଙ୍କର ସ୍ୱାଭିମାନ ଓ ସମ୍ମାନ ରକ୍ଷା କରିଥିଲେ । ସମଗ୍ର ଦେଶରେ ମଧୁବାବୁଙ୍କ ମର୍ଯ୍ୟାଦା ମଧ ବୃଦ୍ଧି ପାଇଥିଲା । ସେହିବର୍ଷ କଟକ ଜିଲ୍ଲାକୋର୍ଟରେ ପ୍ରଥମ ବେସରକାରୀ ଉପାଧକ୍ଷ ଭାବେ ସେ ନିଯୁକ୍ତି ପାଇଥିଲେ । ଅଧକ୍ଷ ଥିଲେ ଜିଲ୍ଲାପାଳ । କଲିକତା ହାଇକୋର୍ଟରେ ସେହିବର୍ଷ ଆଇନଜୀବୀ ଭାବେ ମଧ ସେ କାର୍ଯ୍ୟାରମ୍ଭ କରିଥିଲେ । ତାଙ୍କରି ଉଦ୍ୟମରେ ୧୮୮୦ ମସିହାରେ ତତ୍କାଳୀନ ମାଡ୍ରାସ ପ୍ରେସିଡ଼େନ୍ସିରେ ଓଡ଼ିଶା ରହି ଓଡ଼ିଆ ଅନ୍ୟତମ ସରକାରୀ ଭାଷା ରୂପେ ପ୍ରଚଳିତ ହୋଇଥିଲା । ପରେ ତାଙ୍କରି ଉଦ୍ୟମରେ ୧୯୦୨ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ଓଡ଼ିଆ ଭାଷା ଓ ସାହିତ୍ୟ ସ୍ଥାନିତ ହୋଇଥିଲା ।

ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରିବା ସହିତ ଓଡ଼ିଶାର କୁଶଳୀ କାରିଗରଙ୍କୁ ଉପାର୍ଜନକ୍ଷମ କରି ଓଡ଼ିଶା ବାହାରେ ଓଡ଼ିଶାର ଶିଳ୍ପ ଓ ବାଣିଜ୍ୟ ପ୍ରତିଷ୍ଠା କରିବାକୁ ମଧୁବାବୁଙ୍କ ଅବଦାନ ଇତିହାସର ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିବ ।

୧୮୮୭ ମସିହାରେ ମଧୁବାବୁ 'ଓଡ଼ିଶା ଆର୍ଟ ୱେର୍ ୱାର୍କସ' ନାମକ ସଂସ୍ଥା ଗଢ଼ି ପ୍ରାୟ ୧୫୦ ଜଣ କୁଶଳୀ କାରିଗରଙ୍କୁ ଗହଣା, ଅଳଙ୍କାର ଓ ସାଜସଜ୍ଜା ପ୍ରଭୃତି ନିର୍ମାଣ କରିବାର ସୁଯୋଗ ଦେଇଥିଲେ । ସୁନା ଓ ରୂପାର କାରୁକାର୍ଯ୍ୟ ସହିତ ସୋଲ, ହାତୀଦାନ୍ତ ଓ ସିଙ୍ଗ ପ୍ରଭୃତିରେ ନିର୍ମିତ ବିଭିନ୍ନ ଘରକରଣା ଦ୍ରବ୍ୟ ପ୍ରସ୍ତୁତି ସେହି କୁଶଳୀ କାରିଗରଙ୍କଦ୍ୱାରା ସମ୍ଭବ ହୋଇଥିଲା । ସେବର ଯେଉଁ ତାରକସୀ କାର୍ଯ୍ୟ ଆଜି ବିଶ୍ୱପ୍ରସିଦ୍ଧ, ତାହା ଥିଲା ମଧୁବାବୁଙ୍କର ସେହି ଅନୁଷ୍ଠାନର ଉଦ୍ୟମ । ସେହିବର୍ଷ ସେ 'ଉତ୍କଳ ଗୌରବ' ଉପାଧିରେ ସମ୍ବର୍ଦ୍ଧିତ ହୋଇଥିଲେ । ମାତ୍ର ତାଙ୍କର ଅବଦାନ ତୁଳନାରେ ତାଙ୍କୁ 'ଭାରତ ଗୌରବ' ଉପାଧି ମିଳିବା ଉଚିତ ହୋଇଥାନ୍ତା ।

୧୯୮୪ ମସିହାରେ 'ଉତ୍କଳ ଆର୍ଟ ୱାର୍କସ' ଓ 'ଉତ୍କଳ ଟ୍ୟାନେରୀ' (ଚମଡ଼ା ଜୋତା କାରଖାନା) ନିର୍ମାଣ ପାଇଁ ମଧୁବାବୁ କେବଳ ପରିକଳ୍ପନା କରିନଥିଲେ, ୧୯୦୪ରେ ପରୀକ୍ଷାମୂଳକ ଭାବେ ସେ ନିଜ ବାସଗୃହ ପରିସରରେ 'ଉତ୍କଳ ଟ୍ୟାନେରୀ' ଆରମ୍ଭ କରିଥିଲେ । ପରେ ସେ କଟକର ଚାଉଳିଆଗଞ୍ଜସ୍ଥିତ ବଗିଚାକୁ 'ଉତ୍କଳ ଟ୍ୟାନେରୀ' ସ୍ଥାନାନ୍ତର କରିଥିଲେ । ପ୍ରଥମାବସ୍ଥାରେ ୩୦୦ କୁଶଳୀ ଶ୍ରମିକ ସେହି ଜୋତା କାରଖାନାରେ ନିଯୁକ୍ତି ପାଇଥିଲେ । ଓଡ଼ିଶାର ପ୍ରଥମ ଶିଳ୍ପ ଭାବେ ଏହାର ଖ୍ୟାତି ବିଦେଶରେ ମଧ ରହିଥିଲା । କୌଣସି ଜୋତା ନିମ୍ନମାନର ହେଲେ ମଧୁବାବୁ ତାକୁ ପୋଡ଼ି ନଷ୍ଟ କରି ଦେବାକୁ କୁଆଡ଼େ ନିର୍ଦ୍ଦେଶ ଦେଉଥିଲେ । ୟୁରୋପ ମହାଦେଶ ସମେତ ଇଂଲଣ୍ଡ ଓ ଜାପାନ ପ୍ରଭୃତି ଦେଶରେ ଓଡ଼ିଶାର ଜୋତା ଖ୍ୟାତି ଲାଭ କରିଥିଲା । ଝିଟିପିଟିର ଚମଡ଼ାରୁ ନିର୍ମିତ ଜୋତା, ବ୍ୟାଗ୍, ସୁଟ୍‌କେସ୍ ପ୍ରଭୃତି ଖୁବ୍ ଆଦୃତ ହୋଇଥିଲା । ମାତ୍ର କେତେକ ଅସାଧୁ କର୍ମଚାରୀ ଓ ଅନ୍ୟମାନଙ୍କ ଚକ୍ରାନ୍ତ ଫଳରେ 'ଉତ୍କଳ ଟ୍ୟାନେରୀ' ବିପୁଳ କ୍ଷତିର ସମ୍ମୁଖୀନ ହୋଇଥିଲା । ଓଡ଼ିଶାର ଦୁର୍ଭାଗ୍ୟ ଯେ ଓଡ଼ିଶାର ଶିକ୍ଷା ଓ ଶିଳ୍ପ କ୍ଷେତ୍ରରେ ପ୍ରଥମ ହୋଇଥିଲା ବ୍ୟକ୍ତି ମଧୁବାବୁ ୧୯୨୭ ମସିହାରେ ଘୋଷଣା କରିଥିଲେ ଯେ ୨ ଲକ୍ଷ ୫୦ ହଜାର ଟଙ୍କା ମୂଲ୍ୟର ଉତ୍କଳ ଟ୍ୟାନେରୀ ମାତ୍ର ୬୫ ହଜାର ଟଙ୍କାରେ ନିଲାମ ହୋଇଯିବା ପରେ ସେ ନିଜକୁ ଦେବାଳିଆ ଘୋଷଣା କରିବାକୁ ବାଧ ହୋଇଛନ୍ତି । କଟକ ଓ ପୁରୀରେ ଥିବା ମଧୁବାବୁଙ୍କ ସମସ୍ତ ଜମି ଓ ଘର ବନ୍ଧକ ପଡ଼ିଲା ଓ ଶେଷରେ ବିକ୍ରୟ ହୋଇଗଲା । ମହାତ୍ମା ଗାନ୍ଧୀ ମଧୁବାବୁଙ୍କର ଏହି ଅବସ୍ଥା ଜାଣିବା ପରେ ଏହି ଜୋତା କାରଖାନାକୁ ଚଳାଇବା ପାଇଁ ମଧୁବାବୁଙ୍କ ପରାମର୍ଶକ୍ରମେ କେତେକ ଶିଳ୍ପପତିଙ୍କୁ ପଠାଇଥିଲେ । ମାତ୍ର ଶିଳ୍ପପତିମାନେ କାରଖାନାକୁ ଓଡ଼ିଶା ବହାରକୁ ନେଇ ଚଳାଇବାକୁ ଚାହିଁବାରୁ, ମଧୁବାବୁ ଓଡ଼ିଶାର ସମ୍ମାନ ଓ ମର୍ଯ୍ୟାଦା ରକ୍ଷା ଦୃଷ୍ଟିରୁ ଓଡ଼ିଶା ବାହାରକୁ ସେହି କାରଖାନାକୁ ଛାଡ଼ିନଥିଲେ । ଫଳରେ ଶିଳ୍ପପତିମାନେ ଫେରିଯାଇଥିଲେ । ଅବଶ୍ୟ ପଣ୍ଡିତ ଗୋପବନ୍ଧୁ ଦାସ ଓ ଗୋପବନ୍ଧୁ ଚୌଧୁରୀ କିଛି ସମ୍ବଳ ସଂଗ୍ରହ କରି ଏହି ଟ୍ୟାନେରୀ ପାଇଁ ଦେଇଥିଲେ, ମାତ୍ର ସେତିକିରେ ଋଣ ପରିଶୋଧ ସମ୍ଭବ ନହେବାରୁ ମଧୁବାବୁ ନିଜକୁ ଦେବାଳିଆ ଘୋଷଣା କରିବାକୁ ବାଧ ହୋଇଥିଲେ । ଆଉ ଗତ୍ୟନ୍ତର ନଥିଲା ।

ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଇତିହାସ ସହିତ ମଧୁବାବୁଙ୍କ ଜୀବନର ପ୍ରତ୍ୟେକ ଘଟଣା ଯୋଡ଼ି ହୋଇ ରହିଥିଲା । ତାଙ୍କର ଜୀବନ ଅପେକ୍ଷା ଜୀବନୀ କେତେ ବିରାଟ ସତରେ ! ଓଡ଼ିଶାର ସେହି ଅଦ୍ୱିତୀୟ ବରପୁତ୍ର ଶେଷ ଜୀବନରେ ଦରିଦ୍ର ହୋଇ ୧୯୩୪ ମସିହା ଫେବୃଆରୀ ୨୪ ତାରିଖରେ ୮୬ ବର୍ଷ ବୟସରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଓଡ଼ିଶା ଇତିହାସରେ ତାହା ଥିଲା ଅତ୍ୟନ୍ତ ଦୁଃଖଦାୟକ ଘଟଣା । ଶୁଣିବା କଥା, ତାଙ୍କର ଶେଷ ଦର୍ଶନ କରିବା ଲାଗି କୁଆଡ଼େ ଅସମ୍ଭବ ଭିଡ଼ ହୋଇଥିଲା କଟକରେ । ଯେପରି ବିଜୁବାବୁଙ୍କ ଦେହାନ୍ତ ପରେ ତାଙ୍କ ମରଶରୀରକୁ ଭୁବନେଶ୍ୱରରୁ ପୁରୀକୁ ନିଆଯିବା ବାଟରେ ଅସମ୍ଭବ ଭିଡ଼ ପରିଲକ୍ଷିତ ହୋଇଥିଲା ।

କଟକର ଗୋରାକବରରେ ଯେଉଁଠି ମଧୁବାବୁଙ୍କ ସମାଧି ରହିଛି ବା ମଧୁବାବୁ ରହୁଥିଲେ ଯେଉଁ 'ମଧୁସ୍ମୃତି' ଘରେ (ଯେଉଁଠି ଏବେ ଶୈଳବାଳା ମହିଳା କଲେଜ ଚାଲିଛି) ତାହା ଓଡ଼ିଆମାନଙ୍କ ପାଇଁ ତୀର୍ଥକ୍ଷେତ୍ର ହେଉ ବା ନହେଉ ପଛେ, ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗର୍ବ ଓ ଗୌରବର ସ୍ମୃତି ଚିହ୍ନ ବହନ କରି ତାହା ତିଷ୍ଠି ରହିଥିବ କାଳକାଳକୁ, ଏଥିରେ ସନ୍ଦେହ ନାହିଁ ।

ଡି.-୧୦/୫, ୟୁନିଟ୍-୮
ଭୁବନେଶ୍ୱର-୭୫୧୦୧୨

# ନବଉତ୍କଳ ଗଠନରେ ମଧୁବାବୁଙ୍କ ସାହିତ୍ୟର ଭୂମିକା

ଡଃ ପ୍ରସନ୍ନ କୁମାର ସ୍ୱାଇଁ

ମଧୁସୂଦନ ଦାସ ଉତ୍କଳର ଜାତୀୟ ବୀର, ନବ ଉତ୍କଳ ଗଠନର କର୍ଣ୍ଣଧାର, ଓଡ଼ିଆ ଜାତିପ୍ରୀତିର ପ୍ରତୀକ ସର୍ବୋପରି ଆମର ଗର୍ବ ଓ ଗୌରବ । ଉତ୍କଳ ମାତାର ଘୋର ଦୁର୍ଦ୍ଦିନ ଓ ଘନ ଅନ୍ଧକାର ମଧ୍ୟରେ ତାଙ୍କର ଜନ୍ମ ଏହି ଜାତି ପାଇଁ ଆଣି ଦେଇଥିଲା ଏକ ବିରାଟ ଆତ୍ମପ୍ରତ୍ୟୟ । ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାରେ ସୃଷ୍ଟ ନଅଙ୍କ ଦୁର୍ଭିକ୍ଷ ଓ ଏହାର ଦୁଇ ତିନିବର୍ଷ ପରେ ଓଡ଼ିଆ ଭାଷାକୁ ବିଲୋପ କରିବା ପାଇଁ ହୋଇଥିବା ହୀନ ଉଦ୍ୟମ ଫଳରେ ଓଡ଼ିଆ ଜାତି ମ୍ରିୟମାଣ ହୋଇପଡ଼ିଥିଲା । ଯେଉଁ ଉତ୍କଳର ସୀମା ଏକଦା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାରଲାଭ କରିଥିଲା, ତାହା ସେହି କାଳକୁ ମାତ୍ର ତିନୋଟି ଜିଲ୍ଲା ମଧ୍ୟରେ ସୀମିତ ହୋଇଯାଇଥିଲା । ଏହିପରି ଏକ ସନ୍ଧିକ୍ଷଣରେ ୧୮୪୮ ମସିହାରେ ମଧୁସୂଦନ ଦାସଙ୍କ ଜନ୍ମ ଆମ ଓଡ଼ିଆ ଜାତି ପାଇଁ ଖୁବ୍ ଗୌରବାବହ ଘଟଣା । ମଧୁସୂଦନଙ୍କ ଶୈଶବ ଅତିବାହିତ ହୋଇଛି ପରାଧୀନତା ଓ ନୈରାଶ୍ୟର ଘନ ଅନ୍ଧକାର ମଧ୍ୟରେ । ମାତ୍ର ସେହି ଅନ୍ଧକାର ମଧ୍ୟରେ ଥାଇ ଏ ଜାତି ଓ ଜନତାଙ୍କ ନିମନ୍ତେ ସେ ବ୍ୟସ୍ତ ହୋଇପଡ଼ିଛନ୍ତି । ତାଙ୍କର ତରୁଣାବସ୍ଥାରେ ଉତ୍କଳୀୟ ଜନତାର ଦୁଃଖରେ ସେ ମ୍ରିୟମାଣ ହୋଇ ପଡ଼ିଛନ୍ତି । ପୁନଶ୍ଚ ଉତ୍କଳ ଜନନୀର ଭାଷା ଉପରେ ମୁଷ୍ଟିମେୟ ବଙ୍ଗୀୟଙ୍କର ଅକଥନୀୟ ଅତ୍ୟାଚାର ତାଙ୍କୁ ଅସମ୍ଭାବିତ ଭାବେ ସଚେତନ କରିଦେଇଛି । ଫଳତଃ ଏକଦା କଲିକତାରେ ଅଧ୍ୟୟନ କରି ସେଠାରେ ଓକିଲାତି କରୁଥିବା ଜାତୀୟବୀର ମଧୁସୂଦନ ନିଜ ମାତୃଭୂମି ଓ ମାତୃଭାଷାର ସେବା କରିବାକୁ ବଜ୍ର ଶପଥ ନେଇ ୧୮୮୦ ମସିହା ବେଳକୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଛନ୍ତି ।

ମଧୁସୂଦନ ଦାସ ଥିଲେ ବାସ୍ତବ ଦୃଷ୍ଟିକୋଣରୁ ଜଣେ ଜାତୀୟବୀର, ଆଧୁନିକ ଉତ୍କଳୀୟ ଗଣ ଆନ୍ଦୋଳନର ପ୍ରଥମ ଓ ପ୍ରମୁଖ କର୍ଣ୍ଣଧାର, ପ୍ରଖ୍ୟାତ ଜନନାୟକ, ବିଶିଷ୍ଟ ଶିକ୍ଷାବିତ୍ ଏବଂ ନବ ଉତ୍କଳର ମୁକୁଟବିହୀନ ସମ୍ରାଟ । ମାତୃଭୂମିର ଆକର୍ଷଣ ହିଁ ତାଙ୍କୁ ସୁଦୂର କଲିକତା ସହରରୁ ନିଜର ଭିଟାମାଟିକୁ ଆକର୍ଷିତ କରି ଆଣିଥିଲା । ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ କରିବା ପରେ ସେ କଟକରେ ଓକିଲାତି କରିବା ସହିତ ଓଡ଼ିଆ ଜାତି କିପରି ତା'ର ହୃତଗୌରବ ଫେରିପାଇବ ଓ ଉତ୍କଳୀୟ ଜନତା ନିଜ ମାତୃଭୂମିର ସ୍ୱାଭିମାନ ରକ୍ଷା କରିପାରିବେ, ସେଥିପାଇଁ ସେ ବହୁ ସମୟ ବ୍ୟୟ କରିଥିଲେ । ୧୮୬୯-୭୦ ମସିହାରେ ଓଡ଼ିଶାରେ ସୃଷ୍ଟ ଭାଷାକୈନ୍ଦ୍ରିକ ଆନ୍ଦୋଳନ ପରବର୍ତ୍ତୀ ପର୍ଯ୍ୟାୟରେ ବିଂଶ ଶତକର ପ୍ରାରମ୍ଭକୁ ମଧୁସୂଦନଙ୍କ ଯୋଗୁଁ ହିଁ ସୀମାକୈନ୍ଦ୍ରିକ ଆନ୍ଦୋଳନରେ ରୂପାନ୍ତରିତ ହୋଇଯାଇଥିଲା । ବଙ୍ଗ ପ୍ରଦେଶରେ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କ ନେତୃତ୍ୱରେ ୧୮୮୭ ମସିହାରେ ଗଠିତ 'ବେଙ୍ଗଲ ନ୍ୟାସନାଲ କନ୍‌ଫରେନ୍‌ସ' ପରି ଓଡ଼ିଶାରେ ଉତ୍କଳୀୟ ଜନତାର ବାସ୍ତବ ସମସ୍ୟା ଉପସ୍ଥାପନ କରିବାକୁ ଯାଇ ମଧୁସୂଦନ 'ଉତ୍କଳ ସଭା' ବା 'ଓଡ଼ିଆ ଆସୋସିଏସନ୍' ଗଠନ କରିଥିଲେ । ମାତ୍ର ଏହାର ପରିସର କଟକ ଜିଲ୍ଲା ମଧ୍ୟରେ ସୀମିତ ରହିବାରୁ ଓଡ଼ିଶାର ଜନତା ଜନାର୍ଦ୍ଦନଙ୍କର ଏହା ବାସ୍ତବ ସମସ୍ୟା ଉପସ୍ଥାପନ କରିବାକୁ ସକ୍ଷମ ହୋଇ ପାରିନଥିଲା ।

୧୯୦୧ ମସିହାରେ କେତେକ ସଚେତନ ଜାତିପ୍ରାଣ ଓଡ଼ିଆଙ୍କପକ୍ଷରୁ ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କ ଉଦ୍ୟମରେ ତାଙ୍କର ରମ୍ଭା ବଙ୍ଗଳାରେ ଏକ ଆଲୋଚନା ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା ନିମିତ୍ତ ଗୋଟିଏ ଜାତୀୟ ଜାଗରଣ ପୀଠ ଗଠନ କରାଯିବା ପାଇଁ ସ୍ଥିରୀକୃତ ହୋଇଥିଲା । ଏ ବିଷୟରେ ପରାମର୍ଶ ଦେବାକୁ ମଧୁସୂଦନ ଦାସଙ୍କୁ କଟକରୁ ବିଶେଷ ଭାବରେ ନିମନ୍ତ୍ରଣ କରାଯାଇଥିଲା । ୧୯୦୩ ମସିହା ଡିସେମ୍ବର ମାସ ୩ ତାରିଖରେ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ଏଚ୍.ଏଚ୍. ରିସ୍‌ଲେଙ୍କ ରିପୋର୍ଟ

ଭିତ୍ତିରେ ଭାରତ ସରକାର ଯେଉଁ ସିଦ୍ଧାନ୍ତ ନେଇଥିଲେ, ସେ ସଂପର୍କରେ ଆଲୋଚନା କରିବା ପାଇଁ ଗଞ୍ଜାମର କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଉଦ୍ୟମରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ବ୍ରହ୍ମପୁରଠାରେ 'ଓଡ଼ିଆ ସଭା' ନାମରେ ଏକ ସମାବେଶର ଆୟୋଜନ କରାଯାଇ ଥିଲା । ଏହି ସଭାରେ ମଧୁସୂଦନ ଦାସଙ୍କ ପ୍ରସ୍ତାବକ୍ରମେ ଓଡ଼ିଆ ଭାଷୀ ବିଚ୍ଛିନ୍ନାଞ୍ଚଳକୁ ମିଶାଇ 'ଉତ୍କଳ ସମ୍ମିଳନୀ' ନାମରେ ଏକ ଜାତୀୟ ଅନୁଷ୍ଠାନ ଗଢ଼ାଯିବାକୁ ସ୍ଥିର କରାଯାଇଥିଲା । ଫଳସ୍ୱରୂପ ୧୯୦୩ ମସିହା ଡିସେମ୍ବର ମାସ ୩୦ ଓ ୩୧ ତାରିଖ ଦୁଇଦିନ ଧରି କଟକଠାରେ ଉତ୍କଳ ସମ୍ମିଳନୀର ଯେଉଁ ପ୍ରଥମ ଅଧିବେଶନର ଆୟୋଜନ କରାଯାଇଥିଲା, ତାହାର ନେତୃତ୍ୱ ନେଇଥିଲେ ମଧୁସୂଦନ ଦାସ । ସମଗ୍ର ଓଡ଼ିଆଭାଷୀଙ୍କ ମଧ୍ୟରେ ଜାତୀୟ ଜାଗରଣର ବାର୍ତ୍ତା ଦେବାକୁ ଯାଇ ସେ ସମଗ୍ର ଓଡ଼ିଶାର ପୁରପଲ୍ଲୀର ଚାଷୀ ମୂଲିଆଙ୍କଠାରୁ ଆରମ୍ଭ କରି ରାଜାରାଜୁଡ଼ାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଏହି ସମ୍ମିଳନୀକୁ ଆମନ୍ତ୍ରଣ କରିଥିଲେ ।

ମଧୁସୂଦନ ସମକାଳୀନ ଓଡ଼ିଶାର ଦୀନ ଓ ଦାରିଦ୍ର୍ୟ ବିଷୟରେ ଖୁବ୍ ସଚେତନ ଥିଲେ । ତତ୍କାଳୀନ ଉତ୍କଳୀୟ ଜନତାର ଅସହାୟ ଓ ସ୍ଥାଣୁ ଭାବ ତାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ଦୀର୍ଘ ଚାରିଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ପରାଧୀନତାର ଆତ୍ମଗ୍ଲାନି ମଧ୍ୟରେ ମଗ୍ନ ହୋଇ ଏ ଜାତି ମୋଗଲ, ମରହଟ୍ଟା ଓ ଇଂରେଜ ଶାସକଙ୍କର ଶୋଷଣ ମଧ୍ୟରେ ଏ ଜାତି ନିଜସ୍ୱ ସ୍ଥିତିକୁ ଭୁଲି ତ୍ରାହି ତ୍ରାହି ଡାକୁଥିଲା । ଏହିପରି ଏକ ସନ୍ଧିକ୍ଷଣରେ ସେ ଅନୁଭବ କରିଥିଲେ ଯେ କେବଳ ଭାଷଣ ନୁହେଁ, ସମକାଳୀନ ଉତ୍କଳୀୟ ଜନତାଙ୍କ ହୃଦୟରେ ଜାତୀୟ ଜାଗରଣର ବହ୍ନି ପ୍ରଜ୍ୱଳିତ କରିବାକୁ ହେଲେ ସେମାନଙ୍କ ସମ୍ମୁଖରେ ଗୌରବାବହ ଅତୀତ ଉତ୍କଳକୁ ଉପସ୍ଥାପନ କରିବାକୁ ହେବ, ସେମାନଙ୍କ ମଧ୍ୟରେ ଅତୀତ ଉତ୍କଳର ଜାତୀୟ ବୀରଙ୍କ ସ୍ମୃତି ରୋମନ୍ଥନ କରିବାକୁ ପଡ଼ିବ । ଏହି ଉଦ୍ଦେଶ୍ୟରେ ସେ ସର୍ବମୋଟ ଆଠଗୋଟି (ଏ ପର୍ଯ୍ୟନ୍ତ ପ୍ରକାଶିତ) ଜାତୀୟ ଉଦ୍‌ବୋଧନୀ ଗୀତିକା ରଚନା କରିଥିଲେ ଓ ତତ୍‌ସହିତ ଆମ ଜାତିକୁ ସ୍ୱାଭିମାନୀ କରିବାକୁ ଯାଇ ନିର୍ବେଦ ସ୍ଥାଣୁ ଉତ୍କଳୀୟ ଜନତାଙ୍କ ସମ୍ମୁଖରେ ଅଗ୍ନିବର୍ଷୀ ଅଭିଭାଷଣ ପ୍ରଦାନ କରିଥିଲେ । ମଧୁସୂଦନଙ୍କ ଜାତୀୟ ଭାବଭିତ୍ତିକ ଉଦ୍‌ବୋଧନୀ ଗୀତିକା ମଧ୍ୟରେ ପ୍ରଧାନ ଥିଲା 'ଜଣାଣ', ଉତ୍କଳ ସନ୍ତାନ, ଜନନୀର ଉକ୍ତି, ସନ୍ତାନର ଉକ୍ତି, ସମ୍ମିଳନୀ, ଜାତି ଇତିହାସ, 'ଏ ଭବେ ପାଇବ କାହିଁ' ପ୍ରଭୃତି କବିତାବଳୀ । ଏହି କବିତାଗୁଡ଼ିକ 'ଜାତୀୟ ଗୀତ' ଶିରୋନାମାରେ ବ୍ରଜସୁନ୍ଦର ଦାସଙ୍କଦ୍ୱାରା ପ୍ରଥମେ ମୁକୁର ପ୍ରେସ୍‌ରେ ମୁଦ୍ରିତ ହୋଇ ୧୯୧୫ ମସିହା ବେଳକୁ ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ ତା.୧୦.୧୧.୧୯୨୮ରିଖ ଶନିବାର ଦିନ କଟକ ଟାଉନ୍‌ହଲ୍‌ଠାରେ ମଧୁସୂଦନଙ୍କ ସଭାପତିତ୍ୱରେ ଯେଉଁ ସଭା ଅନୁଷ୍ଠିତ ହୋଇଥିଲା ସେଥିରେ ସଭାପତିଙ୍କ ବକ୍ତବ୍ୟ ଶେଷରେ ସେ ଏକ ଆଶୁ କବିତା ଗାନ କରିଥିଲେ । କବିତାଟି ହେଉଛି ଏହିପରି :

ମା' ମା' ବୋଲି          କେତେ ମୁଁ ଡାକିଲି
    ନ ଶୁଣିଲି କଣ୍ଠସ୍ୱର
ତୁଣ୍ଡ ଫିଟୁ ନାହିଁ          ମୁଣ୍ଡ ହଲୁ ନାହିଁ
    ନେତ୍ରୁ ବହେ ଅଶ୍ରୁଧାର । ୧
ଶୁଣରେ ଶୁଣରେ          ଶୁଣ ଭାଇମାନେ
    ଏ ଦୀନ ହୀନ ବିନତି
ଆମ ପାପ ହେତୁ          ମାତାଙ୍କ ଦୁର୍ଦ୍ଦଶା
    ମୋ' ଜାତିର ଅଧୋଗତି । ୨
କୋଟିଏ ସନ୍ତାନ          ଗୋଟିଏ ସ୍ୱରରେ
    ଡାକ ତ୍ରାହି ଜଗନ୍ନାଥ,
ଅନ୍ଧାର ଘୁଞ୍ଚିବ          ନିଶ୍ଚୟ ଦେଖିବ
    ଜାତିର ଉନ୍ନତି ପଥ । ୩
ସୁଦର୍ଶନ ଚକ୍ର          ଗରଜି ଉଠିବ
    ବଳିଆର ବାହୁ କରେ
ମାତାଙ୍କ ଶ୍ରୀଅଙ୍ଗ          ପୂର୍ବବତ ହେବ
    ଶତ୍ରୁ ପଳାଇବେ ଡରେ । ୪

ଏହି ଆଶୁ କବିତା 'ସମାଜ'ରେ ତା.୧୪.୧୧.୧୯୨୮ରିଖରେ ପ୍ରକାଶ ପାଇଥିଲା -

ମଧୁସୂଦନଙ୍କ ହୃଦୟରେ ଉତ୍କଳୀୟ ଜାତୀୟ ଜାଗରଣର ପ୍ରଥମ ବାଣୀମନ୍ତ୍ର ଥିଲା ।

ଏହି ସମ୍ମିଳନୀ          ଜାତି ପ୍ରାଣ ସିନ୍ଧୁ
    କୋଟି ପ୍ରାଣ ବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ          ମିଶାଇ ଦେ, ଭାଇ
    ଡେଇଁ ପଡ଼ି ସିନ୍ଧୁ ନୀରେ ।

'ସମ୍ମିଳନୀ' ଅନ୍ତର୍ଗତ ଏହି କବିତା ପଂକ୍ତି ମଧ୍ୟରେ ଦେଶପ୍ରାଣ ମଧୁସୂଦନ ସମଗ୍ର ପରାଧୀନ ପ୍ରପୀଡ଼ିତ ମାନବ ଜାତିକୁ ସଚେତନ କରିବା ପାଇଁ ପ୍ରୟାସୀ ହୋଇଛନ୍ତି । ସେ ଉଦାହରଣ ଭାବେ କ୍ଷୁଦ୍ର କ୍ଷୁଦ୍ର ଜଳବିନ୍ଦୁ କଥା ଉଲ୍ଲେଖ କରି କହିଛନ୍ତି- 'ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ଜଳବିନ୍ଦୁର ସମ୍ମିଶ୍ରଣରେ ମହୋଦଧି-ସିନ୍ଧୁର ପରିକଳ୍ପନା ।' ଭାରତବର୍ଷରେ ପ୍ରବାହିତ ପୁଣ୍ୟତୋୟା ଗଙ୍ଗା, ଗୋଦାବରୀ, ଯମୁନା, କାବେରୀ ପ୍ରଭୃତି ନଦୀଗୁଡ଼ିକ ନିଜ ନିଜର ଗତିପଥରେ ବିଭିନ୍ନ ସ୍ଥାନରେ ବହୁ ତୀର୍ଥ ସୃଷ୍ଟି କରି ଭାରତୀୟ ମାନବ ସମାଜଦ୍ୱାରା ଆଦୃତ ହେଉଥିଲେ ହେଁ ଶେଷରେ ନିଜ ରୂପକୁ ହଜାଇ ଦେଇ ସିନ୍ଧୁ ବକ୍ଷରେ ଲମ୍ଫ ପ୍ରଦାନ କରନ୍ତି । ଅନୁରୂପ ଭାବେ ବ୍ରିଟିଶ ଶାସନକାଳରେ ନିଜ ଜାତିର ଦୁର୍ଦ୍ଦିନରେ ପ୍ରତ୍ୟେକ ଉତ୍କଳୀୟ ନିଜ ଜୀବନ ଜାତି ଉଦ୍ଦେଶ୍ୟରେ ଅର୍ପଣ କରିବା ଏକାନ୍ତ ଆବଶ୍ୟକ । ନଚେତ୍ ଜାତିର ମାନ ବୃଦ୍ଧି ପାଇବ ନାହିଁ ବୋଲି ମଧୁସୂଦନଙ୍କର ଅନୁଭବ ହୋଇଛି । ପୁନଶ୍ଚ ଉତ୍କଳୀୟ ଜାତୀୟ ଜୀବନ ହାଟ ବାଟରେ ମଧ୍ୟ ଅନ୍ୱେଷଣ କଲେ ମିଳିବ ନାହିଁ ବୋଲି ତାଙ୍କର ହୃଦ୍‌ବୋଧ ହୋଇଛି । ସେଥିପାଇଁ ଆବଶ୍ୟକ

ପଡ଼ିଲେ ମାନବକୁ ପତିବ୍ରତା ସତୀର ଭୂମିକା ନେବାକୁ ପଡ଼ିବ ଓ ଦରକାର ହେଲେ ଅଗ୍ନିରେ ଝାସ ଦେଇ ଆତ୍ମୋତ୍ସର୍ଗ କରିବାକୁ ହେବ ବୋଲି ମଧୁସୂଦନ ତାଙ୍କ 'ସମ୍ମିଳନୀ' କବିତା ମଧ୍ୟରେ ଅତ୍ୟନ୍ତ ସ୍ୱଷ୍ଟ ଭାବେ ଉଲ୍ଲେଖ କରି କହିଛନ୍ତି-

ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ,
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।

ପୁନଶ୍ଚ କବି ଓଡ଼ିଆ ଜାତିକୁ ଆହୁରି ସଚେତନ କରି ଏହି କବିତାର ଶେଷାଂଶରେ ଉଲ୍ଲେଖ କରିଛନ୍ତି ଦୂରଦୃଷ୍ଟି ଓ ନେତୃତ୍ୱର ଅଭାବ ଯୋଗୁଁ ଏହିପରି ଏକ ଦୁର୍ଦ୍ଧର୍ଷ ଅଗ୍ରଗାମୀ ଜାତିକୁ ପରାଧୀନତା ସ୍ୱୀକାର କରିବାକୁ ପଡ଼ିଛି ଓ ନେତୃତ୍ୱରେ ଆକସ୍ମିକ ଭାବେ ଭଙ୍ଗା ଦେଖାଦେଇଛି । ମାତ୍ର ଏକଥା ସତ୍ୟ ଯେ ସବୁଦିନ ପାଇଁ ଉତ୍କଳୀୟ ଆକାଶରେ ଅନ୍ଧକାରର କଳାମେଘ ଢାଙ୍କି ରହିବ ନାହିଁ । ଏ ପର୍ଯ୍ୟାୟରେ କବି ଗଭୀର ଆଶାବାଦୀ ହୋଇଛନ୍ତି । ଦିନ ଆସିବ, ଯେଉଁଦିନ ଉତ୍କଳର ସାଗର ବକ୍ଷରେ ଉତ୍ତାଳ ତରଙ୍ଗମାଳା କୂଳ ଲଙ୍ଘନ କରିବେ । ଉତ୍କଳୀୟ ପ୍ରାଣରେ ପ୍ରାଣ ମିଳାଇ ସିନ୍ଧୁ ବିଦେଶୀ ଶାସକମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବ ଏବଂ ଦେଶର ଚତୁର୍ଦ୍ଦିଗରେ ମହାବଳ ବ୍ୟାଘ୍ରର ଭୀଷଣ ଗର୍ଜନ ଶୁଣି ଶତ୍ରୁମାନେ ଆତଙ୍କିତ ହୋଇପଡ଼ିବେ । ଏହାଫଳରେ ସମଗ୍ର ବିଶ୍ୱଦରବାରରେ ଉତ୍କଳର ମାନ ନିଶ୍ଚିତ ଭାବେ ବୃଦ୍ଧି ପାଇବ ବୋଲି ତାଙ୍କର ହୃଦ୍‌ବୋଧ ହୋଇଛି ।

ଏହି କଥାକୁ ଆହୁରି ସ୍ୱଷ୍ଟ ଓ ନିର୍ଭୀକ ଭାବରେ 'ଉତ୍କଳ ସନ୍ତାନ' କବିତା ମଧ୍ୟରେ ସ୍ରଷ୍ଟା ପ୍ରକାଶ କରିଛନ୍ତି । ତାଙ୍କ ସମୟକୁ ଉତ୍କଳୀୟ ଜନମାନସ ମଧ୍ୟରେ ଥିବା ରୁଚିହୀନ ସ୍ୱାର୍ଥପରତା, ତୋଷାମଦ ଭାବ, ଭୀରୁତା, ମିଥ୍ୟାବାଦୀ ମନୋବୃତ୍ତି ପ୍ରଭୃତି ଚେତନାଗୁଡ଼ିକ ମଧୁସୂଦନଙ୍କୁ ବ୍ୟଥିତ କରି ପକାଇଛି । ଶହ ଶହ ବର୍ଷ ଧରି ଉତ୍କଳ ପରାଧୀନ ପ୍ରପୀଡ଼ିତ ଓ ଏହାର ବକ୍ଷରେ ମୋଗଲ, ମରହଟ୍ଟା ତଥା ଇଂରେଜମାନଙ୍କର ରାଜପଣ ଦେଖି ତାଙ୍କ ପ୍ରାଣ ଦୁଃଖରେ କ୍ରନ୍ଦନ କରିଛି । ଯେଉଁ ଓଡ଼ିଆ ବୀର ନିଜ ସ୍ୱାଭିମାନ ବୋଧକୁ ପ୍ରତିଷ୍ଠା କରିବାକୁ ଯାଇ ଏକଦା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ନିଜର ସୀମା ବିସ୍ତାର କରିଥିଲା ଓ କାଞ୍ଚି ଅଭିଯାନ କରି ନିଜର ନେତୃତ୍ୱରେ ସମଗ୍ର ବିଶ୍ୱବାସୀଙ୍କୁ ଚକିତ ଉଦ୍‌ଭାସିତ କରି ଦେଇଥିଲା ସେହି ବୀରପୁରୁଷଙ୍କର ଉତ୍ତର ଦାୟାଦଙ୍କୁ ବିଂଶ ଶତକର ଆଦ୍ୟକାଳରେ ହୀନ ବୀର୍ଯ୍ୟ ଭାବରେ କବି ମଧୁସୂଦନ ଲକ୍ଷ୍ୟ କରିଛନ୍ତି । ପୁନଶ୍ଚ ସେ ଲକ୍ଷ୍ୟ କରିଛନ୍ତି ଦୀର୍ଘକାଳ ପରାଧୀନତାର ଅନ୍ଧକାର ମଧ୍ୟରେ ରହିଥିବା ଉତ୍କଳ ଜନନୀର ପ୍ରାଣର କୋହକୁ । ମଧୁସୂଦନ ଅନୁଭବ କରିଛନ୍ତି ଆଉ ବେଶୀ କାଳ ନୁହେଁ, ବର୍ତ୍ତମାନ ହେଉଛି ଜାତୀୟ ଜାଗରଣର ସର୍ବୋତ୍କୃଷ୍ଟ ସମୟ । ଏହି କାଳରେ ପ୍ରତ୍ୟେକ ଓଡ଼ିଆକୁ ଜାତୀୟ ସ୍ରୋତରେ ସାମିଲ ହେବାକୁ ପଡ଼ିବ । ସେଥିପାଇଁ ସେ 'ଉତ୍କଳ ସନ୍ତାନ' କବିତା ମଧ୍ୟରେ ପରାଧୀନତାର ଘନ ଅନ୍ଧକାର ମଧ୍ୟରେ ଥିବା ପ୍ରତ୍ୟେକ ଓଡ଼ିଆକୁ ଜାତୀୟ ଜାଗରଣରେ ଏକାକାର ହୋଇ ଏ ଜାତିର ମନ୍ତ୍ରରେ ଅଭିମନ୍ତ୍ରିତ ହେବାକୁ ଆହ୍ୱାନ ଦେଇ ଗାନ କରିଛନ୍ତି -

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,
ପୂରବ ଗୌରବ ପୂରବ ସାହସ
ପଡ଼ିବ କି କେବେ ମନେ ।

ପ୍ରସଙ୍ଗକ୍ରମେ ସେ ମୂକ, ନିର୍ବେଦ ପରାଧୀନ ପ୍ରପୀଡ଼ିତ ଓଡ଼ିଆକୁ ନିଜ ଜନନୀ ଓ ଜନ୍ମଭୂମି ସଂପର୍କରେ ସଚେତନ କରି ଦେଇଛନ୍ତି । ଯେତେବେଳେ ନିଜ ଜନ୍ମମାଟି ଉପରେ ବିଦେଶୀ ଶାସକମାନେ ନାନା ଅକଥନୀୟ ଅତ୍ୟାଚାର କରି ତାକୁ ଖଣ୍ଡ ବିଖଣ୍ଡିତ କରି ଦେଇଛନ୍ତି ଓ ତା'ର ଭାଷା ଓଡ଼ିଆକୁ ତା' ମୁଖରୁ ଛଡ଼ାଇ ନେବାକୁ ପ୍ରୟାସୀ ହୋଇଛନ୍ତି, ଉତ୍କଳ ଜନନୀର ସନ୍ତାନ ଭାବରେ ରକ୍ତମାଂସଧାରୀ ଓଡ଼ିଆ ପୁଅ ତାହା କିପରି ଏତେକାଳ ସହ୍ୟ କରିପାରିଛନ୍ତି । ଉତ୍କଳ ଜନନୀର ଏହି ଦୁରବସ୍ଥା ସହିତ ତା'ର ସନ୍ତାନମାନଙ୍କର ସ୍ଥାଣୁ ଭାବ ଦେଖି ଜାତିପ୍ରାଣ ମଧୁସୂଦନ ଦୁଃଖରେ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଛନ୍ତି । ସେ ପୁଣି ଶୁଣିଛନ୍ତି ଅଶୋକ ଖାରବେଳଙ୍କ ପରି ଅତୀତ ଉତ୍କଳର ବୀରମାନଙ୍କ ଗାଥା, ଯେଉଁମାନେ ନିଜସ୍ୱ କୀର୍ତ୍ତିରେ ସମଗ୍ର ବିଶ୍ୱରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ମାତ୍ର ତାଙ୍କ ସମୟକୁ ଓଡ଼ିଆ ପୁଅ ତୋଷାମଦ କରି ଭୃତ୍ୟ ହୋଇ ନିଜ ସ୍ୱାର୍ଥର ଚତୁର୍ଦ୍ଦିଗରେ କାଳାତିପାତ କରୁଛି । ପୁନଶ୍ଚ ସ୍ୱାର୍ଥ ମଧ୍ୟରେ ବ୍ୟସ୍ତ ରହି ଜାତିର ଉନ୍ନତି କଥା ସେ ସଂପୂର୍ଣ୍ଣ ଭାବେ ଭୁଲି ଯାଇଛି । ଦେଶ ଓ ଜାତିର ଏହିପରି ଏକ ସଙ୍କଟ କାଳରେ ମଧୁବାଣୀର ମନ୍ତ୍ର ଆଣି ଦେଇଛି । ତାଙ୍କ ରଚିତ କବିତା ମଧ୍ୟରେ ସେ ଏ ଜାତିକୁ ପୁନର୍ବାର ଅଭିମନ୍ତ୍ରିତ ହେବାପାଇଁ ପ୍ରଚେଷ୍ଟା କରି ଗାନ କରିଛନ୍ତି :

ତୁ ପରା ବୋଲାଉ ଉତ୍କଳ ସନ୍ତାନ
ତେବେ କିମ୍ପା ତୁହି ଭୀରୁ,
ତୋହର ଜନନୀ ରୋଦନ କରିଲେ
କହିବାକୁ କିମ୍ପା ଡରୁ ? ୧
ତୋ' ପୂର୍ବ ପୁରୁଷେ ବୀର ପଣିଆରେ
ଲଭିଥିଲେ କେତେ ଖ୍ୟାତି,
ହାକିମ ନିକଟେ ଦୁଃଖ କହିବାକୁ
କିମ୍ପା ଥରେ ତୋର ଛାତି ? ୨

ତାଙ୍କ ସମୟରେ ସ୍ରଷ୍ଟା ମଧୁସୂଦନ ଦେଶର ଚତୁର୍ଦ୍ଦିଗରେ ଲକ୍ଷ୍ୟ କରିଛନ୍ତି ବାକ୍ୟ ବୀରମାନଙ୍କର ଆର୍ତ୍ତଚିତ୍କାର, ଯେଉଁମାନେ କେବଳ ବାକ୍‌ପଟୁତାରେ ହିଁ ଆକାଶ ପର୍ଯ୍ୟନ୍ତ ସ୍ୱହସ୍ତ ଲମ୍ବାଇ ଦେଇପାରନ୍ତି । ମାତ୍ର କବି ଅନୁଭବ କରିଛନ୍ତି ଉତ୍କଳ ଜନନୀ ପରାଧୀନତା ରୂପକ ଅନ୍ଧକାର ମଧ୍ୟରେ ଦୀର୍ଘ ଦିନ ଧରି ରୋଦନ କରୁଛି । ଅସଂଖ୍ୟ କର୍ମବୀରମାନଙ୍କୁ ସେ ନିଜର ଗର୍ଭରେ ଧାରଣ କରିଥିଲେ ହେଁ ସେମାନେ ଜନନୀର ଏପରି ଅସହାୟ ଅବସ୍ଥାରେ ତାକୁ ଆଶ୍ୱାସନା ଓ ସାନ୍ତ୍ୱନା ଦେବା ପରିବର୍ତ୍ତେ ନିଜ ନିଜ ସ୍ୱାର୍ଥରେ ମଜ୍ଜୁଗୁଲ ହୋଇଛନ୍ତି । ପ୍ରସଙ୍ଗକ୍ରମେ

ମଧୁସୂଦନ ନୀଳାଚଳ ଧାମରେ ଆମ ଜାତି ଓ ସଂସ୍କୃତିର ପ୍ରତୀକ ଶ୍ରୀଜଗନ୍ନାଥଙ୍କ କଥା ଉଲ୍ଲେଖ କରିଛନ୍ତି । ଜଗନ୍ନାଥଙ୍କ ନିକଟରେ ବ୍ରାହ୍ମଣ ଚଣ୍ଡାଳ ମଧ୍ୟରେ ଭେଦଭାବ ନାହିଁ ବା ରାଜା ପ୍ରଜା ମଧ୍ୟରେ ପ୍ରଭେଦ ନାହିଁ । ସେହି ପୁଣ୍ୟ ପବିତ୍ର ପୀଠରେ ସମସ୍ତେ ସମାନ । ଉତ୍କଳ ଜନନୀଙ୍କର ଏହି ସୁପୁତ୍ରର ଯଶ ଓ ଖ୍ୟାତିକୁ ସମସ୍ତ ଉତ୍କଳୀୟଙ୍କ ହୃଦୟରେ ସ୍ଥାପନ ପୂର୍ବକ ସ୍ରଷ୍ଟା ଜଗନ୍ନାଥଙ୍କ ମାଧ୍ୟମରେ ଉତ୍କଳୀୟ ମାନବକୁ ସଚେତନ କରାଇବାର ପ୍ରୟାସ କରିଛନ୍ତି । ସେହି ଜଗନ୍ନାଥଙ୍କ ବଂଶଧର ହୋଇ ପରବର୍ତ୍ତୀ କାଳରେ ଓଡ଼ିଆମାନଙ୍କର ହୀନମନ୍ୟ ଭାବ ଲକ୍ଷ୍ୟ କରି କବି ଖୁବ୍ ବ୍ୟସ୍ତ ଓ ବିବ୍ରତ ହୋଇ ପଡ଼ିଛନ୍ତି । ଇତିହାସର କଥା ସ୍ମରଣ ପୂର୍ବକ ସମକାଳୀନ ଉତ୍କଳର ସ୍ଥାଣୁଭାବକୁ ତୁଳନା କରି କବିପ୍ରାଣ ଆହୁରି ଆତଙ୍କିତ ହୋଇପଡ଼ିଛି । ସେ ତାଙ୍କ ବଂଶଜ ଘୃଣିତ ଓଡ଼ିଆମାନଙ୍କୁ ଲକ୍ଷ୍ୟକରି ଅନୁଭବ କରିଛନ୍ତି - ଏହା ଯେ କେବଳ ତାଙ୍କ ପ୍ରତି ଅବମାନନା ତାହା ନୁହେଁ, ଏହା ଉତ୍କଳ ଜନନୀର ଭାଗ୍ୟଦୋଷ । ଭାଗ୍ୟର ବିପର୍ଯ୍ୟୟ ହେତୁ ବହୁ କାଳ ଧରି ବୀର ପ୍ରସବିନୀ ଉତ୍କଳ ଜନନୀ ଧରାଶାୟୀ ହୋଇପଡ଼ିଛି, କାନ୍ଦି କାନ୍ଦି ଅନ୍ଧ ହୋଇଯାଇଛି । ତଥାପି ଓଡ଼ିଆଙ୍କ ମଧ୍ୟରେ ସ୍ୱାଭିମାନବୋଧ ଜାତ ହେଉନାହିଁ ବା ସେମାନେ ନିଜ ଦେଶ ଓ ଜାତି ସଂପର୍କରେ ସଚେତନ ହେଉନାହାନ୍ତି । ଏହି ପ୍ରସଙ୍ଗ ସ୍ରଷ୍ଟା 'ଜନନୀର ଉକ୍ତି' ଗୀତିକା ମଧ୍ୟରେ ନିମ୍ନମତେ ବ୍ୟକ୍ତ କରିଛନ୍ତି ।

ବହୁ କାଳ ଧରି     ରୋଦନ କରୁଛି
ନୟନକୁ ଦିଶୁ ନାହିଁ,
ମୋହର ସନ୍ତାନ     କତିକି ଆସିଲେ
ଅଣ୍ଡାଳି ଚିହ୍ନିବି ମୁହିଁ ।

ବିଂଶ ଶତକର ପ୍ରାରମ୍ଭରେ ମଧୁସୂଦନଙ୍କର ଏହି ଜାତୀୟ ଭାବନା ଓ ଦେଶପ୍ରୀତି ଆହୁରି ଉଗ୍ର ତଥା ବଳିଷ୍ଠ ଭାବେ 'ସନ୍ତାନର ଉକ୍ତି' କବିତା ମଧ୍ୟରେ ପ୍ରତିଭାତ ହୋଇଛି । ପୂର୍ବୋକ୍ତ କବିତା ମଧ୍ୟରେ ଉତ୍କଳ ଜନନୀର ଦୁଃଖ ପ୍ରକଟିତ କରି ପରବର୍ତ୍ତୀ କାଳରେ ସେହି ଜନନୀଙ୍କୁ ଆଶ୍ୱାସନା ଦେବାକୁ ପ୍ରୟାସୀ କବି ସେଥିରେ ଅସଫଳ ହୋଇଛନ୍ତି । ସମକାଳୀନ ଉତ୍କଳୀୟ ପାଣିପାଗରେ ସେ ଜନନୀଙ୍କର ସତ୍ତା ଅନୁଭବ କରିବାକୁ ବାରମ୍ବାର ପ୍ରଚେଷ୍ଟା କରିଛନ୍ତି । ମାତ୍ର ସୁଦୀର୍ଘ ପରାଧୀନତାର ଆତ୍ମଗ୍ଲାନି ମଧ୍ୟରେ ମୁହ୍ୟମାନ ହୋଇ ଉତ୍କଳ ଜନନୀ କେଉଁଠି ଆତ୍ମଗୋପନ କରିଥିବାର ସେ ଅନୁଭବ କରିଛନ୍ତି । ପୁନଶ୍ଚ ତାଙ୍କ ସମ୍ମୁଖରେ ସେ ଏକକୋଟିରୁ ଊର୍ଦ୍ଧ୍ୱ ଓଡ଼ିଆଙ୍କୁ ଦେଖୁଥିଲେ ହେଁ ତାଙ୍କ କାନ୍ଧରେ କାନ୍ଧ ମିଳାଇ ଜାତିପ୍ରେମରେ ଉଦ୍‌ବୁଦ୍ଧ ହେବା ପାଇଁ ସେ ଗୋଟିଏ ମାତ୍ର ଓଡ଼ିଆ ଭାଇକୁ ପାଇ ପାରିନାହାନ୍ତି । ମାତୃଭୂମି ପାଇଁ ଏହାଠାରୁ ବଳି ଆଉ କ'ଣ ବା ଅଧିକ ଅପମାନ ହୋଇପାରେ । ତଥାପି ଜାତିର ଏପରି ଦୁର୍ଦ୍ଦିନରେ କବି ଆତ୍ମା ହଠାତ୍ ବିଚଳିତ ହୋଇପଡ଼ି ନାହିଁ ବା ସେ ଜନନୀର ଏପରି ଅବସ୍ଥାରେ ଆଦୌ ଭାଙ୍ଗିପଡ଼ି ନାହାନ୍ତି । ବରଂ ପରାଧୀନ ପ୍ରପୀଡ଼ିତ ଦରିଦ୍ର ନିଃସହାୟ ଏକକୋଟି ଓଡ଼ିଆଙ୍କୁ ସଚେତନ ଭାବରେ ଆହ୍ୱାନ ଦେଇ ସେ 'ସନ୍ତାନର ଉକ୍ତି' କବିତା ମଧ୍ୟରେ ପ୍ରକାଶ କରିଛନ୍ତି -

କୋଟିଏ ସନ୍ତାନ     ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
ତୃଷାରେ କାତର     ଗଗନକୁ ଚାହିଁ
ଯେସନେ ଡାକେ ଚାତକ ।

ମଧୁସୂଦନ ଥିଲେ ଚିନ୍ତା ଓ ଚେତନାରେ ଖାଣ୍ଟି ଉତ୍କଳୀୟ । ସମଗ୍ର ଓଡ଼ିଶା ଥିଲା ତାଙ୍କର ମାନସ ସନ୍ତାନ । 'ଉତ୍କଳ ସମ୍ମିଳନୀ' ଥିଲା ସେହି ଚେତନାର ଅଗ୍ରଦୂତ । 'ଉତ୍କଳ ସମ୍ମିଳନୀ' ମାଧ୍ୟମରେ ଓଡ଼ିଆଙ୍କ ମଧ୍ୟରେ ଜାତୀୟ ଭାବଭିତ୍ତି ପ୍ରତିଷ୍ଠା ସହିତ ସେ ଏକ ପୂର୍ଣ୍ଣାଙ୍ଗ ଉତ୍କଳ ଗଠନର ସ୍ୱପ୍ନ ଦେଖୁଥିଲେ । ଧନ, ଜ୍ଞାନ, ଯଶ, ବିଦ୍ୟା ତଥା ଶିଳ୍ପରେ ଉତ୍କଳର ଅଗ୍ରଗତି ତାଙ୍କର କାମ୍ୟ ଥିଲା । ଉତ୍କଳୀୟ ସମାଜର ମଙ୍ଗଳ ଓ କଲ୍ୟାଣ ତାଙ୍କ ଜୀବନର ଥିଲା ପରମ ବ୍ରତ । ସେଥିପାଇଁ ଉତ୍କଳ ଜନନୀର ପୂତ ପବିତ୍ର ଧୂଳିକଣାକୁ ମସ୍ତକରେ ଧାରଣ କରି ସମଗ୍ର ଉତ୍କଳର ସାମୂହିକ ଉନ୍ନତି ଚିନ୍ତା କରିବା ପାଇଁ ସେ ଓଡ଼ିଶାବାସୀଙ୍କୁ ଆହ୍ୱାନ ଦେଇଥିଲେ । ଫଳତଃ ଖଣ୍ଡିତ ଉତ୍କଳର ଖଣ୍ଡିତ ସୀମା ସରହଦ ପରିବର୍ତ୍ତେ ଏକ ପୂର୍ଣ୍ଣାଙ୍ଗ ଉତ୍କଳର ରୂପ ଦେଖିବାକୁ ସେ ଆଶାବାଦୀ ହୋଇପଡ଼ିଥିଲେ । ସ୍ରଷ୍ଟା ମାନସର ସେହି ଆଶାର ସାକାର ରୂପ ଥିଲା ୧୯୦୩ ମସିହାରେ କଟକଠାରେ ଆୟୋଜିତ 'ଉତ୍କଳ ସମ୍ମିଳନୀ' । ମଧୁସୂଦନ ଦେଶମାତୃକାର ଭାବନାରେ ଉତ୍କଳ ସମ୍ମିଳନୀର ଯୂପକାଠ ମଧ୍ୟରେ ନିଜକୁ ଝାସ ଦେଇ ଦେଶମାତୃକାର ସେବା ପ୍ରତ୍ୟେକ ଦେଶବାସୀଙ୍କ ହୃଦୟରେ ଅଙ୍କୁରିତ ହେବା ଉଚିତ ବୋଲି ଅନୁଭବ କରିଥିଲେ । କାରଣ ମାତା ଶିଶୁକୁ ଜନ୍ମନେଇ ହୁଏ ଜନନୀ । ଜନ୍ମଭୂମି ସେହି ରୂପରେ ହେଉଛି ଆମର ମାତା । ମାତାଠାରୁ ଜନ୍ମନେବା ପରେ ଆମେ ମାତୃଭୂମିର କୋଳରେ ପରିବର୍ଦ୍ଧିତ ହେବା ସଙ୍ଗେ ସଙ୍ଗେ ଏହାର ପାଣିପାଗକୁ ଆପଣାର କରିଥାଉଁ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତା'ର ପାଣି ପବନ ଆମ ରକ୍ତର ପ୍ରତ୍ୟେକ ଅଣୁ ପରମାଣୁରେ ଚଳପ୍ରଚଳ ହୋଇଥାଏ । ସୁତରାଂ ପ୍ରତ୍ୟେକ ଉତ୍କଳୀୟ ମାତୃଭୂମିର ସୁଖଦୁଃଖରେ ସାମିଲ ହେବା ସହିତ ମାତୃଭୂମିର ବନ୍ଦନା କରିବା ଏକାନ୍ତ ଆବଶ୍ୟକ । ତେଣୁ ସେ ଯଥାର୍ଥ ଭାବେ ତାଙ୍କର 'ସନ୍ତାନର ଉକ୍ତି' କବିତା ମଧ୍ୟରେ ଉଲ୍ଲେଖ କରିଛନ୍ତି -

ଜାତି ପ୍ରେମ-ବହ୍ନି     ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୂତି,
ସ୍ୱାର୍ଥମେଧ ଯଜ୍ଞ     ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି ।

ଏକତା ହିଁ ଜାତୀୟ ଉନ୍ନତିର ମୂଳଭିତ୍ତି । ଏକତା ନରହିଲେ ଜାତିର ଉନ୍ନତି ଅସମ୍ଭବ । ସେଥିପାଇଁ ସମଗ୍ର ଉତ୍କଳରେ ଜାତୀୟ ଏକତା ସୃଷ୍ଟି କରିବା ନିମିତ୍ତ କବି ଏକ କୋଟି ଓଡ଼ିଆଙ୍କୁ ଏକ ସ୍ୱରରେ ସ୍ୱର ମିଳାଇବା ପାଇଁ ଆହ୍ୱାନ ଦେଇ ସେହି 'ସନ୍ତାନର ଉକ୍ତି' କବିତା ମଧ୍ୟରେ କହିଛନ୍ତି -

କୋଟିଏ ସନ୍ତାନ     ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ ।

ଉଦାହରଣ ଭାବେ ସେ କୋଟି କୋଟି ଜଳ ବିନ୍ଦୁର ସମ୍ମିଶ୍ରଣରେ ଯେପରି ମହାସିନ୍ଧୁର ସୃଷ୍ଟି ସେହିପରି କୋଟି କୋଟି ଜନଗଣଙ୍କ ଏକତ୍ରିକରଣରେ ଏକ ସ୍ୱାଭିମାନ ଅଖଣ୍ଡ ଉତ୍କଳ ପୁନର୍ଗଠନ ହୋଇପାରିବ ବୋଲି ସେ ସଂପୂର୍ଣ୍ଣ ଆଶାବାଦୀ ହୋଇପଡ଼ିଛନ୍ତି ।

ନିଜର 'ଉତ୍କଳ ମାତା ଆବାହନ' ଶୀର୍ଷକ ବକ୍ତୃତା ମଧ୍ୟରେ କବି ଯଥାର୍ଥ ଭାବେ ଉଲ୍ଲେଖ କରିଛନ୍ତି - ପ୍ରଥମେ 'ଜନନୀ', ଦ୍ୱିତୀୟରେ 'ଜନ୍ମଭୂମି', ତୃତୀୟରେ 'ସ୍ୱର୍ଗ' । ମନୁଷ୍ୟ ଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ମନେକଲେ ଦେଖିବେ, ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି, ଶେଷରେ ସ୍ୱର୍ଗ, ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ ଜୀବନରେ ଆଦ୍ୟ ଜନନୀ, କାର୍ଯ୍ୟ ଜନ୍ମଭୂମି, ପୁରସ୍କାର ମୁକ୍ତି ବା ସ୍ୱର୍ଗ । ଏଥିପାଇଁ ଜନନୀ ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।' ପୁନଶ୍ଚ ୧୯୧୩ ମସିହା ମାର୍ଚ୍ଚ ମାସ ୭ ତାରିଖ ଦିନ ସମଗ୍ର ଭାରତବର୍ଷରେ 'ସବ୍-ପ୍ରୋଭିନ୍ସ' ଶବ୍ଦ ବ୍ୟବହୃତ ହେବାର ଯଥେଷ୍ଟ ପୂର୍ବରୁ ମଧୁସୂଦନ ଇମ୍ପେରିଆଲ୍ କାଉନ୍ସିଲ୍‌ରେ ଓଡ଼ିଶା ବିଷୟରେ ଭାଷଣ ଦେବା ଅବକାଶରେ ଓଡ଼ିଶାକୁ ପ୍ରଥମେ ଗୋଟିଏ 'ସବ୍-ପ୍ରୋଭିନ୍ସ' ଭାବେ ଅଭିହିତ କରିଥିଲେ । ମଧୁସୂଦନଙ୍କର ଏହି ଭାଷଣ ହିଁ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ କମିଟିର ମତାମତକୁ ଯଥେଷ୍ଟ ପ୍ରଭାବିତ କରିଥିଲା । ମଧୁସୂଦନ କାଉନ୍‌ସିଲ୍‌ରେ ଦେଇଥିବା ଭାଷଣ ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ - 'ଓଡ଼ିଶାର ପ୍ରାଚୀନ ଶିଳ୍ପ ଓ ସ୍ଥାପତ୍ୟରୁ ଓଡ଼ିଆ ଜାତିର କଳା ପ୍ରବଣତାର ନିଦର୍ଶନ ମିଳିଥାଏ । କିନ୍ତୁ ଦୁର୍ଭାଗ୍ୟର ବିଷୟ, ଯେଉଁ ହାତ ଦିନେ ଭୁବନେଶ୍ୱର ମନ୍ଦିର ଗାତ୍ରରେ ପଥର ଦେହରେ ସୁନ୍ଦର ଅନୁପମ ଲାବଣ୍ୟ ସୃଷ୍ଟି କରିପାରିଥିଲା, ତାହା ଆଜି ଦିନକୁ ଦୁଇଅଣା ମଜୁରୀରେ ହଳ ବୁଲାଉଛି । ସେ ଦିନର ହୃତ ଗୌରବର ପୁନରୁଦ୍ଧାର ପାଇଁ କ'ଣ କିଛି କରାଯାଇ ପାରିବ ନାହିଁ ?'

ମଧୁସୂଦନ ଥିଲେ ବିଂଶ ଶତକର ଉତ୍କଳୀୟ ପୁନର୍ଜାଗରଣର ଅଗ୍ର ସାରଥୀ ଓ ପଥିକୃତ ଶିଳ୍ପୀ । ଉତ୍କଳୀୟ ସ୍ୱାଭିମାନର ସେ ଯଥାର୍ଥ ପ୍ରତୀକ । ନିଜ ଉପରେ ତାଙ୍କର ଗଭୀର ଆତ୍ମବିଶ୍ୱାସ ଥିଲା । ପୁନଶ୍ଚ ଓଡ଼ିଆ ଜାତିର ସର୍ବାଙ୍ଗୀନ ଉନ୍ନତି ମୂଳରେ ସେ ଆମ ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥଙ୍କ ଆଶୀର୍ବାଦ ହିଁ କାମନା କରୁଥିଲେ । କଟକ ଟାଉନହଲଠାରେ ୧୯୨୮ ମସିହା ନଭେମ୍ବର ମାସ ୧୦ ତାରିଖ ଶନିବାର ଦିନ ତାଙ୍କରି ସଭାପତିତ୍ୱରେ ଯେଉଁ ସଭାର ଆୟୋଜନ କରାଯାଇଥିଲା, ସେଥିରେ ସେ ତାଙ୍କ ଅଭିଭାଷଣ ଶେଷରେ ସ୍ୱତଃ ଆବୃତ୍ତି କରିଥିଲେ-

ମା' ମା' ବୋଲି କେତେ ମୁଁ ଡାକିଲି
ନ ଶୁଣିଲି କଣ୍ଠସ୍ୱର,
ତୁଣ୍ଡ ଫିଟୁ ନାହିଁ ମୁଣ୍ଡ ହଲୁ ନାହିଁ
ନେତ୍ରୁବହେ ଅଶ୍ରୁ ଧାର ।

ଏହି କବିତା ରଚନା କାଳକୁ ସ୍ରଷ୍ଟା ମଧୁସୂଦନ ଜୀବନ ଅପରାହ୍ନରେ ଉପନୀତ । ଶିଳ୍ପ ବିକାଶରେ ଅଧୋଗତି ହେତୁ ସେ ଜଣେ ଅସଫଳ ଶିଳ୍ପପତି । ଚତୁର୍ଦ୍ଦିଗରୁ ଦୁର୍ଭାବନାଗୁଡ଼ାକ ତାଙ୍କୁ ବ୍ୟସ୍ତ ଓ ବିବ୍ରତ କରୁଥାନ୍ତି । ଏହି ଯନ୍ତ୍ରଣା ମଧ୍ୟରେ ସ୍ରଷ୍ଟା ପୁରୁଷ ତାଙ୍କୁ ତାଙ୍କ କବିତା ମଧ୍ୟରେ ଦୀନ ହୀନ ଭାବରେ ସ୍ୱୀକାର କରି ଦେଶବାସୀଙ୍କ ପାପ ହେତୁ ଉତ୍କଳ ଜନନୀର ଏପ୍ରକାର ଦୁରାବସ୍ଥା ବୋଲି ଉଲ୍ଲେଖ କରିଛନ୍ତି । ଏହି ଦୁର୍ଦ୍ଦିନରେ ସେ ଓଡ଼ିଶାର ଜାତୀୟ ଦେବତା ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ କାମନା କରି ଏକ କୋଟି ଜନତାଙ୍କୁ ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ ଧ୍ୟାନ କରିବାକୁ ନିବେଦନ କରିଛନ୍ତି । ନଚେତ୍ ଦେଶରୁ ଅନ୍ଧକାର ଦୂରୀଭୂତ ହେବନାହିଁ ବା ଜାତିର ଉନ୍ନତି ହୋଇପାରିବ ନାହିଁ ବୋଲି ତାଙ୍କର ଆଶଙ୍କା ସୃଷ୍ଟି ହୋଇଛି ।

ପୁନଶ୍ଚ ମଧୁସୂଦନ ତାଙ୍କ ସମକାଳରେ ଏ ଜାତିର ଦୁର୍ଦ୍ଦିନରେ ଦୁଃଖରେ ଭାଙ୍ଗିପଡ଼ିବା ସହିତ ଯେତେବେଳେ ଏକ କୋଟିରୁ ଉର୍ଦ୍ଧ୍ୱ ଓଡ଼ିଆଙ୍କଠାରୁ ଜାତିର ଉନ୍ନତି ସଂପର୍କରେ ପଦଟିଏ ବି ଶୁଣିପାରି ନାହାନ୍ତି, ସେତେବେଳେ ସେ ଉପାୟହୀନ ହୋଇ ବିଶ୍ୱପତିଙ୍କ ଉଦ୍ଦେଶ୍ୟରେ ନିଜର ଓ ଜାତିର ଦୁଃଖ ଜଣାଇଛନ୍ତି । ମାତାଙ୍କ ଗର୍ଭରେ ଥିଲାବେଳେ ଜନନୀ ଓ ଜନ୍ମଭୂମିର ସେବା କରିବା ପାଇଁ ସେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ଅନ୍ୟମାନଙ୍କ ଅସହଯୋଗ ହେତୁ ତାଙ୍କର ଯୌବନାବସ୍ଥା ବେଳକୁ ତାହା ମିଥ୍ୟାରେ ପରିଣତ ହୋଇଛି । ତାଙ୍କର ଆଶା ହିଁ ଆଶାରେ ରହିଯାଇଛି । ଜୀବନର ପରିଣତ ବୟସରେ ମଧ୍ୟ ସେ ମାତାଙ୍କର ସହାସ୍ୟ ବଦନ ଦେଖିପାରି ନାହାନ୍ତି । ଶେଷରେ ନିରାଶ ମଧ୍ୟରେ କବି କଣ୍ଠରୁ 'ଜଣାଣ' କବିତା ମଧ୍ୟରେ ବିଶ୍ୱମାନବ ଉଦ୍ଦେଶ୍ୟରେ ଅନ୍ତରାତ୍ମାରେ ଯେଉଁ ଦୁଃଖ ପ୍ରତିଧ୍ୱନିତ ହୋଇଛି ତାହା ହେଉଛି -

ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ-ମାତାର ସହାସ୍ୟ ବଦନ,
ସେ ଆଶା ତୁଟିଲା ସ୍ୱପନ ଭାଙ୍ଗିଲା
ନଦେଖି ଉତ୍କଳେ କରତବ୍ୟ ଜ୍ଞାନ ।

ଏହି ଅଳ୍ପ କେତେଗୋଟି (୮ ଗୋଟି) ହାତ ଗଣତି ଉଦ୍‌ବୋଧନୀ ଗୀତିକା ଓ କବିତା ବ୍ୟତୀତ ମଧୁସୂଦନ ଉତ୍କଳର ବହୁ ସ୍ଥାନରେ ଜାତି ଉଦ୍ଦେଶ୍ୟରେ ବିଭିନ୍ନ ଆଲୋଚନା ସଭାମାନଙ୍କରେ ପ୍ରଦାନ କରିଥିବା ଅଭିଭାଷଣଗୁଡ଼ିକ ମଧ୍ୟରୁ ଅଧିକାଂଶ ହେଉଛି ସାହିତ୍ୟ ପଦବାଚ୍ୟ । ଏ ସଂପର୍କରେ 'ଉତ୍କଳ ଗୌରବ ମଧୁସୂଦନ' (୧୯୫୧) ପୁସ୍ତକ ମଧ୍ୟରେ ସାହିତ୍ୟିକ ନବକିଶୋର ଦାସ ଉଲ୍ଲେଖ କରିଛନ୍ତି - 'ମଧୁସୂଦନଙ୍କ ଏହି ଭାଷଣଗୁଡ଼ିକ ଏକ ସ୍ୱତନ୍ତ୍ର ସାହିତ୍ୟ । ଏଗୁଡ଼ିକ ସରସ, ଭାବପୂର୍ଣ୍ଣ ଓ ସ୍ପନ୍ଦନମୟୀ । ଭାଷଣଗୁଡ଼ିକର ଭାଷା ଅତି ପ୍ରାଣସ୍ପର୍ଶୀ । ଏଗୁଡ଼ିକ ନାନା ବିଷୟରେ ପ୍ରଦତ୍ତ ।' (ପୃ.୧୨୩) ମଧୁସୂଦନଙ୍କର ଏହିସବୁ ଅଭିଭାଷଣ ମଧ୍ୟରେ ସାହିତ୍ୟିକ ମର୍ଯ୍ୟାଦା ଲାଭ କରିଥିବା ବିଷୟଗୁଡ଼ିକ ହେଲା- 'ଓଡ଼ିଆ ବକ୍ତୃତା', 'ଉତ୍କଳ ସମ୍ମିଳନୀର ଏକ ପ୍ରସ୍ତାବ', 'ସମ୍ବଲପୁର ମିଶ୍ରଣର ଆନନ୍ଦ ପ୍ରକାଶ', 'ସଭାପତିଙ୍କ ଅଭିଭାଷଣ', 'ସତ୍ୟବାଦୀ ବିଦ୍ୟାଳୟ', 'ମାନ୍ଦ୍ରାଜର ଓଡ଼ିଶାଞ୍ଚଳ ମିଶ୍ରଣ', 'ୟୁରୋପୀୟ ପ୍ରଥମ ମହାଯୁଦ୍ଧ', 'ଉତ୍କଳମାତା ଆବାହନ', 'ଉତ୍କଳ ସମ୍ମିଳନୀର

ଉଦ୍ଦେଶ୍ୟ', 'ଗୌରୀଶଙ୍କର' ପ୍ରଭୃତି । ସ୍ରଷ୍ଟାଙ୍କର ଏହି ବକ୍ତୃତାଗୁଡ଼ିକ ମଧ୍ୟରୁ ଅଧିକାଂଶ ଜାତି ଉଦ୍ଦେଶ୍ୟରେ ୧୯୦୩ ମସିହାଠାରୁ ୧୯୧୯ ମସିହା ପର୍ଯ୍ୟନ୍ତ ବିଭିନ୍ନ କାଳରେ ରଚିତ ଓ ପ୍ରକାଶିତ ।

ଉତ୍କଳ ସମ୍ମିଳନୀ ଗଠନ ହେବା ପୂର୍ବରୁ ମଧୁସୂଦନ 'ଉତ୍କଳ ସମ୍ମିଳନୀ'ର ଉଦ୍ଦେଶ୍ୟ ବୁଝାଇବାକୁ ଯାଇ କଟକର କନିକା ରାଜବାଟୀରେ ୧୯୦୩ ମସିହା ଅକ୍ଟୋବର ୨୫ ତାରିଖରେ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ, ତାହା ମୁଖ୍ୟତଃ ଆମ ଜାତି ଉଦ୍ଦେଶ୍ୟରେ ଅଭିପ୍ରେତ ଥିଲା । ଏହି ବକ୍ତୃତାର ଶିରୋନାମା ଥିଲା 'ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ' । ଏଥିରେ ସ୍ରଷ୍ଟା ଜାତି, ରାଷ୍ଟ୍ର ଏବଂ ଉତ୍କଳୀୟତାର ସ୍ୱରୂପ ବିଶ୍ଲେଷଣ କରି ଭାରତବର୍ଷ ପରି ଏକ ବିରାଟ ଭୂଖଣ୍ଡରେ ଭିନ୍ନତା ମଧ୍ୟରେ ଏକତା ସୃଷ୍ଟି ନିମିତ୍ତ ଉତ୍କଳ ସମ୍ମିଳନୀ ପରି ଏକ ଜାତୀୟ ଅନୁଷ୍ଠାନର ଆବଶ୍ୟକତା ଅନୁଭବ କରିଛନ୍ତି । ୧୯୦୪ ମସିହା ଡିସେମ୍ବର ମାସ ୨୮ ତାରିଖରେ ମଧୁସୂଦନ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ କଟକଠାରେ 'ଉତ୍କଳ ସମ୍ମିଳନୀର ଏକ ପ୍ରସ୍ତାବ' ଶୀର୍ଷକ ଅଭିଭାଷଣରେ ଉପସ୍ଥିତ ଉତ୍କଳୀୟଙ୍କୁ ପ୍ରଶ୍ନ କରିଛନ୍ତି - 'ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି ?' କାରଣ ସେ ଅନୁଭବ କରିଛନ୍ତି ଜାତି ଜାତି ମଧ୍ୟରେ ଭାବର ଆଦାନପ୍ରଦାନ ପାଇଁ ଜାତୀୟ ଜୀବନର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ । ସେ ଲକ୍ଷ୍ୟ କରିଛନ୍ତି - ଆମ ଶରୀର ମଧ୍ୟରେ ଯେଉଁ ଜୀବନ ରହିଛି ତାହା ସଂପୂର୍ଣ୍ଣ ବ୍ୟକ୍ତିଗତ । 'ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ, ତାହା କାଲି ଶ୍ମଶାନରେ ଶେଷ ହେବ । ଶରୀର ଅଭ୍ୟନ୍ତରରେ ଯେଉଁ ଆତ୍ମା ବିଦ୍ୟମାନ, ତାହା ଈଶ୍ୱରଙ୍କ ନିକଟରେ ପହୁଞ୍ଚିବ । ତଳେ ପାର୍ଥିବ ଜୀବନର ଆକର୍ଷଣ ଶକ୍ତି ଅର୍ଥାତ୍ ମୋର ସ୍ତ୍ରୀ, ମୋର ଅପତ୍ୟ, ମୋର ସମ୍ପତ୍ତି ଏବଂ ଭୂତ ପାର୍ଥିବ ଭାବଗୁଡ଼ିକ ମୋତେ ପ୍ରତିକ୍ଷଣ ତଳକୁ ଓଟାରୁଅଛି । ଉପରେ ସ୍ୱର୍ଗୀୟ ଜୀବନର ଆକର୍ଷଣ ଶକ୍ତି ଅର୍ଥାତ୍ ମୋର ପରିତ୍ରାଣ, ମୋର ଅନନ୍ତ ବିଶ୍ରାମ ସ୍ଥାନ ମୋତେ ସର୍ବଦା ଉପରକୁ ଟାଣୁଅଛି ।' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ.୧୨) ମାତ୍ର ଜାତୀୟ ଜୀବନ ଏହାଠାରୁ ଭିନ୍ନ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ଜାତି ଜାତି ମଧ୍ୟରେ ସଦ୍‌ଭାବ ବୃଦ୍ଧି ହେବ, କାହା ମଧ୍ୟରେ ବ୍ୟକ୍ତିଗତ ଅସୂୟାବୋଧ ରହିବ ନାହିଁ । କିନ୍ତୁ ବ୍ୟକ୍ତି ଯେତେବେଳ ପର୍ଯ୍ୟନ୍ତ ଜୀବନକୁ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିବାକୁ ଶିକ୍ଷାଲାଭ କରିନାହିଁ, ସେତେବେଳ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଜାଣିବାକୁ ହେବ । ଉଦାହରଣ ଭାବେ ଉତ୍କଳ ଜନନୀ ଓ ଭାରତ ଜନନୀ ପ୍ରସଙ୍ଗ ସେ ଉତ୍‌ଥାପନ କରିଛନ୍ତି । ଉତ୍କଳୀୟ ଜାତୀୟତାବୋଧକୁ ସୀମିତ ପରିସର ମଧ୍ୟରେ ଆବଦ୍ଧ ନକରି ତାହାକୁ ସେହି ପରିପ୍ରେକ୍ଷୀରେ ମହାଭାରତୀୟ ଜାତୀୟତାବୋଧ ମଧ୍ୟରେ ସେ ରୂପାନ୍ତରିତ କରି ଦେଇଛନ୍ତି । ତେଣୁ ଉତ୍କଳ ଜନନୀକୁ ସେ ଭାରତ ଜନନୀଙ୍କ ସପତ୍ନୀ ଭାବରେ ଗ୍ରହଣ ନକରି ଉତ୍କଳ ସମେତ ଅନ୍ୟାନ୍ୟ ପ୍ରଦେଶମାନଙ୍କୁ ଭାରତ ଜନନୀଙ୍କର ଏକାଧିକ ଶିଶୁପୁତ୍ର ଭାବେ ଗ୍ରହଣ କରିଛନ୍ତି ଏବଂ ଏହି ଶିଶୁପୁତ୍ରମାନଙ୍କ ସହଯୋଗରେ ଭାରତ ଜନନୀର ଦୁଃଖ ଲାଘବ ହେବ ବୋଲି ସେ ଆଶାବାଦୀ ହୋଇଛନ୍ତି ।

ପୁରୀଠାରେ ୧୯୦୮ ମସିହାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନରେ ମଧୁସୂଦନ 'ଉତ୍କଳ ସମ୍ମିଳନୀର ଶାଖା ସ୍ୱରୂପ ଗ୍ରାମ୍ୟ ସମିତି ଗଠନ' ଶିରୋନାମାରେ ଦେଇଥିବା ଅଭିଭାଷଣରେ ଉତ୍କଳ ଜନନୀ ଓ ଭାରତ ଜନନୀ ମଧ୍ୟରେ କୌଣସି ପ୍ରଭେଦ ଲକ୍ଷ୍ୟ କରିନାହାନ୍ତି । ଉତ୍କଳୀୟ ଚେତନା ମଧ୍ୟରେ ମହାଭାରତୀୟ ଚେତନାକୁ ଏକତ୍ର କରି ସେ ଉଲ୍ଲେଖ କରିଛନ୍ତି - 'ଉତ୍କଳ-ଜନନୀ ଓ ଭାରତ-ଜନନୀଙ୍କର କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ, ସେହି ଅଂଶର ଚିକିତ୍ସା କରିବାକୁ ହେବ । କିନ୍ତୁ ଏହି ଅଂଶବିଶେଷର ଚିକିତ୍ସା ଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ।' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ-୨୧) ।

୧୯୧୩ ମସିହାରେ ପୁରୀଠାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ନବମ ଅଧିବେଶନରେ ମଧୁସୂଦନ ଅନ୍ୟାନ୍ୟ ଜାତୀୟ ପ୍ରସଙ୍ଗ ଉତ୍‌ଥାପନ ମଧ୍ୟରେ ଉତ୍କଳରେ ନାରୀଶିକ୍ଷା ସଂପର୍କରେ ଆଲୋକପାତ କରିଛନ୍ତି । ସମାଜରେ ପୁରୁଷଟିଏ ଶିକ୍ଷିତ ହେଲେ ବ୍ୟକ୍ତିଟିଏ ଶିକ୍ଷିତ ହୁଏ, ମାତ୍ର ନାରୀଟିଏ ଶିକ୍ଷିତା ହେଲେ ସେ ସମଗ୍ର ପରିବାରକୁ ଶିକ୍ଷାଲୋକରେ ଉଦ୍‌ଭାସିତ କରିବା ପାଇଁ ପ୍ରୟାସୀ ହୁଏ ଏବଂ ଏହା ଫଳରେ ଦେଶରୁ ଅଶିକ୍ଷା ରୂପୀ ଅନ୍ଧକାର ଦୂରୀଭୂତ ହୁଏ । ମଧୁସୂଦନ ଦାସ ତାଙ୍କ ସମୟରେ ଆମ ଦେଶର ନାରୀ ସମାଜକୁ ଶିକ୍ଷିତା କରିବାକୁ ପ୍ରଚେଷ୍ଟା କରି ଜନସାଧାରଣଙ୍କ ମଧ୍ୟରେ ସଚେତନ ଭାବ ସୃଷ୍ଟି କରିଛନ୍ତି । ଏହି ସମ୍ମିଳନୀର ସଭାପତି ଅଭିଭାଷଣ ପ୍ରସଙ୍ଗରେ ସେ ଉଲ୍ଲେଖ କରିଛନ୍ତି - 'କୌଣସି ଜାତି ସେ ଜାତିର ମାତାମାନଙ୍କୁ ଅର୍ଥାତ୍ ନାରୀ ଜାତିକୁ ନୀଚ ଅବସ୍ଥାରେ ରଖି, ଉଚ୍ଚ ଉନ୍ନତ ଅବସ୍ଥାକୁ ଉଠି ନପାରେ । ଆମ୍ଭ ଦେଶରେ ଅନେକ ସଞ୍ଚିତ ଧନକୁ ରକ୍ଷା କରିବା ନିମନ୍ତେ ସ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରନ୍ତି । ଏହି ସଞ୍ଚିତ ଧନ ସ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରିବାର ଉଦ୍ଦେଶ୍ୟ ହେଉଅଛି ଏହି ଯେ ସେମାନଙ୍କ ହାତରେ ଥିଲେ, ସନ୍ତାନମାନେ ନିର୍ବିଘ୍ନରେ ତାହା ପାଇପାରିବେ ।' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ.୪୧) ପୁନଶ୍ଚ ଓ ପର୍ଯ୍ୟାୟରେ ଦୃଷ୍ଟାନ୍ତ ସ୍ୱରୂପ ସେ ଭାରତୀୟ ଜନପ୍ରିୟ ପୁରାଣ ରାମାୟଣ ଓ ମହାଭାରତରୁ ନାରୀ ଚରିତ୍ରଙ୍କୁ ଗ୍ରହଣ କରିଛନ୍ତି । ଏତଦ୍‌ବ୍ୟତୀତ ଇଂଲଣ୍ଡର ଉନ୍ନତି କଥା ଦୃଷ୍ଟାନ୍ତ ଭାବେ ଗ୍ରହଣ କରି କହିଛନ୍ତି - 'ଇଂଲଣ୍ଡ ବର୍ତ୍ତମାନ ଯୁଗରେ ଯେଉଁ ଖ୍ୟାତିଲାଭ କରିଅଛି ଓ ଯେ ପ୍ରକାର ଇଂଲଣ୍ଡର ରାଜ୍ୟ ବିସ୍ତାର ହୋଇଅଛି, ତାହା ସେ ଦେଶର ଦୁଇଜଣ ରାଣୀ ଏଲିଜାବେଥ ଓ ଭିକ୍ଟୋରିଆଙ୍କ ଦ୍ୱାରା ହୋଇଅଛି ।' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ.୪୧)

୧୯୧୮ ମସିହାରେ ସମ୍ମିଳନୀର କଟକ ଅଧିବେଶନରେ ମଧୁସୂଦନ କୃଷିଜୀବୀ ଉତ୍କଳୀୟଙ୍କ ସାମୂହିକ ଉନ୍ନତ ନିମିତ୍ତ ଆଶାନ୍ୱିତ ଆହ୍ୱାନ ଦେଇଛନ୍ତି । ସେ ଅନୁଭବ କରିଛନ୍ତି ଓଡ଼ିଶାରେ କୃଷକ ସଂଖ୍ୟା ଅଧିକ । ମାତ୍ର ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ଉତ୍କଳ ଦୈନ୍ୟ । ସୁତରାଂ ଓଡ଼ିଶାର ଉନ୍ନତି ହିଁ କୃଷିର ଉନ୍ନତି । ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଏହି ଜାତିକୁ ଉଠାଇବା । ମଧୁସୂଦନ ଅନୁଭବ କରିଛନ୍ତି- ଓଡ଼ିଆ

ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ, ତେଣୁ ସେମାନଙ୍କର ଉନ୍ନତି ନହେଲେ ଦେଶର ଆଉ କି ଉନ୍ନତି ? ସେମାନେ ଭୂମି କର୍ଷଣ କରି ଆମ୍ଭମାନଙ୍କୁ ଧାନ ଚାଉଳ ଦେଉଛନ୍ତି । ସେମାନେ ହିଁ ଉତ୍କଳ ମାତାଙ୍କର ପ୍ରଧାନ ସେବକ । ସେମାନଙ୍କୁ ଉତ୍କଳ ଜନନୀ ସ୍ତନ୍ୟପାନ କରାନ୍ତି । ଆମ୍ଭମାନଙ୍କର ଦେଶର ରାଜା, ଜମିଦାରଗଣ ଶରୀରର ବକ୍ଷ ପରି । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ଶିରା ପ୍ରଶିରାରୁ ବକ୍ଷକୁ ରକ୍ତ ଯାଏ । ବକ୍ଷ ରକ୍ତ ପରିଷ୍କାର କରି ଶରୀରର ନାନା ସ୍ଥାନକୁ ପ୍ରେରଣ କଲେ ଅଙ୍ଗପ୍ରତ୍ୟଙ୍ଗ ସବଳ ସତେଜ ହୁଅନ୍ତି । ପ୍ରଜାଗଣ ଅଙ୍ଗପ୍ରତ୍ୟଙ୍ଗ ପରି । ସେମାନଙ୍କ ଉପାର୍ଜିତ ଶକ୍ତି ରକ୍ତ ସ୍ୱରୂପ ଜମିଦାର ଖମାରରେ ପ୍ରବେଶ କରୁଅଛି । ଜମିଦାର ଯଦି ସେସବୁ ନିର୍ମଳ କରି ପ୍ରଜାମାନଙ୍କ ମଧ୍ୟରେ ସେମାନଙ୍କ ଉନ୍ନତି ସାଧନରେ ବ୍ୟୟ କରନ୍ତି, ସମାଜର ଶରୀର ସୁସ୍ଥ ଅବସ୍ଥାରେ ରହିବ ।' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ.୫୭)

ଏହି ପର୍ଯ୍ୟାୟରେ ସ୍ରଷ୍ଟା ପ୍ରାଚୀନ ଓଡ଼ିଶାର କଳା ନୈପୁଣ୍ୟ ଓ ଶିଳ୍ପ ଭାସ୍କର୍ଯ୍ୟ ସଂପର୍କରେ ସମକାଳୀନ ଓଡ଼ିଆମାନଙ୍କୁ ସଚେତନ କରି ପୁଣି ଉଲ୍ଲେଖ କରିଛନ୍ତି - 'ଆମ ଦେଶରେ ଧନ କମ୍ ଅଛି ବୋଲି ଲୋକେ କହନ୍ତି ଓଡ଼ିଶା ଗରିବ । ମୁଁ କହେ କଦାଚ ନୁହେଁ । ବର୍ତ୍ତମାନ କଲିକତା, ନାଗପୁର ଇତ୍ୟାଦି ସ୍ଥାନର କଳକାରଖାନାମାନଙ୍କ ମଧ୍ୟରେ ଲକ୍ଷ ଲକ୍ଷ ଓଡ଼ିଆ କାମ କରୁଅଛନ୍ତି । ଏହାର ଅର୍ଥ-ଓଡ଼ିଆର ହାତର ମୂଲ୍ୟ ଅଛି । ସେଠାରେ ଯେ ଦୈନିକ ଟଙ୍କା ନ ଆଦାୟ କରିବ ଏଠାକୁ ଆସିଲେ ଦଶ ପଇସା ମାତ୍ର ପାଇବ । ଆମେ କ'ଣ ତାଙ୍କୁ କାର୍ଯ୍ୟ ଦେଇପାରିବା ?' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ.୫୯) ସୁତରାଂ ସେ କଳାପ୍ରିୟ ପ୍ରବାସୀ ଓଡ଼ିଆମାନଙ୍କୁ ଅନୁରୋଧ କରିଛନ୍ତି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ, ନଚେତ୍ ବିଦେଶୀ ବଣିକମାନେ ଓ ଜାତିକୁ ସବୁଦିନ ଲାଗି ଏହିପରି ଶୋଷଣ କରି ଲାଭ ଖାଇ ଚାଲିଥିବେ ବୋଲି ସେ ଆଶଙ୍କା ପ୍ରକାଶ କରିଛନ୍ତି ।

୧୯୧୯ରେ ରାୟ ବାହାଦୂର ଗୌରୀଶଙ୍କରଙ୍କ ପରଲୋକ ଗମନ ପରେ ଉତ୍କଳ ସମ୍ମିଳନୀର ଅନ୍ୟ ଏକ ଅଧିବେଶନରେ ବକ୍ତୃତା ପ୍ରଦାନ କରି ମଧୁସୂଦନ ସମଗ୍ର ଭାରତବର୍ଷରେ ମହାଭାରତୀୟ ଚେତନା ସୃଷ୍ଟି ସହିତ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ପ୍ରତିଷ୍ଠା କରିବା ପାଇଁ ପ୍ରୟାସୀ ହୋଇ ଉଭୟ ସଂପ୍ରଦାୟକୁ ଗୋଟିଏ ମାତାର ଦୁଇଟି ସନ୍ତାନ ଭାବେ ପରିକଳ୍ପନା କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି - 'ମୁସଲମାନମାନେ ଚିରକାଳ ନିମିତ୍ତ ଭାରତବର୍ଷରେ ରହିବାରୁ ହିନ୍ଦୁଙ୍କର ଭାଇ ସ୍ୱରୂପ ହୋଇଛନ୍ତି । ଏକ ରାଜ୍ୟ ଅଧୀନରେ ଏକ ନିୟମରେ ଚାଳିତ ହେଉଥିବାରୁ ସାଧାରଣରେ କିଛି ପ୍ରଭେଦ ନାହିଁ । ହିନ୍ଦୁର ଯାହା ଅଭାବ, ମୁସଲମାନମାନଙ୍କର ମଧ୍ୟ ତାହା ଅଭାବ । ଅତଏବ କୌଣସି ଅଭାବ ଦୂର କରିବା ନିମିତ୍ତ ସମସ୍ତଙ୍କୁ ମିଳିମିଶି କାର୍ଯ୍ୟ କରିବାକୁ ହେବ ।' (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ, ପୃ.୬୪)

ଓଡ଼ିଆ ବକ୍ତୃତା ବ୍ୟତୀତ ଆମ ଜାତି ଗଠନ ନିମିତ୍ତ ମଧୁସୂଦନଙ୍କ ଇଂରାଜୀ ଭାଷଣଗୁଡ଼ିକ ମଧ୍ୟରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ତାଙ୍କ ରଚିତ କବିତାବଳୀ ଓ ଅଭିଭାଷଣଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜାତି ଓ ଦେଶର ବିକାଶ ଦିଗରେ ସହାୟକ ହେବା, ଉତ୍କଳୀୟ ଜନଗଣଙ୍କୁ ଜାତୀୟତା ସଂପର୍କରେ ଶିକ୍ଷା ଦେବା ଓ ଦେଶର ଉନ୍ନତିର ମାର୍ଗ ଉନ୍ମୁକ୍ତ କରିବା । ମଧୁସୂଦନଙ୍କ କବିତା ଓ ବକ୍ତୃତାର ଭାଷା ଥିଲା ଖୁବ୍ ସରଳ, ସାବଲୀଳ ଏବଂ ସର୍ବଜନବୋଧ । ତାଙ୍କ କବିତାର ସରଳ ଭାଷା ମାଧ୍ୟମରେ କବି ମଧୁସୂଦନ ଦାସ ଅଗଣିତ ଉତ୍କଳୀୟ ଜନସାଧାରଣଙ୍କ ମନୋଭୂମିକୁ ସ୍ପର୍ଶ କରିବାକୁ ପ୍ରୟାସୀ ହୋଇଥିଲେ ଓ ସେଥିରେ ସେ ବହୁ ପରିମାଣରେ ସଫଳ ହୋଇଥିଲେ । ମଧୁସୂଦନଙ୍କ ବକ୍ତୃତାର ଭାଷା ଥିଲା ସାହିତ୍ୟିକ, ଚିତ୍ତାକର୍ଷକ ଏବଂ ଅତ୍ୟନ୍ତ ଉପାଦେୟ ।

ସୁତରାଂ ପରିମାଣାତ୍ମକ ଦୃଷ୍ଟିରୁ ସ୍ୱଳ୍ପ ହେଲେ ହେଁ ମଧୁସୂଦନ ଦାସଙ୍କ ସୃଷ୍ଟି ସର୍ଜନା ଗୁଣାତ୍ମକ ଦୃଷ୍ଟିରୁ ଥିଲା ଖୁବ୍ ଉଚ୍ଚରେ । ବିଂଶ ଶତକର ଆଦିକାଳରେ ରଚିତ ତାଙ୍କ କବିତାବଳୀ ଓ ଅଭିଭାଷଣଗୁଡ଼ିକ ଏ ଜାତି ଜନତାଙ୍କ ପ୍ରଗତି ପଥରେ ଥିଲା କୀର୍ତ୍ତିସ୍ତମ୍ଭ ସ୍ୱରୂପ । ସମସ୍ତ ଉତ୍କଳର ଜାତୀୟ ଜୀବନ ଗଠନ ସହିତ ଓଡ଼ିଶାବାସୀଙ୍କୁ ନବ ଉତ୍କଳର ସ୍ୱପ୍ନ ଦେଖାଇବାରେ ତାଙ୍କର ସେହି ସୃଷ୍ଟି ମାନସ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ମାତ୍ର ଅଦ୍ୟାବଧି ତାଙ୍କ ସାହିତ୍ୟର ଯଥାର୍ଥ ମୂଲ୍ୟାୟନ ହୋଇନାହିଁ । ଏହି ପ୍ରବନ୍ଧ ତାଙ୍କ ସୃଷ୍ଟି ମୂଲ୍ୟାଙ୍କନର ପ୍ରାରମ୍ଭିକ ପ୍ରୟାସ ମାତ୍ର । ଆଶା, ଆଗାମୀ ଦିନରେ ତାଙ୍କ ସୃଷ୍ଟିର ପୂର୍ଣ୍ଣାଙ୍ଗ ବିଶ୍ଳେଷଣ ଦିଗରେ ଆଲୋଚକ ଓ ଗବେଷକଙ୍କ ପାଇଁ ପ୍ରବନ୍ଧଟି ସହାୟକ ହେବ ।

**ସହାୟକ ଗ୍ରନ୍ଥସୂଚୀ :**


୧. ଦାସ, ନବକିଶୋର - ଉତ୍କଳ ଗୌରବ ମଧୁସୂଦନ (୧୯୫୧), ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ

୨. କୋଣାର୍କ (ଉତ୍କଳ ସୁବର୍ଣ୍ଣ ଜୟନ୍ତୀ ବିଶେଷାଙ୍କ), ୫୯ତମ ସଂଖ୍ୟା, ଏପ୍ରିଲ ୧, ୧୯୮୬, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

୩. ମହାନ୍ତି, ସୁରେନ୍ଦ୍ର - ମଧୁସୂଦନ ଦାସ (୧୯୯୨), ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-୫, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-୧୬

୪. ଦାସ, ନବକିଶୋର - ଜାତୀୟ ଗୌରବ ମଧୁସୂଦନ (୧୯୯୫) ବିଦ୍ୟାପୁରୀ, କଟକ-୨

୫. ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ (୧୯୯୭) - ମଧୁସ୍ମୃତି କମିଟି ସତ୍ୟଭାମାପୁର, କଟକ

୬. ମଧୁ-ସ୍ମରଣିକା (୧୯୯୯) - ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ



ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର

# ସ୍ୱାଧୀନତା ସଂଗ୍ରାମର ଅନନ୍ୟ ପ୍ରତିଭା ମାଳତୀ ଚୌଧୁରୀ

କିଶୋର ସ୍ୱାଇଁ (ଉଷସ୍ତି)

**ମା**ଳତୀ ଦେବୀ ୧୯୦୪ ମସିହା ଜୁଲାଇ ୨୬ ତାରିଖରେ ଏକ ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ଅଢ଼େଇ ବର୍ଷ ବୟସରେ ସେ ନିଜର ପିତା ବାରିଷ୍ଟର କୁମୁଦ ନାଥ ସେନ୍‌ଙ୍କୁ ହରାଇଥିଲେ । ତାଙ୍କର ବାଲ୍ୟ ଜୀବନ ମାତା ସ୍ନେହଲତା ସେନ୍‌ଙ୍କ ଯତ୍ନରେ ଅତିବାହିତ ହୋଇଥିଲା । ମାଳତୀ ଦେବୀଙ୍କ ପରିବାର ମୂଳତଃ ଢାକାସ୍ଥିତ ବିକ୍ରମପୁର ଅଞ୍ଚଳର କମରଖଣ୍ଡ ଗ୍ରାମର (ବର୍ତ୍ତମାନ ବଙ୍ଗଳା ଦେଶ ଅନ୍ତର୍ଭୁକ୍ତ) ଅଧିବାସୀ ଥିଲେ । କିନ୍ତୁ ପରିବାରର ସଦସ୍ୟମାନେ ବିହାରର ସିମୁଲତାଲାଠାରେ ବସବାସ କରୁଥିଲେ । ସ୍ନେହଲତାଙ୍କ ବାପା ବେହାରିଲାଲ ଗୁପ୍ତା ଆଇ.ସି.ଏସ୍. ଥିଲେ । ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟ ସଚିବ ରଣଜିତ୍ ଗୁପ୍ତା, ମଧ ଜଣେ ଆଇ.ସି.ଏସ୍. ଓ ମାଳତୀଙ୍କ ଦାଦା ପୁଅ ଭାଇ ଥିଲେ । ଭାରତୀୟ ରାଜସ୍ୱ ସେବାର ପୂର୍ବତନ ଇନ୍‌କମ୍ ଟାକ୍ସ କମିଶନର ପି.କେ. ସେନଗୁପ୍ତା ମାଳତୀଙ୍କ ବଡ଼ଭାଇ ଥିଲେ । ଅନ୍ୟ ଜଣେ ଭାଇ କେ.ପି. ସେନ୍ ଭାରତୀୟ ଡାକ ସେବାର ପୂର୍ବତନ ପୋଷ୍ଟମାଷ୍ଟର ଜେନେରାଲ ମଧ ଥିଲେ । ପରିବାର ସର୍ବ କନିଷ୍ଠ ଯୋଗୁଁ ମାଳତୀ ସମସ୍ତଙ୍କ ନିକଟରେ ଅତିପ୍ରିୟ ଥିଲେ । ତାଙ୍କର ମାଆ ସ୍ନେହଲତା ଜଣେ ସୁଲେଖିକା ଥିଲେ । ତାଙ୍କ ରଚିତ ପୁସ୍ତକ 'ଯୁଗଳାଞ୍ଜଳୀ'ରେ ଟାଗୋରଙ୍କ କେତେକ ସୃଷ୍ଟିକୁ ସେ ଅନୁବାଦ କରିଥିବାର ଜଣାଯାଏ ।



ଏଭଳି ଏକ ପାଶ୍ଚାତୀକରଣ ତଥା ସମ୍ଭ୍ରାନ୍ତ ପରିବାରରୁ ଆସିଥିବା ମାଳତୀ ଦେବୀଙ୍କ ଅତି ସାଧାରଣ ଓ ଭିନ୍ନ ଶୈଳୀର ଜୀବନଯାପନକୁ ସହଜରେ କେହି ବିଶ୍ୱାସ କରିବେ ନାହିଁ । 'Reminiscences of Santiniketan' - ଶୀର୍ଷକ ଏକ ଲେଖାରେ ତାଙ୍କ ମାଆ ଲେଖିଛନ୍ତି - 'ବିଶ୍ୱଭାରତୀର ଆବାସିକ ଛାତ୍ରୀ ଜୀବନରେ ମାଳତୀ ବେଶ୍ ସୁଖୀ ଓ ବହୁ ହିତ ଉପଦେଶର ଅଧିକାରିଣୀ ହୋଇପାରିଥିଲା । ଗୁରୁଦେବ ରବୀନ୍ଦ୍ର ନାଥଙ୍କ ଉଚ୍ଚକୋଟୀର ଶିକ୍ଷାଦାନ, ଦେଶଭକ୍ତି, ଆଦର୍ଶବାଦ ଓ ବ୍ୟକ୍ତିଗତ ପ୍ରଭାବ ମାଳତୀର ଜୀବନଧାରାରେ ପଥପ୍ରଦର୍ଶକ ହୋଇଥିଲା ।' ଉଭୟ ଟାଗୋର ଓ ଗାନ୍ଧୀଙ୍କ ଗଭୀର ପ୍ରଭାବ ଯୋଗୁଁ ସେ ଅତ୍ୟନ୍ତ ଭାଗ୍ୟଶାଳୀ ଥିଲେ । ଟାଗୋରଙ୍କ ପାଦତଳେ ବସି ଉତ୍କର୍ଷ ତଥା ଦୁର୍ଲଭ ଶିକ୍ଷାର ମୂଳନୀତି, ସାମାଜିକ ଉନ୍ନୟନ, କଳା ଓ ସଂସ୍କୃତି ସଂପର୍କରେ ସେ ଶିକ୍ଷା ଆହରଣ କରିଥିଲେ ଯାହାକି ପରବର୍ତ୍ତୀ ସମୟରେ ତାଙ୍କ ଜୀବନରେ ନୀତିପୂର୍ଣ୍ଣ ମାର୍ଗଦର୍ଶକ ହୋଇପାରିଥିଲା । ଏତଦ୍‌ବ୍ୟତୀତ ଗାନ୍ଧିଜୀଙ୍କ ମନ୍ତ୍ରମୁଗ୍ଧ ପ୍ରେରଣା ତାଙ୍କୁ ଏଭଳି ବଶୀଭୂତ କରିଥିଲା ଯେ ଗାନ୍ଧିଜୀଙ୍କ ଆହ୍ୱାନରେ ସେ ଅବିଳମ୍ବେ ସ୍ୱାଧୀନତା ସଂଗ୍ରାମକୁ ଲମ୍ଫ ପ୍ରଦାନ କରିଥିଲେ ।

ମାଳତୀ ୧୯୨୧ ମସିହାରେ ମାତ୍ର ୧୬ ବର୍ଷ ବୟସରେ ଶାନ୍ତି ନିକେତନକୁ ଆସିଥିଲେ ଏବଂ ମାତ୍ର ୬ ବର୍ଷ ସେଠାରେ ରହିଥିଲେ । ସେତେବେଳେ ଶାନ୍ତିନିକେତନର ପରିସର କ୍ଷୁଦ୍ର ଥିଲେ ବି ପରିବେଶ ବେଶ୍ ସୁନ୍ଦର ଥିଲା । ସମବୟସ୍କ ୯ ଜଣ ବାଳିକା ନୋତୁନ ବାରୀ (ନୂଆ ଘର) ନାମକ ଛାତ୍ରୀ ନିବାସରେ ରହୁଥିଲେ । ଏହି ଝିଅମାନେ ହେଲେ ମଞ୍ଜୁଶ୍ରୀ, ସୁରେଖା (ପରେ ନିଜର ଭାଉଜ ହୋଇଥିଲେ), ଇଭା, ସତ୍ୟବତୀ, ଲତିକା, ସରଜୁ, ତାପସୀ, ଅମିତା, (ପ୍ରଫେସର ଅପର୍ତ୍ତ୍ୟ ସେନଙ୍କ ମାଆ) । ମୁକ୍ତ ଆକାଶ ତଳେ ଗଛମୂଳେ ପାଠ ପଢ଼ା ଯାଇଥିଲା । ପାଠପଢ଼ା ସହ ସିଲେଇ ଶିକ୍ଷା, ହସ୍ତଶିଳ୍ପ, ସଂଗୀତ, ନୃତ୍ୟ, ଚିତ୍ରକଳା ଏବଂ ଉଦ୍ୟାନ କର୍ମ ମଧ କରୁଥିଲେ ।

ସୁରୁଲଠାରେ ଥିବା ଶ୍ରୀନିକେତନର କୃଷି ପ୍ରତିଷ୍ଠାନ ଦାୟିତ୍ୱରେ ଥିବା ମିଷ୍ଟ ଏଲମ୍‌ହେର୍ଷ୍ଟ ଉଦ୍ୟାନ କର୍ମ ପାଇଁ ମଧ ଉତ୍ସାହିତ କରୁଥିଲେ । ମିଷ୍ଟର ପିଅରସନ୍ ନାମକ ଅନ୍ୟ ଜଣେ ଇଂରେଜ ବ୍ୟକ୍ତି ମଧ ଶିକ୍ଷା ଦାନ କରୁଥିଲେ । ତାଙ୍କରିଠାରୁ ହିଁ ମାଳତୀ ଜନଜାତି ଅଞ୍ଚଳରେ କାମ କରିବାପାଇଁ ପ୍ରେରଣା ପାଇଥିଲେ । ଗୁରୁଦେବ ନିଜ ପୁସ୍ତକ 'ବାଳାକା'

ପଢ଼ାଇବା ପାଇଁ କ୍ଲାସ ନେଉଥିଲେ । ଗୁରୁଦେବଙ୍କ ନିମନ୍ତ୍ରଣ ପାଇ ଭାରତକୁ ଆସିଥିବା ମିସ୍ ଷ୍ଟେଲା କ୍ରାମିଶ୍ଚ ଭାରତୀୟ ନୃତ୍ୟ କଳାର ମୂଳନୀତି ଉପରେ ଶିକ୍ଷା ଦେଉଥିଲେ । ସେମାନେ ସେତେବେଳେ ସମସ୍ତେ ଶାନ୍ତି ନିକେତନରେ ପ୍ରକୃତରେ ଏକ ଆଦର୍ଶପୂର୍ଣ୍ଣ ସୁଖୀ ଛାତ୍ର ଜୀବନ କାଟୁଥିଲେ ।

୧୯୨୭ ମସିହା କଥା, ମାଳତୀ ଦେବୀ ଶାନ୍ତି ନିକେତନରେ ଅଧ୍ୟୟନ କରୁଥିବା ସମୟରେ ଓଡ଼ିଶାରୁ ନବକୃଷ୍ଣ ଚୌଧୁରୀ ନାମକ ଜଣେ ଯୁବକ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ସାବରମତୀ ଆଶ୍ରମରୁ ଗ୍ରାମ୍ୟ ଅର୍ଥନୀତି ବିଷୟରେ ପଢ଼ିବା ପାଇଁ ଶାନ୍ତି ନିକେତନକୁ ଆସିଥିଲେ । ସେତେବେଳେ ଜି. ରାମଚନ୍ଦ୍ରନ୍, ବି. ଗୋପାଳ ରେଡ଼ି ଓ ସୟଦ ମୁଜତାବ ଅଲ୍ଲି ମଧ୍ୟ ଶାନ୍ତି ନିକେତନରେ ଅଧ୍ୟୟନ କରୁଥିଲେ । ମାଳତୀଙ୍କ ସହ ନବକୃଷ୍ଣ ଚୌଧୁରୀଙ୍କ ପ୍ରଥମ ସାକ୍ଷାତରେ ଏହି ଶାନ୍ତି ନିକେତନରେ ବିବାହ ପାଇଁ ସ୍ଥିର କରାଯାଇ ଉଭୟେ ୧୯୨୭ରେ ଶାନ୍ତି ନିକେତନ ଛାଡ଼ି ଥିଲେ । ଏହାଥିଲା ତାଙ୍କ ଜୀବନରେ ଏକ ସନ୍ଧିକ୍ଷଣ । ବିବାହ ପରେ ଓଡ଼ିଶା ହେଲା ତାଙ୍କର ଘର ଓ କର୍ମଭୂମି । ସେମାନେ ଓଡ଼ିଶାର ଜଗତ୍‌ସିଂହପୁର ଜିଲ୍ଲା ଅଣଖିଆ ନାମକ ଏକ ଛୋଟ ଗ୍ରାମରେ ବସବାସ କଲେ, ଯେଉଁଠାରେ ମାଳତୀଙ୍କ ସ୍ୱାମୀ ଉନ୍ନତ ପ୍ରଣାଳୀରେ ଆଖୁଚାଷ ଦିଗରେ କାମ ଆରମ୍ଭ କରିଦେଲେ । କୃଷି କାର୍ଯ୍ୟ ବ୍ୟତୀତ ଗ୍ରାମ୍ୟ ପୁନର୍ଗଠନ ଦିଗରେ ବିଭିନ୍ନ କାର୍ଯ୍ୟକ୍ରମ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଗ୍ରାମାଞ୍ଚଳର ଉନ୍ନତି ଦିଗରେ ନିଜେ ଗ୍ରାମବାସୀମାନେ କ୍ଷମତାପନ୍ନ ହେବା ଆବଶ୍ୟକ ଏବଂ ଏହାର ସୁଫଳ କେବଳ ଗ୍ରାମବାସୀଙ୍କ ଶିକ୍ଷା ଉପରେ ନିର୍ଭର କରେ ବୋଲି ଜନସଚେତନ ସୃଷ୍ଟି କରିବାରେ ସେମାନେ ଲାଗିଲେ । ଏଥିପାଇଁ ସେ ନିକଟରେ ଥିବା ଗ୍ରାମମାନଙ୍କରେ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ମଧ୍ୟ ଆରମ୍ଭ କରିଦେଲେ । ଦିନରେ ଚାଷ କାମ, ରାତିରେ ସ୍ୱାମୀ ସ୍ତ୍ରୀ ଦୁହେଁ ଗାଇ ଜଗା ପିଲାଙ୍କୁ ପାଠ ପଢ଼ାଇଲେ । ସବୁଜା ସବୁ ଘରର ପିଲାମାନେ ଏକାଠି ବସି ପାଠପଢ଼ିଲେ ।

ଢେଙ୍କାନାଳର ବ୍ରାହ୍ମଣୀ ନଦୀଘାଟ ଜଗିଥିବା ବାର ବର୍ଷର ନାଉରୀ ପୁଅ ବାଜି ରାଉତ ଇଂରେଜ ସୈନ୍ୟଙ୍କୁ ଡଙ୍ଗା ପାରି କରିବାକୁ ମନା କରି ଗୁଳିରେ ପ୍ରାଣ ଦେଲା । ଏହି ଘଟଣା ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କ ମନ ଭିତରେ ଗଭୀର ରେଖାପାତ କରିଥିଲା । ୧୯୪୬ ମସିହା ମେ ମାସ ୧୧ ତାରିଖରେ ସେମାନେ ଯେଉଁଠାରେ ବସବାସ କରୁଥିଲେ ତାହାକୁ 'ବାଜି ରାଉତ ଛାତ୍ରାବାସ' ରୂପେ ନାମରକଣ କରାଗଲା ।

ଏତିକିବେଳେ ମହାତ୍ମା ଗାନ୍ଧୀ ଲବଣ ସତ୍ୟାଗ୍ରହର ଡାକରା ଦେଲେ । ଲୁଣମରା ଆନ୍ଦୋଳନ ଆରମ୍ଭ ହୋଇଗଲା । ମାଳତୀଙ୍କ ବଡ଼ଝିଅ ଉତ୍ତରାକୁ ଦୁଇବର୍ଷ ପୂରି ନଥାଏ । ଘରକରଣାକୁ ଜଳାଞ୍ଜଳି ଦେଇ ସ୍ୱାମୀଙ୍କ ସହ ସେ ଏହି ଆନ୍ଦୋଳନରେ ସାମିଲ ହେଲେ । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଓ ଜଗତସିଂହପୁର ଜିଲ୍ଲାର କୁଜଙ୍ଗରେ ସେ ଗାଁ ଗାଁ ବୁଲି ଲୋକମାନଙ୍କୁ ଲୁଣମରା ବିଷୟରେ ବୁଝାଇବାକୁ ଲାଗିଲେ । ଦଳଗତ ହୋଇ କାର୍ଯ୍ୟ ହାସଲ କରିବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇବା ଦିଗରେ ଏହା ଏକ ଅପୂର୍ବ ସୁଯୋଗ ଥିଲା । ସେମାନେ ଲୁଣମରା ଆନ୍ଦୋଳନରେ ଯୋଗଦେବା ପାଇଁ ଲୋକମାନଙ୍କୁ ଉତ୍ସାହିତ କଲେ । ଏଥିଯୋଗୁଁ ତାଙ୍କୁ ୧୯୩୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ଗିରଫ କରାଗଲା । ଦୁଇବର୍ଷ ଚାରିମାସର ଝିଅକୁ କୋଳରେ ଧରି ଭାଗଲପୁର ସେଣ୍ଟ୍ରାଲ ଜେଲରେ ବନ୍ଦୀ ହୋଇ ରହିଲେ । ସେଠାରୁ ମୁକ୍ତି ପାଇବା ପରେ ସେହି ଲୁଣମରା, ବିଲାତି ପଦାର୍ଥ ବର୍ଜନ, ନିଶା ନିବାରଣ ପ୍ରଭୃତି କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରିଥିବାରୁ ପୁନର୍ବାର ଇଂରେଜ ସରକାର ତାଙ୍କୁ ବନ୍ଦୀ କରି ହଜାରିବାଗ୍ ଜେଲରେ ରଖିଲେ । ସେହି ଜେଲରେ ସ୍ୱାମୀ ନବକୃଷ୍ଣ ଚୌଧୁରୀ, ଦେଢ଼ଶୁର ଗୋପବନ୍ଧୁ ଚୌଧୁରୀ, ପୁତୁରା ମନମୋହନ ଓ ବଡ଼ଯାଆ ରମାଦେବୀ ମଧ୍ୟ ବନ୍ଦୀ ହୋଇ ରହିଥାନ୍ତି ।

୧୯୩୩ ମସିହା ଫେବୃଆରୀ ମାସରେ ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀଙ୍କ ମିଳିତ ଉଦ୍ୟମରେ ଉତ୍କଳ କଂଗ୍ରେସ ସମାଜବାଦୀ କର୍ମୀସଂଘ ନାମରେ ଏକ ଅନୁଷ୍ଠାନ ଗଠନ କରାଯାଇଥିଲା ଏବଂ ପରବର୍ତ୍ତୀ ସମୟରେ ଓଡ଼ିଶାରେ ସେହି ଅନୁଷ୍ଠାନ ଅଲ୍ ଇଣ୍ଡିଆ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ପ୍ରାଦେଶିକ ଶାଖା ରୂପେ କାର୍ଯ୍ୟ କରୁଥିଲା ।

୧୯୩୬ ମସିହାରେ ସେ ଝାସ ଦେଲେ କୃଷକ ଆନ୍ଦୋଳନରେ । ଚାଷୀ ମୂଲିଆଙ୍କ ମଧ୍ୟରେ ଚେତନା ଆଣିବା ପାଇଁ ମାଳତୀ ଚୌଧୁରୀ ନିଜର ଗହଣା ବିକ୍ରି କରି ସେହି ଅର୍ଥରେ 'ସାରଥୀ' ନାମରେ ଏକ ପତ୍ରିକା ପ୍ରକାଶ କଲେ । ଏହି କୃଷକ ଆନ୍ଦୋଳନ ଫଳରେ ଜମିଦାରଙ୍କ ବେଠି ଓ ଭେଟି ପ୍ରଥା ବନ୍ଦ ହେଲା ।

ଚାଷୀ ଆନ୍ଦୋଳନ ପରେ ଆରମ୍ଭ ହେଲା ମୋଗଲ ବନ୍ଦୀ ଓ ଗଡ଼ଜାତ ରାଜାଙ୍କ ବିରୁଦ୍ଧରେ ପ୍ରଜାମଣ୍ଡଳ ଆନ୍ଦୋଳନ । ପ୍ରଜାଙ୍କୁ ବେଠି ଖଟେଇ ଓ ବିଭିନ୍ନ ପ୍ରକାର ଖଜଣା ଟିକସ ବସାଇ ପ୍ରଜାକୁ ରାଜାମାନେ ତଳିତଳାନ୍ତ କରୁଥିଲେ । ଢେଙ୍କାନାଳ ଓ ତାଳଚେର ପ୍ରଜା ଆନ୍ଦୋଳନରେ ମାଳତୀ ସକ୍ରିୟ ସହଯୋଗ ଦେଲେ । ତାଙ୍କ ସହ ସ୍ୱାମୀ ନବକୃଷ୍ଣ ଚୌଧୁରୀ ସ୍ୱନାମଧନ୍ୟ ସାରଙ୍ଗଧର, ମହେଶ୍ୱର ସୁବାହୁ ସିଂହ ଓ ଆହୁରି ଅନେକ କର୍ମୀ ସହଯୋଗ କଲେ । ଗଡ଼ଜାତ ରାଜା ଇଂରେଜ ସୈନ୍ୟଙ୍କ ସାହାଯ୍ୟରେ ପ୍ରଜାମଣ୍ଡଳ ଉପରେ ବିଭିନ୍ନ ଅତ୍ୟାଚାର ଆରମ୍ଭ କରି ଦେଲେ । ଢେଙ୍କାନାଳର ବ୍ରାହ୍ମଣୀ ନଦୀଘାଟ ଜଗିଥିବା ବାର ବର୍ଷର ନାଉରୀ ପୁଅ ବାଜି ରାଉତ ଇଂରେଜ ସୈନ୍ୟଙ୍କୁ ଡଙ୍ଗା ପାରି କରିବାକୁ ମନା କରି ଗୁଳିରେ ପ୍ରାଣ ଦେଲା । ଏହି ଘଟଣା ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କ ମନ ଭିତରେ ଗଭୀର ରେଖାପାତ କରିଥିଲା । ୧୯୪୬ ମସିହା ମେ ମାସ ୧୧ ତାରିଖରେ ସେମାନେ ଯେଉଁଠାରେ

ବସବାସ କରୁଥିଲେ ତାହାକୁ 'ବାଜି ରାଉତ ଛାତ୍ରାବାସ' ରୂପେ ନାମକରଣ କରାଗଲା । ଏଠାରେ ଆଦିବାସୀ ହରିଜନ ତଥା ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନରେ ପୀଡ଼ିତ ପରିବାରର ପିଲାମାନେ ଏହି ଛାତ୍ରାବାସରେ ରହିଲେ । ଏକଦା ଏହି ଛାତ୍ରାବାସ ଜାତୀୟ ଗୌରବର ମହତ୍ୱ ହାସଲ କରିଥିଲା ।

୧୯୪୮ ମସିହାରେ ଗାନ୍ଧିଜୀଙ୍କ ମୃତ୍ୟୁରେ ମାଳତୀ ଦେବୀ ଦୁଃଖରେ ଭାଙ୍ଗି ପଡ଼ିଲେ ବି କର୍ମକ୍ଷେତ୍ରରେ ବିଚଳିତ ହୋଇନଥିଲେ । ସେହି ୧୯୪୮ ମସିହାରେ ସେ 'ଉତ୍କଳ ନବଜୀବନ ମଣ୍ଡଳ' ନାମରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ି ନିଜର ସମାଜସେବା କାର୍ଯ୍ୟଧାରାକୁ ଆଗେଇ ନେଲେ । ଗ୍ରାମାଞ୍ଚଳ ଉନ୍ନୟନ ତଥା ଗରିବ ବନବାସୀଙ୍କ ମଙ୍ଗଳ ପାଇଁ ଏହି ଅନୁଷ୍ଠାନ କାମ କଲା ।

ପ୍ରୌଢ଼ ଶିକ୍ଷା ପାଇଁ ଭାରତ ସରକାରଙ୍କଦ୍ୱାରା ପ୍ରତିଷ୍ଠିତ ରାଜ୍ୟ ସାଧନ କେନ୍ଦ୍ର ୧୯୭୮ ଅଗଷ୍ଟ ମାସରେ ଏହି ଉତ୍କଳ ନବଜୀବନ ମଣ୍ଡଳରେ ଅନୁଷ୍ଠିତ ହୋଇଥିଲା । ରାଜ୍ୟରେ ପ୍ରୌଢ଼ ଶିକ୍ଷା କ୍ଷେତ୍ରରେ ଏହି ଅନୁଷ୍ଠାନ ଅଗ୍ରଣୀ ଭୂମିକା ନେଇଥିଲା । ଭୂଦାନ ଯଜ୍ଞରେ ମଧ ମାଳତୀ ଦେବୀ ଓ ବିନୋବାଙ୍କ ସହ ଗାଁ ଗାଁ ବୁଲି ଭୂମିହୀନଙ୍କୁ ଭୂମିଦାନ ପାଇଁ ବୁଝାଉଥିଲେ । ସ୍ୱାମୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ମାଳତୀ ଦେବୀ ରହୁଥାନ୍ତି ବାଜି ରାଉତ ଛାତ୍ରାବାସରେ । ଅରଟରେ ସୂତାକଟା, ତନ୍ତରେ ଲୁଗା ବୁଣା, ବାଡ଼ିବଗିଚା କରିବା, ଆଦିବାସୀଙ୍କ ସୁଖଦୁଃଖ ବୁଝନ୍ତି । ଆଦିବାସୀଙ୍କ ହିତ ପାଇଁ ସମୟେ ସମୟେ ସେ ମୁଖ୍ୟମନ୍ତ୍ରୀଙ୍କ ସହ ଯୁକ୍ତିତର୍କ କରିବାକୁ ପଛାନ୍ତି ନାହିଁ ।

୧୯୭୫ ମସିହାରେ ଜରୁରିକାଳୀନ ପରିସ୍ଥିତିର ବିରୋଧ କରି ପ୍ରଚାର ପତ୍ର ବାଣ୍ଟିବାରୁ ସରାକାର ପ୍ରଥମେ ତାଙ୍କ ସ୍ୱାମୀଙ୍କୁ ଓ ପରେ ତାଙ୍କୁ ମଧ ତିନିମାସ ଅଟକ ରଖିଥିଲେ ।

ମାଳତୀ ଚୌଧୁରୀ ସାମ୍ୟବାଦୀ ଚିନ୍ତାଧାରା ପ୍ରତି ଅନୁପ୍ରାଣିତ ହୋଇ ନିଜର ବ୍ୟକ୍ତିଗତ ସୁଖ, ଧନ ସଂପଦ ଓ ନିଜର ପାରିବାରିକ ଜୀବନକୁ ଜଳାଞ୍ଜଳି ଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । **ଦରିଦ୍ର ଓ ନିପୀଡ଼ିତ ଆଦିବାସୀ ପିଲାମାନଙ୍କର ସେ ଥିଲେ ଆଦରର 'ନୁମା', ଟାଗୋରଙ୍କ ଅତିପ୍ରିୟ ଛାତ୍ରୀ 'ମିନୁ' ଓ ଗାନ୍ଧିଜୀଙ୍କ ସ୍ନେହର 'ତୋଫାନୀ' । ତାଙ୍କର ଘଟଣା ବହୁଳ ଜୀବନ ସହ ୯୩ ବର୍ଷ ବୟସରେ, ୧୯୯୮ ମାର୍ଚ୍ଚ ୧୫ ତାରିଖରେ ତାଙ୍କର ଦେହାନ୍ତ ହୋଇଥିଲା ।** କେବଳ ନିଜ ଜନ୍ମଭୂମି ବିହାରଠାରୁ କର୍ମଭୂମି ଓଡ଼ିଶା ନୁହେଁ ବରଂ ସମଗ୍ର ଦେଶବାସୀଙ୍କ ନିକଟରେ ତାଙ୍କର ବହୁମୁଖୀ ପ୍ରତିଭା ପାଇଁ ସେ ସର୍ବଦା ସ୍ମରଣୀୟ ଓ ନମସ୍ୟ ହୋଇ ରହିବେ ।

**ମାଳତୀ ଦେବୀଙ୍କୁ ମିଳିଥିବା ସମ୍ମାନ ଓ ପୁରସ୍କାର**

୧. ୧୯୮୭ - ଶିଶୁକଲ୍ୟାଣ ପାଇଁ ଜାତୀୟ ପୁରସ୍କାର

୨. ୧୯୮୮ - ଯମୁନା ଲାଲ ବଜାଜ ପୁରସ୍କାର

(ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ଓ ଚିନ୍ତାଧାରାର ପ୍ରବର୍ତ୍ତନ ପାଇଁ କୌଣସି ଦୃଷ୍ଟାନ୍ତମୂଳକ କାର୍ଯ୍ୟ କରିନଥିବାରୁ ମର୍ଯ୍ୟାଦାପୂର୍ଣ୍ଣ ଯମୁନା ଲାଲ ବଜାଜ ପୁରସ୍କାରକୁ ରାଜୀବ ଗାନ୍ଧୀଙ୍କ ହାତରୁ ଗ୍ରହଣ କରିବାକୁ ମନା କରିଥିଲେ)

୩. ୧୯୯୪ - ଉତ୍କଳ ସେବା ସମ୍ମାନ

୪. ୧୯୯୫ - ଟାଗୋର ସାକ୍ଷରତା ପୁରସ୍କାର

୫. ୧୯୯୭ - କ) ସ୍ୱାଧୀନତାର ପଚାଶତମ ଜୟନ୍ତୀ ଉପଲକ୍ଷେ ଲୋକସଭା ଓ ରାଜ୍ୟସଭା ତରଫରୁ ସମ୍ମାନିତ

ଖ) ରାଜ୍ୟ ସମାଜ ମଙ୍ଗଳ ଉପଦେଷ୍ଟା ବୋର୍ଡ଼ ଦ୍ୱାରା ସମ୍ମାନିତ

ଗ) ରାଜ୍ୟ ମହିଳା କମିଶନ ଦ୍ୱାରା ସମ୍ମାନିତ

୬. ୧୯୯୮ - ବିଶ୍ୱ ଭାରତୀ ପକ୍ଷରୁ ତାଙ୍କୁ 'ଦେଶୀ କୋଉମ' ଡି.ଲିଟ୍. ସମ୍ମାନ

କ୍ୱା.ନଂ.-ଇ/୯୭
ଇ-କଲୋନୀ
ୟୁନିଟ୍-୮, ଭୁବନେଶ୍ୱର



# ସଂଗ୍ରାମୀ ଗୌରାଙ୍ଗ ଚରଣ ଦାସ

କୃଷ୍ଣଚନ୍ଦ୍ର ସୁଆର

ଓଡ଼ିଶା ଭୂଇଁରେ ବିଶ୍ୱବିଦିତ ଆମ ସ୍ୱାଧୀନତା ସଂଗ୍ରାମର ଯଜ୍ଞ କୁଣ୍ଡରେ ନିଜକୁ ଆହୂତି ଦେଇଥିବା କ୍ରାନ୍ତିକାରୀ ନକ୍ଷତ୍ର ପୁଞ୍ଜରେ ଗୌରାଙ୍ଗ ଚରଣ ଦାସ ଓରଫ୍ ଗୌରୀ ଭାଇ ହେଉଛନ୍ତି ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ଏ ନାଁଟି କେହି ଉପାଧି ଦାନ ପରି ଦେଇନଥିଲା । ତାଙ୍କର ସହୃଦୟତା, ସ୍ନେହ ଓ ଶ୍ରଦ୍ଧା ଭାବ ଯୋଗୁଁ ସବୁରି କଣ୍ଠରେ ଆପଣାଛାଏଁ ନାମଟି ଗୃହୀତ ହୋଇ ଯାଇଥିଲା ।

ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ସେ ବହୁବାର କାରାବରଣ କରିଥିଲେ ଓ ନିର୍ଯ୍ୟାତନା ସହିଥିଲେ । ତାଙ୍କୁ ଦୈହିକ ନିର୍ଯ୍ୟାତନା ଦିଆଯାଇଥିଲା । କାରାଗାର ଭିତରେ ଓ ବାହାରେ ସେ ବ୍ରିଟିଶ ପୋଲିସର ଆକ୍ରମଣରେ ଗୁରୁତର ଭାବେ ଆହତ ହୋଇଥିଲେ । ୧୯୩୮ ମସିହା ଗଡ଼ଜାତ ଆନ୍ଦୋଳନରେ ଭାଗ ନେଇ ଢେଙ୍କାନାଳରେ ରାଜାଙ୍କ ପୋଲିସର ମରଣାନ୍ତକ ଆକ୍ରମଣରେ ସେ ଅଚେତ ହୋଇ ପଡ଼ିଥିଲେ । କେବଳ ଢେଙ୍କାନାଳର ଅନ୍ଧାରୀ ଗଡ଼ଜାତ ଶାସନ ନୁହଁ - ସାରା ଭାରତର ଗଡ଼ଜାତ ଶାସନର ସତ୍ତା ସବୁଦିନ ଲୋପ କରିବା ପାଇଁ ତାଙ୍କର ସକ୍ରିୟ ଭୂମିକା ରହିଥିଲା ।

ଦେଶରୁ କୁସଂସ୍କାର, ଅନ୍ଧବିଶ୍ୱାସ, ଅସମତା, ଶୋଷଣ, ନିପୀଡ଼ନ ଦୂର କରିବା ପାଇଁ ସେ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ସଂହତି, ଅଖଣ୍ଡତା, ଧର୍ମନିରପେକ୍ଷ ରାଷ୍ଟ୍ରସତ୍ତା ରକ୍ଷା କରିବାକୁ ସେ ସର୍ବଦା ଚେଷ୍ଟିତ ଥିଲେ । ତାଙ୍କ ଡାହାଣ ହାତଟି କହୁଣୀଯାଏ ଜନ୍ମରୁ ଅତି ଛୋଟ ଥିଲା । ସେ ଅକର୍ମଣ୍ୟ ହୋଇ ସୁଦ୍ଧା ଗୋଟିଏ ହାତରେ ଛାପା ଅକ୍ଷର ଭଳି ଗୋଲ ଗୋଲ ସୁନ୍ଦର ଅକ୍ଷର ଲେଖୁଥିଲେ । ଗଛ ଉପରକୁ ଗୋଟିଏ ହାତରେ ଚଢ଼ି ପାରୁଥିଲେ । ବାଗୁଡ଼ି ଖେଳୁଥିଲେ । ସାଇକେଲରେ ବୁଲୁଥିଲେ । ଆଉ ଘରପାଖ ବଢ଼ିଲା ବିଲୁଆ ଖାଇ ନଈର ଏ ପାଖରୁ ସେ ପାଖକୁ ପହଁରି ଯାଇ ପୋଲିସବାଲାଙ୍କୁ ଅସ୍ତବ୍ୟସ୍ତ କରି ପକାଉଥିଲେ । ଡଙ୍ଗାବାହି ନଈପାରି କରେଇ ଦେଉଥିଲେ ଓ ଦଉଡ଼ା ନଥିଲେ ଲୁଗାବାନ୍ଧି ବାଲ୍ତି ପକେଇ ଗୋଟିଏ ହାତରେ ପାଣି କାଢ଼ି ଦେଉଥିଲେ । ବାଁ ହାତର କି ଅପୂର୍ବ ଶକ୍ତି । ତାଙ୍କ ଭଳି ସାହସୀ, ବଳିଷ୍ଠ ଓ ଦୂରଦୃଷ୍ଟି ସଂପନ୍ନ ବ୍ୟକ୍ତି ବାସ୍ତବରେ ବିରଳ ।

ବିଦ୍ୟାଳୟରେ ଶିକ୍ଷାଲାଭର ସୁଯୋଗ ପାଇନଥିଲେ ହେଁ ନିଜ ଚେଷ୍ଟା ବଳରେ ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀରେ ସେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଲବଣ ସତ୍ୟାଗ୍ରହ, ଆଇନ ଅମାନ୍ୟ ଆନ୍ଦୋଳନ, ଗଡ଼ଜାତ ଆନ୍ଦୋଳନ, ବ୍ୟକ୍ତିଗତ ସତ୍ୟାଗ୍ରହ ପରିଶେଷରେ ଭାରତଛାଡ଼ ଆନ୍ଦୋଳନର ପୁରୋଭାଗରେ ରହି ଦେଶମାତୃକାର କାର୍ଯ୍ୟ କରିବା ଫଳରେ ନିର୍ଯ୍ୟାତନା, ଲାଠିମାଡ଼ ସହିତ ଦୀର୍ଘକାଳ ଜେଲଦଣ୍ଡ ଭୋଗ କରି ଶୁଦ୍ଧ ସୁବର୍ଣ୍ଣକୁ ଅଗ୍ନିରେ ଦହନ କରିବା ପରି ତାଙ୍କ ଜୀବନ ଯଶଯୁକ୍ତ ହୋଇଥିଲା ।

ପ୍ରାକ୍ ସ୍ୱାଧୀନତା କାଳରେ ହରିଜନମାନେ ମନ୍ଦିରରେ ପ୍ରବେଶ କଲେ ମନ୍ଦିର ଭିତରୁ ସପ୍ତଫେଣୀନାଗ ବାହାରି ସେମାନଙ୍କୁ ଧ୍ୱଂସିଦେବ, ଯିଏ ଆଗ ମନ୍ଦିରରେ ପଶିବ ସେ ରକ୍ତ ବାନ୍ତି କରି ମରିବ, ନହେଲେ ତା'ର ଛାତି ଫାଟିଯିବ, ବଜ୍ରପାତ ହୋଇ ମନ୍ଦିର ଦୁଇଫାଳ ହୋଇଯିବ, ଆଉ ଠାକୁର ପାତାଳି ହୋଇଯିବେ ଏହିପରି ଅନେକ ଗୁଜବ ଓ ଅନ୍ଧବିଶ୍ୱାସ ଆମ ଲୋକଙ୍କ ମନରେ ଥିଲା । ସେ ଏହାକୁ ଅମୂଳକ ବୋଲି କହି ୧୯୪୬ ମସିହାରେ ହଜାର ହଜାର ଜନସାଧାରଣଙ୍କର ଉପସ୍ଥିତିରେ ହରିବୋଲ, ହୁଳହୁଳି ଓ ଶଙ୍ଖ ଘଣ୍ଟ ବାଜା ମଧ୍ୟରେ ତାଙ୍କ ଗାଁ ବାଗଲପୁରର ଦଧିବାମନ ଜୀଉ ମନ୍ଦିରରେ ଓଡ଼ିଶାରେ ସର୍ବପ୍ରଥମ ହରିଜନ ପ୍ରବେଶ କରାଇ ସମସ୍ତଙ୍କର ସଂଶୟ ତୁଟାଇ ଦେଇଥିଲେ । ମହାତ୍ମା ଗାନ୍ଧୀଙ୍କ ଗଠନମୂଳକ କାମରେ ଛୁଆଁ ଅଛୁଆଁ ଭେଦଭାବ ଉଠାଇବା ଉପରେ ଜୋର ଦିଆଯାଉଥିଲା, ଗୌରାଙ୍ଗ ବାବୁ ତାହା ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

ଏହି ପ୍ରତିଭା ସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ଜଗତସିଂହପୁର ଜିଲ୍ଲାର ବାଗଲପୁର ଗାଁରେ ୧୮୯୯ ମସିହା ଜାନୁଆରୀ ମାସ ୨୬ ତାରିଖ ପୌଷ ପୂର୍ଣ୍ଣିମା ତିଥିରେ । ତାଙ୍କ ପିତାଙ୍କ ନାମ ପଙ୍କଜ ଚରଣ ଦାସ ଓ ମାତାଙ୍କ ନାମ ସାବିତ୍ରୀ ଦେବୀ । ସେତେବେଳେ ତାଙ୍କ ପିତା ଗାଙ୍ଗପୁର ଗଡ଼ଜାତର ଅବକାରୀ ବିଭାଗରେ ଚାକିରି କରୁଥିଲେ । ଗୌରାଙ୍ଗଙ୍କୁ ୧୩ ବର୍ଷ ବୟସରେ ତାଙ୍କ ପିତାଙ୍କର ଦେହାନ୍ତ ହୋଇଥିଲା । ଫଳରେ ତାଙ୍କ ପାଠପଢ଼ାରେ ଡୋରି ବନ୍ଧା ଯାଇଥିଲା । ତତ୍‌ପରେ ପରେ ବହୁ ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟରେ ତାଙ୍କର ଜୀବନ କୁସୁମ ବିକଶିତ ହୋଇଥିଲା ।

ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସେ ସରକାରୀ ଚାକିରି ଛାଡ଼ି ଘର ଚଳାଇବା ପାଇଁ ଥିବା ପୈତୃକ ଜମିକୁ ହାତଛଡ଼ା କରି ଜାତୀୟ ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ । ନିଜ ଗାଁ ପାଖରେ ପ୍ରତିଷ୍ଠିତ ଅଳକା ଆଶ୍ରମ ଓ ତରିକୁନ୍ଦ ଫାର୍ମଠାରେ ବିପ୍ଳବୀ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ସହ ସଂପର୍କ ପ୍ରତିଷ୍ଠା ହେଲା । ଗୌରାଙ୍ଗବାବୁ ପ୍ରତ୍ୟକ୍ଷ ସଂଗ୍ରାମରେ ସାମିଲ ହେଲେ । ୧୯୩୦ ମସିହାରେ ଐତିହାସିକ ଲବଣ ସତ୍ୟାଗ୍ରହରେ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ପ୍ରଥମ ସତ୍ୟାଗ୍ରହୀ ଦଳ ଲୌହସ୍ତମ୍ଭବାହିନୀରେ ସାମିଲ ହୋଇ ଇଞ୍ଚୁଡ଼ି ଲବଣ କ୍ଷେତ୍ରରେ ଲୁଣମାରି ପୋଲିସ ଆକ୍ରମଣର ଶିକାର ହେଲେ । ତାଙ୍କୁ ଏକ ବର୍ଷ ଜେଲ୍ ଦଣ୍ଡ ହେଲା । ଏହା ତାଙ୍କର ପ୍ରଥମ ଜେଲଦଣ୍ଡ । ସେତେବେଳେ ଜେଲରେ ଅତିକଷ୍ଟରେ ରହିବାକୁ ପଡୁଥିଲା । ବନ୍ଦୀମାନେ ଲୁହାବାସନରେ ଖାଉଥିଲେ, ଗୋଟିଏ ଛୋଟମାଟି ପିଣ୍ଡି ଉପରେ ଶୋଉଥିଲେ । ୧୯୩୨ ଜାନୁଆରୀ ୨୬ ତାରିଖରେ ସ୍ୱରାଜ୍ୟ ଦିବସ ପାଳନ କରି ଗିରଫ ହୋଇ ପାଟନା କ୍ୟାମ୍ପ ଜେଲରେ କାରାଦଣ୍ଡ ଭୋଗିଲେ । ଜେଲକୁ ନିଆଯାଉଥିବା ବେଳେ ଓ ଜେଲ ଭିତରେ ମଧ୍ୟ ବ୍ରିଟିଶ ବିରୋଧୀ ଧ୍ୱନି ଦେଇ ପୋଲିସ ଆକ୍ରମଣରେ ତାଙ୍କ କାନ ମୁଣ୍ଡା ଫାଟି ରକ୍ତ ବୋହିବା ସଂଗେ ସେ ବେହୋସ୍ ହୋଇ ପଡ଼ିଥିଲେ । ୧୯୩୪ ମସିହାରେ ଓଡ଼ିଶାରେ ସଂଗଠିତ ସମାଜବାଦୀ ଆନ୍ଦୋଳନରେ ସେ ଥିଲେ ଅନ୍ୟତମ ଉଦ୍ୟୋକ୍ତା ଓ ପ୍ରତିଷ୍ଠାତା । ସେ ମାଳତୀ ଦେବୀ, ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ଅଶୋକ ରାଓ, ଗୁରୁଚରଣ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ଡଃ ଦୟାନିଧି ପଟ୍ଟନାୟକ ଓ ରବି ଘୋଷଙ୍କ ସହ ଏକାଠି ମିଶି କାର୍ଯ୍ୟ କରୁଥିଲେ । ଓଡ଼ିଶା କୃଷକ ଆନ୍ଦୋଳନର ସେ ଥିଲେ ଜଣେ ଟାଣୁଆ ନେତା । ୧୯୪୦ରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ଭାଗ ନେଇ ଏକବର୍ଷ ଜେଲଦଣ୍ଡ ଭୋଗିଥିଲେ । ୧୯୪୨ ମାର୍ଚ୍ଚ ମାସରେ ଯୁଦ୍ଧ ବିରୋଧୀ ଆନ୍ଦୋଳନରେ ଯୋଗ ଦେଇ ୩ ମାସ ଜେଲ ଦଣ୍ଡ ଭୋଗିଥିଲେ । ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଭାଗ ନେଇ ୩ ବର୍ଷରୁ ଅଧିକ କାଳ କାରାଦଣ୍ଡ ଭୋଗିଥିଲେ । ଅଟକବନ୍ଦୀ ଭାବେ ବ୍ରହ୍ମପୁର ଜେଲରେ ଥିବାବେଳେ ଜେଲ ପରିସରରେ ସହବନ୍ଦୀମାନଙ୍କ ଜାତୀୟ ପତାକା ଉତ୍ତୋଳନ କରି ପୋଲିସ ଆକ୍ରମଣରେ ଗୁରୁତର ହୋଇଥିଲେ । ଜୀବଦ୍ଦଶାରେ ସେ ପ୍ରାୟ ୬ ବର୍ଷ କାରାଦଣ୍ଡ ଭୋଗିଥିଲେ । ଉଭୟ ବ୍ରହ୍ମପୁର ଓ ପାଟନା କ୍ୟାମ୍ପ ଜେଲରେ ଥିବାବେଳେ ତାଙ୍କ ସହ ସହବନ୍ଦୀ ହୋଇ ରହିଥିବା ଓଡ଼ିଶାର ମାନ୍ୟଗଣ୍ୟ ସଂଗ୍ରାମୀମାନଙ୍କ ମଧ୍ୟରେ ଗୋପବନ୍ଧୁ ଚୌଧୁରୀ, ଡଃ ରାଧାନାଥ ରଥ, ଅଦ୍ୱୈତ ବଲ୍ଲଭରାୟ, ବିବୁଧେନ୍ଦ୍ର ମିଶ୍ର, ଦୋଳଗୋବିନ୍ଦ ପ୍ରଧାନ, ରବୀନ୍ଦ୍ର ମୋହନ ଦାସ, ଅନିଲ କୁମାର ଘୋଷ, ନିତ୍ୟାନନ୍ଦ ମହାପାତ୍ର, ଭାଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ବିଶ୍ୱନାଥ ଦାଶ, ଗୌରଚନ୍ଦ୍ର ମହାପାତ୍ର, ଚିତ୍ତ ରଞ୍ଜନ ଦାସ ଓ ଆହୁରି ଅନେକ ସଂଗ୍ରାମୀ ଥିଲେ ।

> ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସେ ସରକାରୀ ଚାକିରି ଛାଡ଼ି ଘର ଚଳାଇବା ପାଇଁ ଥିବା ପୈତୃକ ଜମିକୁ ହାତଛଡ଼ା କରି ଜାତୀୟ ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ ।

ଗୌରାଙ୍ଗ ବାବୁଙ୍କ ନେତୃତ୍ୱରେ ତାଙ୍କ ଗାଁ ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ ବାଗଲପୁର ସ୍ୱାଧୀନତା ସଂଗ୍ରାମର ଏକ ଦୁର୍ଗରେ ପରିଣତ ହୋଇଥିଲା । ମୁଖ୍ୟତଃ ୧୯୪୨ 'କର ବା ମର' ଆନ୍ଦୋଳନରେ ଏହା ଏକ କେନ୍ଦ୍ରସ୍ଥଳ ଥିଲା । ତାଙ୍କୁ ମିଶାଇ ଏ ଗାଁରୁ ୧୮ ଜଣ କାରାଦଣ୍ଡ ଭୋଗିଥିଲେ । ତାଙ୍କ ନେତୃତ୍ୱରେ କୋଠଚାଷ ପ୍ରବର୍ତ୍ତନ ହୋଇଥିଲା । ସେ ଭୂଦାନ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

୧୯୪୬ ମସିହାରେ ଗୌରାଙ୍ଗ ବାବୁ ପଶ୍ଚିମ କଟକ ସଦର (ଗୋବିନ୍ଦପୁର ବାଙ୍କୀ ଦ୍ୱୈତ) ନିର୍ବାଚନ ମଣ୍ଡଳୀରୁ ଓଡ଼ିଶାର ବିଧାନସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ୧୯୪୬ରୁ ୧୯୫୧ ପର୍ଯ୍ୟନ୍ତ ସେ ବିଧାନସଭାର ସଦସ୍ୟ ଥିଲେ । ୧୯୪୦ ମସିହାରେ କଟକ ସଦର ଲୋକାଲ ବୋର୍ଡ଼ ଓ ଜିଲ୍ଲା ବୋର୍ଡ଼ର ସଦସ୍ୟ ଥିଲେ । ୧୯୬୧ରୁ ୧୯୬୬ ଅବିଭକ୍ତ କଟକ ଜିଲ୍ଲାର ଜିଲ୍ଲା ପରିଷଦ ଚେୟାରମ୍ୟାନ ରୂପେ ନିର୍ବାଚିତ ହୋଇ ବହୁ ଲୋକ ହିତକର କାର୍ଯ୍ୟ କରିଥିଲେ ।

ସେତେବେଳେ ଗୌରାଙ୍ଗବାବୁ ଜଣେ ଆଦର୍ଶ ଗାନ୍ଧୀବାଦୀ ଓ ଟାଣୁଆ ନେତା ଭାବରେ ଖ୍ୟାତି ଅର୍ଜ୍ଜି ଥିଲେ । ଓଜସ୍ୱିନୀ ଭାଷାରେ ହୃଦୟକୁ ଛୁଇଁଲା ଭଳି ଭାଷଣ ଦେଉଥିଲେ । ତାଙ୍କ ଭାଷଣରେ ରକ୍ତ ତାତି ଉଠୁଥିଲା ଓ ସାଧାରଣ ଜନତାଙ୍କ ମନରୁ ଭୟ ଓ ସଂଶୟ ଦୂର ହେବା ସଂଗେ ଆପଣାଛାଏଁ ସ୍ୱତଃ ପ୍ରବୃତ୍ତ ହୋଇ ସେମାନେ ସାଂଗଠନିକ କାର୍ଯ୍ୟରେ ଯୋଗ ଦେଉଥିଲେ ।

ସେ ଥିଲେ ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ, ଜନସେବକ, ସଂଗଠକ, ନିର୍ଭୀକ, ସ୍ୱାଧୀନଚେତା ଓ ସ୍ନେହୀମଣିଷ । ତ୍ୟାଗ, ସେବା ତାଙ୍କର ଧମନୀର ଶୋଣିତରେ ପ୍ରବାହରେ ଅତି ଅଳ୍ପ ସମୟ ମଧ୍ୟରେ ଅପରିଚିତକୁ ସେ ନିଜର କରି ନେଉଥିଲେ । ଶାନ୍ତ, ସରଳ ଓ ଅମାୟିକ ଥିଲେ ସେ । ନିରାଡ଼ମ୍ବର ଜୀବନଯାପନ କରିବା ସାଙ୍ଗକୁ ସର୍ବଦା କଛାମାରି ଖଣ୍ଡେ ଖଦଡ଼ ଧୋତି, ହାଫ୍‌ସାର୍ଟ ଓ ପାଦରେ ହଳେ ଚଟି ପରିଧାନ କରୁଥିଲେ ।

ତାଙ୍କ ସଂପର୍କରେ ଚିର ବିପ୍ଳବିନୀ ମାଳତୀ ଚୌଧୁରୀ କୁହନ୍ତି - 'ଗୌରୀ ଭାଇ ଆମ ଜୀବନ ସହିତ, ଜୀବନ ସଂଗ୍ରାମ ସହିତ, ଦୁଃଖ କଷ୍ଟ ସହିତ ଥିଲେ ସଂପୃକ୍ତ । ତାଙ୍କର ଅସୀମ ସାହସ, ବଳ ଏବଂ ଶକ୍ତି ଆମକୁ ଅତି ବିପଦରେ ମଧ୍ୟ ବଳ ଆଣି ଦେଉଥିଲା । ସାଧାରଣ କ୍ଷେତ୍ରରେ ଆମର ଲୋକସେବା କାମ ଆରମ୍ଭ ହେଲା ଗୌରୀ ଭାଇଙ୍କ ସାଙ୍ଗରେ । ତା' ପୂର୍ବରୁ ଶାନ୍ତି ନିକେତନରେ ପିୟାର୍ସନ ସାହେବଙ୍କଠାରୁ ଶିଖିଥିଲି ଅଧ୍ୟୟନ ପରେ ଖେଳ ସମୟରେ ପାଖ ସାନ୍ତାଳ ଗାଁର ଛୁଆଙ୍କୁ ଧରି ପାଠ ପଢ଼ାଇବା କାମରେ ଲାଗିଯିବା ।'

୧୯୭୨ ମସିହା ଫେବୃଆରୀ ମାସ ୧୯ ତାରିଖରେ ସଂଗ୍ରାମ ଓ ସେବାର ଏହି ମହାରଥୀଙ୍କର ଜୀବନଦୀପ ନିର୍ବାପିତ ହୋଇଥିଲା ।

ଆଜି ଗୌରାଙ୍ଗବାବୁଙ୍କ ପରି ଏକ ମହାନ୍ ବ୍ୟକ୍ତି ଆମ ଗହଣରେ ନାହାନ୍ତି ସତ, ମାତ୍ର ତାଙ୍କର ଅବିସ୍ମରଣୀୟ ବ୍ୟକ୍ତିତ୍ୱ ଓ ନିଷ୍କଳଙ୍କ ଜୀବନାଦର୍ଶ ଆମ ନିକଟରେ କାଳକାଳକୁ ଜୀବନ୍ତ ହୋଇ ରହିବ । ଏ ପରିପ୍ରେକ୍ଷୀରେ କବି ଓ ସଂଗ୍ରାମୀ ଗୌରଚନ୍ଦ୍ର ମହାପାତ୍ରଙ୍କ 'ହେ ଚିର ଆୟୁଷ୍ମାନ' କବିତା ଏକାନ୍ତ ପ୍ରଣିଧାନଯୋଗ୍ୟ ମନେହୁଏ -

'ନାରାୟଣ ବୋଲି ମଣିଥିଲ ତୁମେ
　　ଏ ଦେଶର ଦୀନ ଜନେ,
ମାନବ ସେବାହିଁ ମାଧବର ସେବା'
　　ଦେଖାଇଚ ଆଚରଣେ ।
ଚରଖାକେନ୍ଦ୍ର ଚଳାଇଲ ଦୀନ
　　ଦୁଃଖମୋଚନ ପାଇଁ,
ରାଜ ଅତ୍ୟାଚାର ଜବାବ ଦେଇଛ
　　ଢେଙ୍କାନାଳକୁ ଯାଇ ।
କୃଷକ ମୂଲିଆ ଉନ୍ନତି ପାଇଁ
　　ହୋଇଲ ସମାଜବାଦୀ,
ଅଛୁଆ ପ୍ରଥାର ଉଚ୍ଛେଦ ଲାଗି
　　କୁଳୀନତା ଦେଲ ଛେଦି ।
କୀର୍ତ୍ତି ତୁମରି ଅମଳିନ ସଦା,
　　ତୁମେ ହିଁ ବହ୍ନିମାନ,
ମରଣ ନେଇଛି ଶରଣ ତୁମରି
　　ହେ ଚିର ଆୟୁଷ୍ମାନ !

ଯଦି ଆମେ ଓ ବିଶେଷ କରି ଆମର ଯୁବପିଢ଼ି ତାଙ୍କର ସେହି ମହାନ୍ ମହାର୍ଘ ଜୀବନାଦର୍ଶକୁ ପାଥେୟ କରି ନିଜ ନିଜ ଜୀବନକୁ ଶୃଙ୍ଖଳିତ କରିବାରେ ନିଷ୍ଠା ପ୍ରକଟ କରନ୍ତେ, ତେବେ ଆମେ ନିଶ୍ଚିତ ଭାବେ ଏକ ସମୃଦ୍ଧ ଓଡ଼ିଶା ଗଠନ କରିବା ଦିଗରେ ଯଥେଷ୍ଟ ସଫଳତା ପାଇପାରିବା ଓ ଯଥାର୍ଥରେ ତାହା ହିଁ ହେବ ଗୌରୀବାବୁଙ୍କ ପ୍ରତି ଆମର ଏକାନ୍ତ ଅନ୍ତରଙ୍ଗ ଶ୍ରଦ୍ଧାଞ୍ଜଳି ।

ଏମ୍.ଆଇ.ଜି.-ୱାନ୍:୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬



ଚିଲିକାରେ ପକ୍ଷୀ

# କଳିଙ୍ଗର ସ୍ୱାଭିମାନୀ ପୁତ୍ର ବିଜୁ ପଟ୍ଟନାୟକ

ପ୍ରଦୀପ କୁମାର ଅମାତ

ବିଜୟାନନ୍ଦ ପଟ୍ଟନାୟକ ଯିଏକି କେବଳ ଓଡ଼ିଶା ନୁହେଁ ସାରା ବିଶ୍ୱରେ ବିଜୁ ପଟ୍ଟନାୟକ ଭାବେ ପରିଚିତ ଥିଲେ, ସିଏ ତାଙ୍କ ଜୀବନକାଳ ମଧ୍ୟରେ ଜଣେ କିମ୍ବଦନ୍ତୀ ପୁରୁଷ ପାଲଟିଥିଲେ । ଓଡ଼ିଶା ଇତିହାସରେ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ବିଶ୍ୱ ଦରବାରରେ ଓଡ଼ିଆ ଜାତିର ଟେକ ରଖିବାରେ ବିଜୁବାବୁଙ୍କର ଅବଦାନ ଅତୁଳନୀୟ । ଏହି ସୁଯୋଗ୍ୟ ସନ୍ତାନ ଯୋଗଜନ୍ମା ଓଡ଼ିଆ କଟକ ସହରରେ ତୁଳସୀପୁରସ୍ଥିତ ଆନନ୍ଦ ଭବନରେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ଆଶା ଦେବୀଙ୍କ ତୃତୀୟ ସନ୍ତାନ ।



ଏହି ସ୍ୱାଭିମାନୀ ଓଡ଼ିଆ ପୁଅ ପିଲାଟି ଦିନରୁ ଥିଲେ ଅନନ୍ୟ । ମାତ୍ର ୮ ବର୍ଷ ବୟସରେ ୧୯୨୩ ମସିହାରେ ପେଟରେ ଆପେଣ୍ଡିସ୍ ହୋଇ ଫାଟିଯିବାରୁ ଗୋରା ସାହେବ ଡକ୍ଟର ପିବ୍ଲସ୍‌ଙ୍କ ସଫଳ ଅସ୍ତ୍ରୋପଚାର ପରେ ବିଜୁବାବୁ ସୁସ୍ଥ ହୋଇଥିଲେ । ଏ ପ୍ରକାର ଅବସ୍ଥାରେ କ୍ୱଚିତ୍ ରୋଗୀ ବଞ୍ଚିଥାଆନ୍ତି । ଡକ୍ଟର ପିବ୍ଲସ୍ ମୁକ୍ତ କଣ୍ଠରେ କହିଥିଲେ ଯେ, ଏ ପିଲାକୁ ଭଗବାନ ବଞ୍ଚାଇଛନ୍ତି ଓ ଭବିଷ୍ୟତରେ ସେ ଖୁବ୍ ବଡ଼ କାମ କରିବ । ପ୍ରକୃତରେ ବିଜୁବାବୁ ତାଙ୍କ ଜୀବନକାଳ ମଧ୍ୟରେ ନିଜର ବହୁମୁଖୀ ପ୍ରତିଭାଦ୍ୱାରା ଦେଶ ବିଦେଶରେ ସୁପରିଚିତ ହୋଇପାରିଥିଲେ । ମିଶନ ପ୍ରାଥମିକ ବିଦ୍ୟାଳୟରୁ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ଶିକ୍ଷାଲାଭ ପରେ ରେଭେନ୍‌ସା କଲିଜିଏଟ୍ ବିଦ୍ୟାଳୟରୁ ୧୯୩୨ ମସିହା ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ପ୍ରବେଶିକା ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ରେଭେନ୍‌ସା ମହାବିଦ୍ୟାଳୟରୁ ଆଇ.ଏସ୍‌ସି. ପରେ ବି.ଏସ୍‌ସି. ପଢୁଥିବା ବେଳେ ସେ ଉଡ଼ାଜାହାଜ ଚଳାଇବା ପାଇଁ ତାଲିମ୍ ନେବାକୁ ଯାଇ ସଫଳତାର ସହ ପାଇଲଟ୍ ଟ୍ରେନିଂ ଲାଭ କରିଥିଲେ । ଜଣେ ସାହସୀ ପାଇଲଟ୍ ଭାବେ ଭାରତବର୍ଷରେ ଖୁବ୍ ଜଣାଶୁଣା ଥିଲେ । ବିଦ୍ୟାଳୟ ସ୍ତରରୁ ସେ ଜଣେ ଭଲ ଖେଳାଳୀ ଓ ଦକ୍ଷ ସାଇକେଲ ଆରୋହୀ ଥିଲେ । ନିଜର ଦୁଃସାହସିକ ସାଇକେଲ ଯାତ୍ରାଦ୍ୱାରା ସେ କଟକରୁ ପେଶାୱାର ପର୍ଯ୍ୟନ୍ତ ଦୀର୍ଘ ୪୦୦୦ କିଲୋମିଟର ରାସ୍ତା ଅତିକ୍ରମ କରିଥିଲେ ।

ବିଜୁବାବୁଙ୍କ ସାହସିକତାର ପରିଚୟ ବିଭିନ୍ନ ଘଟଣାରୁ ପିଲାଦିନରୁ ମିଳିଥିଲା । ତାଙ୍କର ଲକ୍ଷ୍ୟପଥରୁ ସେ କେବେ ହେଲେ ମଧ୍ୟ ବିଚ୍ୟୁତ୍ ହେଉ ନଥିଲେ । ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଛତା ନଦୀ ଗର୍ଭରୁ ଉଦ୍ଧାର, ୧୯୨୬ ମସିହାରେ ମହାତ୍ମା ଗାନ୍ଧୀଙ୍କ ସହିତ କରମର୍ଦ୍ଦନ ପାଇଁ ଗୋରା ପୋଲିସ୍ ଏସ୍.ପି. ହାରଗ୍ରୀଭ ସାହେବଙ୍କଠାରୁ ପାହାର ଖାଇ ମୁଣ୍ଡ ଫାଟିବା ଏବଂ ମିଶନ ସ୍କୁଲ ପଡ଼ିଆରେ ଇଂରେଜ ସାହେବଙ୍କ ବିମାନ ଅବତରଣ ହୋଇଥିବା ବେଳେ ସେଥିରେ ହାତ ମାରିବା ଯୋଗୁଁ ବେତ୍ରାଘାତ ଖାଇ ବିମାନ ଚାଳକ ହେବା ପାଇଁ ଶପଥ ନେବା ଦୃଷ୍ଟାନ୍ତ ତାଙ୍କ ସାହସିକତାର ପରିଚୟ ଦେଇଥିଲା ।

ପିତାଙ୍କ ପାଖରୁ ସେ ସେତେବେଳେ ମାସିକ ଏକ ହଜାର ଟଙ୍କା ନେଇ ପାଇଲଟ୍ ଟ୍ରେନିଂ ପ୍ରଶିକ୍ଷଣ ପରେ ଗ୍ରୋଭାନ ବ୍ରଦର୍ସଙ୍କ ପରିଚାଳିତ ଇଣ୍ଡିଆନ୍ ନେସନାଲ ଏୟାରୱେଜ୍‌ରେ ପ୍ରଥମେ ନିଯୁକ୍ତି ପାଇଥିଲେ । ଜଣେ ଦକ୍ଷ ପାଇଲଟ୍ ଭାବେ ବିଜୁବାବୁ ସମସ୍ତଙ୍କର ପ୍ରଶଂସାର ପାତ୍ର ଥିଲେ । ଭାଇସରାୟ ଲର୍ଡ଼ ୱେଭଲ୍, ସାର୍ ଷ୍ଟାଟ୍‌ଫୋର୍ଡ଼ ଏବଂ କ୍ରିପସ୍ ପ୍ରଭୃତି ଉଚ୍ଚ ବ୍ରିଟିଶ୍ ପଦାଧିକାରୀମାନେ ବିଜୁବାବୁଙ୍କ ବିମାନ ଚାଳନା ପାଇଁ ପ୍ରଶଂସା କରିଯାଇଛନ୍ତି । ଡଚ୍ ଶାସନାଧୀନ ଇଣ୍ଡୋନେସିଆକୁ ସ୍ୱାଧୀନ କରାଇବାରେ ବିଜୁବାବୁଙ୍କ ଅବଦାନ ବିଶ୍ୱବାସୀଙ୍କୁ ଉତ୍ତମ ଭାବେ ଜଣା । ଇଣ୍ଡୋନେସିଆ ସରକାର ତାଙ୍କୁ ସେ ଦେଶର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧିରେ ସମ୍ମାନିତ କରିଥିଲେ ।

୧୯୩୯ ମସିହାରେ ବିଜୁବାବୁଙ୍କ ବିବାହ ଜ୍ଞାନଦେବୀଙ୍କ ସହିତ ହୋଇଥିଲା । ୧୯୪୩ ମସିହା ଜାନୁଆରୀ ୧୩ ତାରିଖରେ ବ୍ରିଟିଶ୍ ସରକାରଙ୍କ ବିରୋଧ ଯୋଗୁଁ ସେ କାରାବରଣ କରିଥିଲେ । ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ପରାମର୍ଶକ୍ରମେ ୧୯୪୬ ମସିହାରେ ସେ ସକ୍ରିୟ ରାଜନୀତିରେ ପ୍ରବେଶ କରି କଟକ ସହରରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୭ ମସିହାରେ ସେ ଡଃ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ୧୯୬୧ ମସିହା ଜୁନ୍ ୨୩ ତାରିଖରେ ତାଙ୍କ ମୁଖ୍ୟମନ୍ତ୍ରିତ୍ୱରେ ମନ୍ତ୍ରିମଣ୍ଡଳ ଗଠନ ହୋଇଥିଲା ।

ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ବିଜୁବାବୁ ପ୍ରଥମେ ଆରମ୍ଭ କରିଥିଲେ । ମହିଳା ଜଗତିକରଣ ଓ ପଞ୍ଚାୟତିରାଜର ତିନିସ୍ତରରେ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ ବିଜୁବାବୁଙ୍କ ଅଭିନବ ପରିକଳ୍ପନା ଥିଲା ।

ବିଜୁବାବୁଙ୍କର ଚିନ୍ତାଧାରା ବିସ୍ତୃତ ଓ ଦୂରଦର୍ଶୀ ଥିଲା । ଓଡ଼ିଶା ଯୋଜନା କମିଶନ ଅଧ୍ୟକ୍ଷ ରୂପେ ସେ ଜଣେ ବିଶିଷ୍ଟ ଅର୍ଥନୀତିଜ୍ଞଙ୍କର ପରିଚୟ ସୃଷ୍ଟି କରି ପାରିଥିଲେ । ଦେଶ ବିଦେଶର ବିଶିଷ୍ଟ ବୈଜ୍ଞାନିକମାନଙ୍କର ଗବେଷଣା ଲବ୍ଧ ବିଷୟ ସର୍ବସାଧାରଣରେ ଜଣାଇବା ପାଇଁ ସେ 'କଳିଙ୍ଗ ପୁରସ୍କାର' ଆରମ୍ଭ କରିଥିଲେ । ଓଡ଼ିଶା ରାଜ୍ୟ ଖଣିଜ ସଂପଦରେ ପରିପୂର୍ଣ୍ଣ । ଏହାର ସଦୁପଯୋଗ ପାଇଁ ପାରାଦ୍ୱୀପ ବନ୍ଦର, ଡୁବୁରୀ ପାରାଦ୍ୱୀପ ଏକ୍ସପ୍ରେସ୍ ହାଇୱେ, ବାଲିମେଳା ତାପଜ ବିଦ୍ୟୁତ୍ ଯୋଜନା, ତାଳଚେର ତାପଜ ବିଦ୍ୟୁତ୍ ପ୍ରକଳ୍ପ, ସୁନାବେଡ଼ା ମିଗ୍ ବିମାନ କାରଖାନା ଇତ୍ୟାଦି ତାଙ୍କ ଦୂରଦର୍ଶିତାର ପରିଚାୟକ ଅଟେ । ବିଜୁବାବୁ ନବଉତ୍କଳର ନିର୍ମାତା ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଉରକେଲା ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ, ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ଚାରବାଟିଆ ପ୍ରତିରକ୍ଷା ବିମାନ ଅବତରଣ କେନ୍ଦ୍ର, ବରଗଡ଼ ସିମେଣ୍ଟ କାରଖାନା, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ କଲେଜ, ବୁର୍ଲା ଓ ବ୍ରହ୍ମପୁର ମେଡ଼ିକାଲ କଲେଜ, ଭଂଜବିହାର ଓ ଜ୍ୟୋତିବିହାର ଦୁଇଟି ବିଶ୍ୱବିଦ୍ୟାଳୟ, ନାଲ୍କୋ ଆଲୁମିନିୟମ ପ୍ଲାଣ୍ଟ ଏବଂ ସର୍ବୋପରି ରାଜ୍ୟର ପ୍ରଶାସନକୁ ଲୋକାଭିମୁଖୀ କରିବା ପାଇଁ ଜିଲ୍ଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି ତାଙ୍କ ସୂକ୍ଷ୍ମ ବୁଦ୍ଧିର ସ୍ପଷ୍ଟ ପ୍ରମାଣ ଦିଏ ।

ଦେଶର ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ ପାଇଁ ବଳବନ୍ତରାୟ ମେହେଟା କମିଟି ଦେଇଥିବା ରିପୋର୍ଟର ମୂଳଉତ୍ସ ବିଜୁବାବୁ ଅଟନ୍ତି । ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ବିଜୁବାବୁ ପ୍ରଥମେ ଆରମ୍ଭ କରିଥିଲେ । ମହିଳା ଜଗତିକରଣ ଓ ପଞ୍ଚାୟତିରାଜର ତିନିସ୍ତରରେ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ ବିଜୁବାବୁଙ୍କ ଅଭିନବ ପରିକଳ୍ପନା ଥିଲା । ଜନସଂଖ୍ୟା ବୃଦ୍ଧିକୁ ରୋକିବା ପାଇଁ ସେ ଦୁଇ ସନ୍ତାନରୁ ଅଧିକ ପିତାମାତାଙ୍କୁ ପଞ୍ଚାୟତିରାଜ ବ୍ୟବସ୍ଥାରେ ଅଂଶଗ୍ରହଣ କରିବା ପାଇଁ ଅସିଦ୍ଧ ଘୋଷଣା କରିଥିଲେ । ମହିଳାମାନଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ନିଯୁକ୍ତି ଦେବା ମଧ୍ୟ ତାଙ୍କର ଏକ ଅଭିନବ ଯୋଜନା ଥିଲା । ସାମ୍ବାଦିକମାନଙ୍କ ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟପ୍ରତି ସେ ଅତ୍ୟନ୍ତ ସହାନୁଭୂତିଶୀଳ ଥିଲେ । ଚୌକିଦାର ଓ ଦଫାଦାର ବ୍ୟବସ୍ଥା ଉଚ୍ଛେଦ କରି ସ୍ଥାୟୀ ଗ୍ରାମରକ୍ଷୀ ନିଯୁକ୍ତି କରିବା ସହିତ ଦରମା ସୁବନ୍ଦୋବସ୍ତ ସେ କରିଯାଇଛନ୍ତି । ପଶୁ ସଂପଦ ବିକାଶ ପାଇଁ ପ୍ରଫେସର ହାଲଡ଼େନଙ୍କୁ ନିଯୁକ୍ତ କରିବା ଓ ଜଳସଂପଦ ବିକାଶ ଲାଗି ରାଜ୍ୟପାଳ ଡଃ ଖୋସଲାଙ୍କ ପରାମର୍ଶ ସେ ଗ୍ରହଣ କରିଥିଲେ । କାମରାଜ ଯୋଜନାରେ ନିଜେ ଇସ୍ତଫା ଦେଇ ତଳସ୍ତରର ରାଜନୈତିକ ନେତାଙ୍କୁ ସୁଯୋଗ ଦେବା ତାଙ୍କ ଦରଦୀ ଭାବର ସୂଚନା ଦେଇଥିଲା । ରାଜନୈତିକ ନେତା ଓ କର୍ମଚାରୀମାନଙ୍କ ଦୁର୍ନୀତି ରୋକିବା ପାଇଁ ଲୋକପାଳ ଓ ଲୋକାୟୁକ୍ତ ନିଯୁକ୍ତି ଯୋଜନାର ବିଜୁବାବୁ ମୁଖ୍ୟ ପୃଷ୍ଠପୋଷକ ଥିଲେ ।

ବିଜୁବାବୁ ଓଡ଼ିଶାର ଅର୍ଥନୀତିକ, ସାମାଜିକ ଓ ରାଜନୈତିକ ଜୀବନଧାରାରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ନିଜକୁ ସାମିଲ କରି ଜାତୀୟ ରାଜନୀତିକୁ ମଧ୍ୟ ପ୍ରଭାବିତ କରିଥିଲେ । ସବୁ କ୍ଷେତ୍ରରେ ଓଡ଼ିଶାକୁ ଅଗ୍ରଣୀ ଓ ସମୃଦ୍ଧଶାଳୀ କରିବା ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ବିଜୁବାବୁ ଦୀର୍ଘ ରାଜନୈତିକ ଜୀବନରେ ସଫଳତାରେ ଉଲ୍ଲସିତ ହୋଇ ନାହାନ୍ତି କି ବିଫଳତାରେ ଭାଙ୍ଗି ପଡ଼ି ନାହାନ୍ତି । ସବୁ ପରିସ୍ଥିତି ସହିତ ଖାପଖୁଆଇ ସେ ଚାଲିପାରୁ ଥିଲେ । ଜୟ ପରାଜୟ, ନିନ୍ଦା ପ୍ରଶଂସାକୁ ସେ ସମାନ ଭାବରେ ଗ୍ରହଣ କରୁଥିଲେ । ନିଜର ତଥା ରାଜ୍ୟର ସ୍ୱାଭିମାନକୁ ସେ କେବେ ହେଲେ ତଳେ ପକାଇ ନାହାନ୍ତି । ତାଙ୍କର ଆଦର୍ଶରେ ଆଜିର ଯୁବ ସମାଜ ଅନୁପ୍ରାଣିତ ହେଲେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହୋଇପାରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ମାନ୍ୟବର ରାଷ୍ଟ୍ରମନ୍ତ୍ରୀ, ଇସ୍ପାତ ଓ ଖଣି ବିଭାଗ
ଓଡ଼ିଶା ସରକାର, ଭୁବନେଶ୍ୱର

# ବଙ୍ଗ ଜନମାନସରେ ବିଜୁ ପଟ୍ଟନାୟକ

ଡଃ କୃଷ୍ଣଚନ୍ଦ୍ର ଭୂୟାଁ

ଫକୀରମୋହନ ସେନାପତି, ମଧୁସୂଦନ ରାଓ ଓ ବିଶ୍ୱନାଥ କର ପ୍ରମୁଖ ବ୍ରାହ୍ମ ଧର୍ମାବଲମ୍ବୀ ହୋଇଥିବାରୁ ସେମାନେ ସେମାନଙ୍କର ସନ୍ତାନମାନଙ୍କର ବିବାହ ଦେଇଥିଲେ ବଙ୍ଗଳାର ବ୍ରାହ୍ମ ପରିବାରମାନଙ୍କରେ । ବିଜୁ ପଟ୍ଟନାୟକଙ୍କ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଥିଲେ ବ୍ରାହ୍ମ ଧର୍ମାବଲମ୍ବୀ । ସେ ବିବାହ କରିଥିଲେ ଚିଟାଗଙ୍ଗର (ବର୍ତ୍ତମାନର ବଙ୍ଗଳା ଦେଶ) ଏକ ବ୍ରାହ୍ମ ପରିବାରରେ । ଚିଟାଗଙ୍ଗର ଐତିହାସିକ ବିପ୍ଳବ ସହିତ ଏହି ପରିବାରଟି ସଂପୃକ୍ତ ଥିଲା । ଲକ୍ଷ୍ମୀ ନାରାୟଣଙ୍କ ପତ୍ନୀ ଥିଲେ ଆଶାଲତା । ଆଶାଲତା ଥିଲେ ଏକ ହାଇସ୍କୁଲର ପ୍ରଧାନ ଶିକ୍ଷକଙ୍କ କନ୍ୟା । ବଙ୍ଗ ପ୍ରଦେଶ ସହିତ ବିଜୁ ପଟ୍ଟନାୟକଙ୍କର ସଂପର୍କରେ ସୂତ୍ରପାତ ହୁଏ ଏଇଠୁଁ ।

ବିଜୁ ପଟ୍ଟନାୟକଙ୍କର ବିଭିନ୍ନ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିଲେ ହେଁ ମୁଖ୍ୟତଃ ସେ ଜଣେ ଶିଳ୍ପପତି, ରାଜନୀତିଜ୍ଞ ଓ ସୁଦକ୍ଷ ବିମାନ ଚାଳକ ଭାବେ ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ ଥିଲେ । ସେ ଯେତେବେଳେ ଶିଳ୍ପକ୍ଷେତ୍ରରେ ପ୍ରବେଶ କଲେ, ସେତେବେଳେ ହାଓଡ଼ାର ବିଶିଷ୍ଟ ଶିଳ୍ପପତି ଆଲାମ ଦାସଙ୍କ ସହିତ ତାଙ୍କର ସଂପର୍କ ସ୍ଥାପିତ ହୋଇଥିଲା । ଶିଳ୍ପ କ୍ଷେତ୍ରରେ ଅଗ୍ରସର ହେବାକୁ ସେହି ସଂପର୍କ ହିଁ ତାଙ୍କ ପାଇଁ ସହାୟକ ହୋଇଥିଲା । ଏହା ପରେ ବିଭିନ୍ନ ସମୟରେ କୋଲକାତାର ବିଶିଷ୍ଟ ଶିଳ୍ପପତି ଓ ବ୍ୟବସାୟୀମାନଙ୍କ ସହିତ ତାଙ୍କର ସଂପର୍କ ଗଢ଼ି ଉଠେ ।

ତାଙ୍କ ପାଇଁ ଓଡ଼ିଶା ଥିଲା କଳିଙ୍ଗ । କଳିଙ୍ଗ ଶବ୍ଦଟି ତାଙ୍କର ଅତି ପ୍ରିୟ ଥିଲା । ଚୌଦ୍ୱାରରେ ସେ ପ୍ରତିଷ୍ଠା କଲେ କଳିଙ୍ଗ ଟ୍ୟୁବ୍‌ସ । ଏକଦା ଏହା ଥିଲା ଏସିଆର ବୃହତ୍ତମ ପାଇପ୍ ତିଆରି କାରଖାନା । ସେ ଆରମ୍ଭ କରିଥିବା ଦୈନିକ ଖବରକାଗଜର ନାମ ରଖିଥିଲେ 'କଳିଙ୍ଗ' । ବିମାନ ଚଳାଚଳ କମ୍ପାନୀର ନାଁ ସେ ଦେଇଥିଲେ 'କଳିଙ୍ଗ ଏୟାର ୱେଜ' । ନିର୍ବାଚନ ପ୍ରଚାର ପାଇଁ ସେ ଯେଉଁ ଗାଡ଼ିଟି ବ୍ୟବହାର କରୁଥିଲେ, ତାହା ଥିଲା କଳିଙ୍ଗ ରଥ । ବିଜ୍ଞାନ କ୍ଷେତ୍ରରେ ସେ ଯେଉଁ ଆନ୍ତର୍ଜାତିକ ପୁରସ୍କାରଟି ପ୍ରବର୍ତ୍ତନ କରିଥିଲେ, ତାହାର ନାଁ ଥିଲା କଳିଙ୍ଗ ପୁରସ୍କାର । କଳିଙ୍ଗ ଟ୍ୟୁବ୍‌ସ, କଳିଙ୍ଗ ଖବରକାଗଜ, କଳିଙ୍ଗ ଏୟାର ୱେଜ ଓ କଳିଙ୍ଗ ଆଇରନ ୱାର୍କସର କାର୍ଯ୍ୟାଳୟ ଥିଲା କୋଲକାତାର ୩୩ ନମ୍ବର ଚିତ୍ତରଞ୍ଜନ ଏଭେନ୍ୟୁ । ପରେ ତାହା ସ୍ଥାନାନ୍ତରିତ ହୋଇଥିଲା ଚୌରଙ୍ଗୀକୁ । ଏହି ଦୁଇ ସ୍ଥାନରେ ଏବଂ ହାରିଂଟନ ଷ୍ଟ୍ରୀଟ ଗୁରୁ ଓ ବାଲିଗଞ୍ଜ ପାର୍କ ରୋଡ୍ ରହଣି ସ୍ଥାନରେ ତାଙ୍କର କର୍ମମୟ ଜୀବନର ବହୁ ସମୟ ସେ ଅତିବାହିତ କରିଥିଲେ ।



**ଓଡ଼ିଶାର ଶିଳ୍ପ, କୃଷି ବିକାଶ କ୍ଷେତ୍ରରେ ମଧୁବାବୁଙ୍କ ଭାଗ୍ୟରେ ଯାହା ଘଟିଥିଲା, ତାହା ହିଁ ଘଟିଲା ବିଜୁବାବୁଙ୍କ ଭାଗ୍ୟରେ । ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ଓ ଓଡ଼ିଆ ଜାତୀୟତାର ସ୍ୱାର୍ଥରକ୍ଷା ପାଇଁ ମଧୁବାବୁଙ୍କ ଅବଦାନ ଥିଲା ଅବିସ୍ମରଣୀୟ । ମଧୁବାବୁଙ୍କ ପରେ ଏ କ୍ଷେତ୍ରରେ ଯାହାଙ୍କ ନାମ ସର୍ବପ୍ରଥମେ ମନେ ପଡ଼େ ସେ ହେଉଛନ୍ତି ବିଜୁବାବୁ ।**

ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କର ସେ ଥିଲେ ଅତ୍ୟନ୍ତ ଘନିଷ୍ଠ ଓ ବିଶ୍ୱସ୍ତ । ନେହରୁ ଜାଣିଥିଲେ ବିଜୁବାବୁ ଥିଲେ ଜଣେ ସାହସୀ, ଉଚ୍ଚାଭିଳାଷୀ । ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବାବେଳେ ତାଙ୍କର ପରାମର୍ଶ ବିଶେଷ ପ୍ରୟୋଜନ । ଏହି କଥା ସେ ବିଜୁବାବୁଙ୍କୁ ତାଙ୍କର ବନ୍ଧୁ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ବିଧାନଚନ୍ଦ୍ର ରାୟଙ୍କ ସହିତ ପରିଚୟ କରି ଦେବାବେଳେ କହିଥିଲେ । ଏହି ପରିଚୟ ପରେ ବିଧାନଚନ୍ଦ୍ର ରାୟଙ୍କ ସହିତ ସଂପର୍କ ତାଙ୍କର ବେଶି ଦିନ ତିଷ୍ଠି ନଥିଲା । କାରଣ ବିଧାନଚନ୍ଦ୍ର ଅଳ୍ପଦିନ ପରେ ମୃତ୍ୟୁବରଣ କରିଥିଲେ । ନେହରୁ ଜାଣିଥିଲେ ବିଜୁବାବୁ କିଭଳି ଦୁଃସାହସିକ ଥିଲେ । ୧୯୪୬ ଅଗଷ୍ଟ ୧୬ ତାରିଖରେ ଇଣ୍ଡୋନେସିଆର ଅବରୁଦ୍ଧ ବିପ୍ଳବୀ ନେତାମାନଙ୍କୁ ଉଦ୍ଧାର କରିବାକୁ ସେ ନେହରୁଙ୍କ ଅନୁରୋଧରେ ଜାକର୍ତ୍ତା ଅଭିମୁଖେ ବିମାନ ଚଳାଇ

ଯାଇଥିଲେ । ଏହାଥିଲା ଏକ ଭୟଙ୍କର ଓ ଦୁଃସାହସିକ ଅଭିଯାନ । ସଙ୍ଗରେ ଥିଲେ ପତ୍ନୀ ଜ୍ଞାନ ପଟ୍ଟନାୟକ । ଘରେ ଛାଡ଼ି ଆସିଥିଲେ ନିଜର ୧୪ ଦିନର ପୁଅକୁ । ଡଚ୍ ସୈନ୍ୟଙ୍କ ଆକ୍ରମଣକୁ ଭୃକ୍ଷେପ ନକରି ସେ ଜାକର୍ତ୍ତାର ଆକାଶରେ ପହଞ୍ଚିବା ମାତ୍ରେ ଦୁଇଟି ଲଢୁଆ ବିମାନ ବିଜୁଙ୍କ ଡାକୋଟାର ଦୁଇପାଖରେ ପହଞ୍ଚି ଯାଇ ଅବତରଣ କରିବାକୁ ନିର୍ଦ୍ଦେଶ ଦେଇଥିଲା । ବିଜୁ କିନ୍ତୁ ବେପରୁଆ । ତାଙ୍କ ବିମାନକୁ ଗୁଳି କରି ଖସାଇ ଦିଆଯିବ ବୋଲି ଧମକ ଦିଆଗଲା । ବିଜୁ ଓଲଟା ଧମକ ଦେଲେ- 'ଯଦି ମୋର ବିମାନକୁ ଗୁଳି କରାଯାଏ, ଭାରତର ଆକାଶପଥ ଦେଇ ଯଦି କୌଣସି ଡଚ୍ ବିମାନ ଯିବ ତାକୁ ଗୁଳି କରି ଖସାଇ ଦିଆଯିବ ।' ଆକ୍ରମଣକାରୀ ବିମାନ ପଛଘୁଞ୍ଚା ଦେଲା । ଅନେକଙ୍କ ମନରେ ଚମକ ସୃଷ୍ଟି କରି ବିଜୁ ନିଜ ଜୀବନକୁ ବାଜି ଲଗାଇ ତତ୍କାଳୀନ ଇଣ୍ଡୋନେସିଆର ପ୍ରଧାନମନ୍ତ୍ରୀ ସୁଲତାନ ସାହିର ପ୍ରଭୃତିଙ୍କୁ ଉଦ୍ଧାର କରି ଆସି ଦିଲ୍ଲୀରେ ପହଞ୍ଚିଥିଲେ । ଏହି ଘଟଣାର ବିବରଣୀ ସେଦିନ ଭାରତର ବଡ଼ ବଡ଼ ଖବରକାଗଜରେ ପ୍ରକାଶିତ ହୋଇଥିଲା । କୋଲକାତାରୁ ପ୍ରକାଶିତ ଷ୍ଟେଟସମ୍ୟାନ, ଅମୃତବଜାର ପତ୍ରିକା ଓ ଅନ୍ୟାନ୍ୟ ଖବରକାଗଜରେ ଏକଥା ପ୍ରକାଶ ପାଇବା ପରେ ସେ ବଙ୍ଗଳାର ଘରେ ଘରେ ପରିଚିତ ହୋଇଗଲେ ବିଜୁ ।

କେବଳ ବିଧାନଚନ୍ଦ୍ର ରାୟ ନୁହନ୍ତି, ପ୍ରଫୁଲ୍ଲ ସେନ, ସିଦ୍ଧାର୍ଥ ଶଙ୍କର ରାୟ ଓ ଜ୍ୟୋତି ବସୁ ପ୍ରମୁଖ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଥିବାବେଳେ ବିଜୁବାବୁ ସେମାନଙ୍କ ନିକଟରେ ଥିଲେ ଜଣେ ସମ୍ମାନିତ ବ୍ୟକ୍ତି । ତାଙ୍କର ବନ୍ଧୁ ସିଦ୍ଧାର୍ଥ ଶଙ୍କର ରାୟ କହିଥିଲେ, 'ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଓଡ଼ିଶା ସରକାର କେତେଗୁଡ଼ିଏ ମାମଲା କରିଛି । ଏହି ମାମଲାଗୁଡ଼ିକ ନଥିଲେ ବିଜୁ ହୁଏତ ଗତବର୍ଷ ଭୋଟ ପରେ ପ୍ରଧାନମନ୍ତ୍ରୀ ହୋଇଯାଇଥାଆନ୍ତେ ।' କାର୍ଯ୍ୟବ୍ୟସ୍ତ ମୁଖ୍ୟମନ୍ତ୍ରୀ ଜ୍ୟୋତିବସୁ କ୍ଳାନ୍ତି ଦୂର କରିବାକୁ ବର୍ଷରେ ଥରେ କୌଣସି ନା କୌଣସି ଜାଗାକୁ ଯାଇ କେଇ ଦିନ ବିଶ୍ରାମ ନିଅନ୍ତି । ଜ୍ୟୋତିବସୁ ସେ ଥର ଯାଇଥିଲେ ପୁରୀକୁ । ସାଙ୍ଗରେ ଥିଲେ ପତ୍ନୀ କମଳ ବସୁ । ରହିବା ପାଇଁ ବ୍ୟବସ୍ଥା ହୋଇଥିଲା ରେଳବାଇ ହୋଟେଲରେ । ଏକଥା ବିଜୁବାବୁଙ୍କ କାନକୁ ଗଲା । ରେଳବାଇ ହୋଟେଲରେ ରହିବା ବାତିଲ ହେଲା । ବିଜୁବାବୁ ତାଙ୍କର ସବୁପ୍ରକାର ସ୍ୱଚ୍ଛନ୍ଦ ରହଣି ପାଇଁ ବ୍ୟବସ୍ଥା କଲେ ପୁରୀ ରାଜଭବନରେ । ବିଜୁବାବୁ ଜ୍ୟୋତିବସୁଙ୍କୁ ସାକ୍ଷାତ କଲେ ରାଜଭବନରେ । ସେ ବିଜୁବାବୁଙ୍କ ଅତିଥି ଚର୍ଚ୍ଚାର ପ୍ରଶଂସା କଲେ । ବିଜୁବାବୁଙ୍କ ଉତ୍ତର ଥିଲା- 'ଆପଣ ଆମର ଅତିଥି । ଏହା ଆମର କର୍ତ୍ତବ୍ୟ ।'

ମୁଖ୍ୟମନ୍ତ୍ରୀ ଥିବାବେଳେ ସରକାରୀ ସ୍ତରରେ ଅପବ୍ୟୟ ହେଉଥିବା ଲକ୍ଷ୍ୟ କରି ସେ ତାହା ବନ୍ଦ କରିବା ପାଇଁ ମିତବ୍ୟୟିତା କମିଟି ଗଢ଼ିଲେ । ଏଥିପାଇଁ ରାଜ୍ୟ ସରକାରୀ କର୍ମଚାରୀମାନେ କ୍ଷୁବ୍ଧ ହେଲେ । ଏହି ଘଟଣାକୁ ଲକ୍ଷ୍ୟ କରି ଦୈନିକ ଷ୍ଟେଟସ୍‌ମ୍ୟାନରେ (୧୧ ଜୁନ୍, ୧୯୯୩) 'ଟ୍ରେମରସ୍ ଇନ୍ ଓଡ଼ିଶା' ଶୀର୍ଷକ ସଂପାଦକୀୟ ଲେଖା ଗଲା । ଏହାପରେ ବିଜୁବାବୁ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି ଷ୍ଟେଟସ୍‌ମ୍ୟାନକୁ ଲେଖିଥିଲେ - 'ବିଜୁ ପଟ୍ଟନାୟକର କେବଳ ମାତ୍ର ଗୋଟିଏ ସରକାରୀ ଗାଡ଼ି । ପୋଲିସ ସୁରକ୍ଷା ବ୍ୟବସ୍ଥା ନାହିଁ । ଆବାସରେ ବ୍ୟକ୍ତିଗତ ସହାୟକ ନାହାନ୍ତି । ଘରେ ସରକାରୀ ଟେଲିଫୋନ୍ ନାହିଁ । ଅନ୍ୟମାନଙ୍କ ଭଳି ଅଙ୍ଗରକ୍ଷୀ ଓ ଅସଂଖ୍ୟ ଯାନବାହନ ଘେରରେ ସେ ଗସ୍ତ କରେ ନାହିଁ । ସେ ଦରମା ନିଏ ନାହିଁ ଏବଂ ୪୫ ବର୍ଷ ତଳେ ନିର୍ମିତ ନିଜ ଘରେ ରହେ ।'

ଏହାପରେ ବିଜୁବାବୁ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି ଷ୍ଟେଟସ୍‌ମ୍ୟାନକୁ ଲେଖିଥିଲେ - 'ବିଜୁ ପଟ୍ଟନାୟକର କେବଳ ମାତ୍ର ଗୋଟିଏ ସରକାରୀ ଗାଡ଼ି । ପୋଲିସ ସୁରକ୍ଷା ବ୍ୟବସ୍ଥା ନାହିଁ । ଆବାସରେ ବ୍ୟକ୍ତିଗତ ସହାୟକ ନାହାନ୍ତି । ଘରେ ସରକାରୀ ଟେଲିଫୋନ୍ ନାହିଁ । ଅନ୍ୟମାନଙ୍କ ଭଳି ଅଙ୍ଗରକ୍ଷୀ ଓ ଅସଂଖ୍ୟ ଯାନବାହନ ଘେରରେ ସେ ଗସ୍ତ କରେ ନାହିଁ । ସେ ଦରମା ନିଏ ନାହିଁ ଏବଂ ୪୫ ବର୍ଷ ତଳେ ନିର୍ମିତ ନିଜ ଘରେ ରହେ ।'

ଭାରତୀୟ ରାଜନୀତିରେ ବିଜୁବାବୁ ଥିଲେ ଜଣେ ବେଶୀ ଆଲୋଚିତ ବ୍ୟକ୍ତିତ୍ୱ । କେତେବେଳେ ସେ ବିବାଦ ଘେରରେ ରହୁଥିଲେ ତ କେତେବେଳେ ମୁକୁଟବିହୀନ ସମ୍ରାଟର ସମ୍ମାନ ପାଉଥିଲେ । ଏକଦା ଅତୁଲ୍ୟ ଘୋଷ କଂଗ୍ରେସ ରାଜନୀତିରେ ଜଣେ ଟାଣୁଆ ନେତା ଥିଲେ । ସିଏ ବି ବେଳେ ବେଳେ ବିବାଦ ଘେରରେ ପଡ଼ି ଯାଉଥିଲେ । କଂଗ୍ରେସ ଦଳ ତରଫରୁ ସେ ଓଡ଼ିଶାର ଦାୟିତ୍ୱରେ ଥିବାବେଳେ ବିଜୁ ପଟ୍ଟନାୟକଙ୍କ ନିକଟ ସଂପର୍କରେ ଆସିଥିଲେ । ବିଜୁବାବୁଙ୍କ ନେତୃତ୍ୱ, ବ୍ୟକ୍ତିତ୍ୱ, ଅଭିନବ ଚିନ୍ତାଧାରା, ବେପରୁଆ ମନୋଭାବ ଓ ଦେଶର ରାଜନୀତିରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ଅତୁଲ୍ୟ ଘୋଷ ଅବଗତ ଥିଲେ । ପରେ ସେ ତାଙ୍କ ରାଜନୈତିକ କର୍ମ ଜୀବନକୁ ଆଧାର କରି 'ଦେଶ' ପତ୍ରିକାରେ ଧାରାବାହିକ ପ୍ରବନ୍ଧ ଲେଖୁଥିଲେ । ସେଥିରେ ସେ ବିଜୁ ପଟ୍ଟନାୟକଙ୍କ ବିଷୟରେ ନାନା କଥା ଲେଖୁଥିଲେ । ପରବର୍ତ୍ତୀ କାଳରେ ତାଙ୍କର ଲେଖାଗୁଡ଼ିକ 'କଷ୍ଟ କଳ୍ପିତ' ଶୀର୍ଷକ ପୁସ୍ତକରେ ପ୍ରକାଶିତ ହୋଇଛି ।

୧୯୮୫ ମସିହାରେ ଆମେମାନେ କୋଲକାତାରେ ଭାରତୀୟ ଲେଖକ ସମ୍ମେଳନର ଆୟୋଜନ କରିଥିଲୁଁ । ସେହି ଦୁଇଦିନିଆ କାର୍ଯ୍ୟକ୍ରମ ମଧ୍ୟରେ ଗୋଟିଏ ଦିନ ଉଦ୍ଦିଷ୍ଟ ଥିଲା ଓଡ଼ିଆ ସାହିତ୍ୟର ଆଲୋଚନା ପାଇଁ । ଓଡ଼ିଆ ଲେଖକମାନଙ୍କ ସହିତ ଯୋଗାଯୋଗ କରିବାକୁ ମୁଁ କେତେକ ବଙ୍ଗୀୟ ଲେଖକବନ୍ଧୁଙ୍କୁ ନେଇ ଯାଇଥିଲି ଭୁବନେଶ୍ୱର । ସେହି ଅବସରରେ ଆମେ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପ ପରିସରରେ ଲେଖକ ସାମ୍ମୁଖ୍ୟପକ୍ଷରୁ ଆୟୋଜିତ ପୁସ୍ତକମେଳାରେ ଯୋଗ ଦେଇଥିଲୁ । ପୁସ୍ତକ ମେଳାକୁ ଉଦ୍‌ଘାଟନ କଲେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ । ସେହି ଉତ୍ସବରେ ସେ ମୋର ବନ୍ଧୁ ଅଧୀର ବିଶ୍ୱାସଙ୍କ

ରଚିତ 'ଶ୍ରୀଚୈତନ୍ୟ'ଙ୍କ ଉପରେ ଏକ ପୁସ୍ତକ ଉନ୍ମୋଚନ କରିଥିଲେ । ବିଜୁବାବୁଙ୍କ ଧର୍ମୀୟ ଚିନ୍ତାଧାରା ଥିଲା ବାସ୍ତବମୁଖୀ ଓ କୁସଂସ୍କାରମୁକ୍ତ । ଚୈତନ୍ୟ ଦେବଙ୍କ ଆବିର୍ଭାବ ଫଳରେ ଭାରତୀୟ ଜାତୀୟଚେତନା କିଛିଟା ମ୍ଳାନ ହୋଇପଡ଼ିଥିବା ସେ ମନେକରି କିଛିଟା ବିରୂପ ମନ୍ତବ୍ୟ ଦେଇଥିଲେ ଏବଂ ସଂଗେସଂଗେ ବଙ୍କିମଚନ୍ଦ୍ର ଚାଟାର୍ଜୀଙ୍କର 'ଆନନ୍ଦ ମଠ' ଯେଉଁ ଜାତୀୟ ଚେତନା ଉଦ୍ରେକ କରିଥିଲା ତାହାର ଉଚ୍ଚ ପ୍ରଶଂସା କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ବିଜୁବାବୁ ଥିଲେ ଜଣେ ଉତ୍ତମ ପାଠକ । ନାନା କାର୍ଯ୍ୟବ୍ୟସ୍ତତା ମଧ୍ୟରେ ସେ ବଙ୍ଗଳା ଓ ଇଂରାଜୀ ଭାଷାରେ ରଚିତ ଉଚ୍ଚମାନର ପୁସ୍ତକଗୁଡ଼ିକ ଅଧ୍ୟୟନ କରୁଥିଲେ ।

ଆଗରୁ କୁହାଯାଇଛି ଜବାହରଲାଲ ନେହରୁଙ୍କର ସେ ଥିଲେ ଅତି ଘନିଷ୍ଠ । ନେହରୁଙ୍କ ମୃତ୍ୟୁପରେ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ବି ବିଜୁବାବୁଙ୍କର ତାଙ୍କ ସହିତ ଘନିଷ୍ଠତା ଥାଏ, ଯଦିଓ ସେତେବେଳେ ବିଜୁବାବୁ ଆଉ କଂଗ୍ରେସରେ ନଥିଲେ । ଥରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ କୋଲକାତା ଆସି ରାଜଭବନରେ ଥାଆନ୍ତି । ବିଜୁବାବୁ ଗଲେ ତାଙ୍କୁ ଦେଖା କରିବାକୁ । ପ୍ରଧାନମନ୍ତ୍ରୀଙ୍କୁ ଦେଖା କରିବାକୁ ହେଲେ ଆଗରୁ ଯୋଗାଯୋଗ କରିବାକୁ ହୁଏ, ପୂର୍ବ ନିଯୁକ୍ତି ଦରକାର ହୁଏ । ଏସବୁ କିଛି ବିଜୁ ପଟ୍ଟନାୟକଙ୍କ ପାଇଁ ଦରକାର ନ ଥିଲା । ତାଙ୍କ ଗାଡ଼ି ପହଞ୍ଚିଲା ରାଜଭବନ ଫାଟକରେ । ଗାଡ଼ି ଅଟକାଇ ଥିବା ପୋଲିସ ଅଧିକାରୀଙ୍କୁ ସେ କହିଲେ- 'ମୁଁ ବିଜୁ ପଟ୍ଟନାୟକ, ପି.ଏମ୍.ଙ୍କୁ ଦେଖାକରିବି ।' ବିଜୁ ପଟ୍ଟନାୟକଙ୍କୁ ନ ଜାଣେ କିଏ ? ତାଙ୍କୁ ପୁଣି ଅଟକାଇବ କିଏ ? ସଙ୍ଗେସଙ୍ଗେ ଯୋଗଯୋଗ ହୋଇଗଲା ଦେଖାକରିବା ପାଇଁ ଫାଟକ ଖୋଲି ଗଲା । ଝଡ଼ବେଗରେ ସେ ପଶିଗଲେ ପ୍ରଧାନମନ୍ତ୍ରୀଙ୍କ ପ୍ରକୋଷ୍ଠକୁ ଓ କିଛି ସମୟ କଥାବାର୍ତ୍ତା କରି ଝଡ଼ବେଗରେ ବାହାରି ଆସିଲେ ସେଇଠୁ । ଉପସ୍ଥିତ ଲୋକମାନେ ଚକିତ ହୋଇ ଚାହିଁଥିଲେ । ସେ କଂଗ୍ରେସରେ ଥିଲାବେଳେ ପଶ୍ଚିମବଙ୍ଗର ନିର୍ବାଚନ ଦାୟିତ୍ୱରେ ଥାଆନ୍ତି । ସେତେବେଳେ ରାଜ୍ୟର ସହର ଓ ଗ୍ରାମାଞ୍ଚଳରେ ବୁଲି ବୁଲି ଦଳକୁ ସେ ସୁସଙ୍ଗଠିତ କରିଥିଲେ । ସେତେବେଳକୁ ତାଙ୍କର ଶୌର୍ଯ୍ୟ, ସାମର୍ଥ୍ୟ, ନେତୃତ୍ୱ, ବ୍ୟକ୍ତିତ୍ୱ ପଶ୍ଚିମବଙ୍ଗର ଜନମାନସରେ ପ୍ରତିବିମ୍ବିତ ହେଉଥାଏ । ତାଙ୍କୁ ଦେଖିବାକୁ ଦଳେ ଦଳେ ଅପେକ୍ଷା କରୁଥାଆନ୍ତି । ଏକଥା ମୁଁ କଂଗ୍ରେସୀ ଓ ଅଣକଂଗ୍ରେସୀ ବନ୍ଧୁମାନଙ୍କଠାରୁ ଅନେକ ଥର ଶୁଣିଛି ।

'ମୁଁ ବିଜୁ ପଟ୍ଟନାୟକ, ପି.ଏମ୍.ଙ୍କୁ ଦେଖାକରିବି ।' ବିଜୁ ପଟ୍ଟନାୟକଙ୍କୁ ନ ଜାଣେ କିଏ ? ତାଙ୍କୁ ପୁଣି ଅଟକାଇବ କିଏ ? ସଙ୍ଗେସଙ୍ଗେ ଯୋଗଯୋଗ ହୋଇଗଲା ଦେଖାକରିବା ପାଇଁ ଫାଟକ ଖୋଲି ଗଲା । ଝଡ଼ବେଗରେ ସେ ପଶିଗଲେ ପ୍ରଧାନମନ୍ତ୍ରୀଙ୍କ ପ୍ରକୋଷ୍ଠକୁ ଓ କିଛି ସମୟ କଥାବାର୍ତ୍ତା କରି ଝଡ଼ବେଗରେ ବାହାରି ଆସିଲେ ସେଇଠୁ । ଉପସ୍ଥିତ ଲୋକମାନେ ଚକିତ ହୋଇ ଚାହିଁଥିଲେ ।

୧୯୬୭ ମସିହାର କଥା । ରାଉରକେଲା ଇସ୍ପାତ କାରଖାନା ପ୍ରତିଷ୍ଠିତ ହେବା ପରେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନାର ଆବଶ୍ୟକତା ଅନୁଭୂତ ହେଉଥାଏ । କେବଳ ଓଡ଼ିଶାର ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ ପାଇଁ ନୁହେଁ, ପୂର୍ବ ଭାରତର ଅର୍ଥନୈତିକ ଅବସ୍ଥାକୁ ଦୃଢ଼ କରିବାକୁ ଏହାର ପ୍ରୟୋଜନ ଥାଏ । ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଅନୁକୂଳ ପରିସ୍ଥିତି ଥିବାରୁ ଏହି ଦାବି ଅମୂଳକ ନଥିଲା । କୋଲକାତାରେ ସେତେବେଳେ ବିଜୁବାବୁ ରହୁଥିଲେ । ଏହି ସୁଯୋଗକୁ କେତେଜଣ ଯୁବକ ହାତଛଡ଼ା କଲେ ନାହିଁ । ସେମାନେ ସେତେବେଳେ କୋଲକାତାରେ ଅଧ୍ୟୟନ କରୁଥିଲେ । ୟୁନିଭର୍ସିଟି ଇନଷ୍ଟିଚ୍ୟୁଟ ହଲରେ ଆୟୋଜିତ ହେଲା ଜନସଭା । ଉଦ୍ଦେଶ୍ୟ ଥିଲା ପୂର୍ବ ଭାରତର ଅର୍ଥନୈତିକ ବିକାଶ ପାଇଁ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠିତ ହେଉ । ସେଇ ବିରାଟ ସଭାରେ ବିଜୁ ପଟ୍ଟନାୟକ ଥିଲେ ମୁଖ୍ୟ ଅତିଥି - ଆକର୍ଷଣର କେନ୍ଦ୍ରବିନ୍ଦୁ । ଡକ୍ଟର ପ୍ରତାପ ଚନ୍ଦ୍ର ଥିଲେ ଉଦ୍‌ଘାଟକ । ମୁଁ ସେହି ସଭାର ଥିଲି ସଭାପତି । ସଭା ଆରମ୍ଭ ହେବା ପୂର୍ବରୁ ସେଇ ବିରାଟ ସଭାକକ୍ଷ ପରିପୂର୍ଣ୍ଣ ହୋଇଯାଇଥିଲା । କେହି ଆସିଥିଲେ ପ୍ରିୟ ଜନନେତା ବିଜୁବାବୁଙ୍କ କଥା ଶୁଣିବାକୁ, କେହି ପୁଣି ଆସିଥିଲେ ତାଙ୍କ ଚେହେରା ଦେଖିବାକୁ । ବିଭିନ୍ନ ଭାଷାଭାଷୀ ଲୋକଙ୍କର ସମାବେଶ । ଗଣମାଧ୍ୟମର ପ୍ରତିନିଧିମାନଙ୍କର ପ୍ରଚଣ୍ଡ ଭିଡ଼ । ବିଜୁବାବୁ ଓଡ଼ିଆରେ ଭାଷଣ ଦେଉଥିଲେ ହେଁ ସେମାନଙ୍କ ପାଇଁ ମଝିରେ ମଝିରେ ଇଂରାଜୀରେ କହୁଥିଲେ । ଅକାଟ୍ୟ ଯୁକ୍ତି ଦେଇ ସେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଦାବି ଉପସ୍ଥାପନ କଲେ । ପ୍ରଚଣ୍ଡ କରତାଳିରେ ସଭାକକ୍ଷ ଉଚ୍ଛୁଳି ପଡୁଥିଲା । ମୁଁ ଲକ୍ଷ୍ୟ କରୁଥିଲି, ଅନୁଭବ କରୁଥିଲି ଅଣଓଡ଼ିଆ ଲୋକଙ୍କ ପାଖରେ ସେ କେତେ ଲୋକପ୍ରିୟ, କେତେ ବିରାଟ । ଧନ୍ୟ ଉତ୍କଳ ଜନନୀ - ଏହିଭଳି ଜଣେ ସୁପୁତ୍ରକୁ ଜନ୍ମଦେଇ ଭାରତର ମାଟିକୁ ଧନ୍ୟ କରି ଦେଇଛି ।

ଏହାପରେ ଦଶବର୍ଷ ବିତି ଯାଇଛି । ପଶ୍ଚିମବଙ୍ଗ ଗୋପବନ୍ଧୁ ଶତବାର୍ଷିକ କମିଟି ତରଫରୁ ଆୟୋଜିତ ହେଲା ରାଜ୍ୟସ୍ତରୀୟ ଗୋପବନ୍ଧୁ ଶତବାର୍ଷିକ ଉତ୍ସବ । ଶତବାର୍ଷିକ କମିଟିର ସଭାପତି ଥିଲି ମୁଁ । ପଶ୍ଚିମବଙ୍ଗର ପୂର୍ତ୍ତ ମନ୍ତ୍ରୀ ଯତୀନ ଚକ୍ରବର୍ତ୍ତୀ, ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁଙ୍କ ସହିତ ମୁଁ ଯୋଗାଯୋଗ କଲି କୋଲକତାରେ ଗୋପବନ୍ଧୁଙ୍କର ଏକ ପୂର୍ଣ୍ଣାବୟବ ବ୍ରୋଞ୍ଜ ମୂର୍ତ୍ତି ସ୍ଥାପନ କରିବାକୁ । ବିନାଦ୍ୱିଧାରେ ମୁଖ୍ୟମନ୍ତ୍ରୀ ସ୍ୱୀକୃତି ଦେଲେ । ସ୍ଥିର ହେଲା କୋଲକାତାର କେନ୍ଦ୍ର ପୀଠ, ଐତିହାସିକ ପୀଠ ରାଜା ସୁବୋଧ ମଲ୍ଲିକ ସ୍କୋୟାରରେ ସ୍ଥାପିତ ହେବ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି । ଏ କ୍ଷେତ୍ରରେ ତତ୍କାଳୀନ ଦୈନିକ

ସମାଜର ସଂପାଦକ ଡକ୍ଟର ରାଧାନାଥ ରଥ ଆମକୁ ସବୁ ପ୍ରକାର ସାହାଯ୍ୟ କରୁଥିଲେ । ଆମେ ଚାହିଁବା ଆଗରୁ ପଶ୍ଚିମବଙ୍ଗ ସରକାର ଚାହିଁଲେ ଏକଦା ଓଡ଼ିଶାର ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ନେଇ ପ୍ରତିମୂର୍ତ୍ତି ଉନ୍ମୋଚନ କରାଇବେ । ଆମେ ଚାହିଁଥିଲୁ କେନ୍ଦ୍ର ଇସ୍ପାତ ଓ ଖଣି ମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ଅତିଥି ଭାବେ ପାଇବାକୁ । ଆମଠାରୁ ପଶ୍ଚିମବଙ୍ଗ ସରକାର ବେଶି ଉତ୍ସାହିତ ହୋଇଥିଲେ ବିଜୁ ପଟ୍ଟନାୟକଙ୍କୁ ପାଇବାକୁ । ସେଥିପାଇଁ କୋଲକାତାରୁ ଦିଲ୍ଲୀକୁ ଘନ ଘନ ଟେଲିଫୋନ କରାଗଲା । ଶେଷରେ ବିଜୁବାବୁ ରାଜି ହେଲେ । ସେହି ଐତିହାସିକ ଉତ୍ସବରେ ଜ୍ୟୋତିବାବୁ ଯେତିକି ଆକର୍ଷଣୀୟ ଥିଲେ ବିଜୁବାବୁ ମଧ୍ୟ ସେତିକି ଆକର୍ଷଣୀୟ ଥିଲେ । ଚାରିଆଡୁ ମାଡ଼ି ଆସିଥିଲା ଜନସମୁଦ୍ରର ଜୁଆର । ବିଜୁବାବୁ ଓ ଜ୍ୟୋତିବାବୁ ସଭା ମଞ୍ଚରେ ପହଞ୍ଚିଲା ବେଳକୁ 'ବିଜୁ ପଟ୍ଟନାୟକ ଲାଲ ସେଲାମ, ଜ୍ୟୋତିବସୁ ଲାଲ ସେଲାମ' ସ୍ଲୋଗାନରେ ବିରାଟ ସେହି ଜନସଭା ମୁଖରିତ ହୋଇଥିଲା । ବିଜୁବାବୁ ଭାଷଣ ଦେଲାବେଳେ ପ୍ରଥମେ ଆରମ୍ଭ କଲେ 'ମୋର ଓଡ଼ିଆ ଭାଇମାନେ ଜ୍ୟୋତି ପାଇଁ ମୋତେ ଲାଲସେଲାମ ଦେଲେ ।' ବିଜୁବାବୁଙ୍କର ଏହି ପରିହାସପୂର୍ଣ୍ଣ କଥା ଶୁଣି ଜ୍ୟୋତିବାବୁ କେବଳ ହସି ଦେଇଥିଲେ । ତାହାପରେ ବିଜୁବାବୁ କହିଲେ 'ଆଜି ଯାହା ବଙ୍ଗ ଭୂମିରେ ଉଚ୍ଚାରିତ ହୁଏ, ଆଗାମୀ କାଲି ତାହା ଅବଶିଷ୍ଟ ଭାରତଭୂମିରେ ଉଚ୍ଚାରିତ ହୁଏ - ଏକଥା ଠିକ୍ ନୁହେଁ ।' ଉଲ୍ଲେଖଯୋଗ୍ୟ ଯେ ବିଶ୍ୱନାଥ ଦାସଙ୍କ ଭାଷଣ ଶୁଣିବା ପରେ ଏହା ଥିଲା ତାଙ୍କର ପ୍ରତିକ୍ରିୟା । ତାଙ୍କ ଭାଷଣରେ ସେ ମହାନ୍ ଜନନେତା ଗୋପବନ୍ଧୁ ଦାସଙ୍କୁ ଭାରତମାତାର ଜଣେ ଯୋଗ୍ୟ ସନ୍ତାନ ବୋଲି ପ୍ରତିପାଦିତ କରିଥିଲେ । ସେହି ଉତ୍ସବ ଥିଲା ଐତିହାସିକ ଉତ୍ସବ । ସେଭଳି ଉତ୍ସବ କେବେ ଓଡ଼ିଆମାନଙ୍କର ଆଗରୁ ହୋଇନଥିଲା, ଅବଶ୍ୟ ଆଉ କେବେ ହେବ କି ନାହିଁ କହିହେବ ନାହିଁ । ସେହି ଉତ୍ସବର ଗୌରବ ମଣ୍ଡନ କରିଥିଲେ ଐତିହାସିକ ପୁରୁଷ ବିଜୁ ପଟ୍ଟନାୟକ । ସେଦିନ ସେହି ଅଗଣିତ ଓଡ଼ିଆ ଓ ଅଣଓଡ଼ିଆ ଜନମାନସରେ ସେ ଚିରନ୍ତନ ସ୍ୱାକ୍ଷର ଆଙ୍କି ଦେଇଥିଲେ ।

ଶିଳ୍ପ ସଂସ୍ଥାର ପରିଚାଳନା କାର୍ଯ୍ୟ କିପରି ଚାଲିଛି ଜାଣିବାକୁ ସେ ବେଳେ ବେଳେ ଅତର୍କିତ ଭାବରେ ପହଞ୍ଚି ଯାଉଥିଲେ କୋଲକାତାରେ । ସେଦିନ ଟ୍ରେନ ଆସି ହାଓ୍ୱଡ଼ାରେ ପହଞ୍ଚିଲା ବିଳମ୍ବିତ ରାତ୍ରିରେ । ଯାନବାହନ କିଛି ନଥିଲା । ସେ ଚାଲି ଚାଲି ଆସି ପହଞ୍ଚିଲେ ୩୩ ନମ୍ବର ଚିତ୍ତରଞ୍ଜନ ଏଭେନ୍ୟୁରେ । ସେଠି ତାଙ୍କର ନିମ୍ନବେତନ ଭୋଗୀ କର୍ମଚାରୀ କେତେଜଣ ରହୁଥିଲେ । ସେତେବେଳକୁ ସେମାନେ ଖାଇପିଇ ଶୋଇ ପଡ଼ିଥିଲେ । କବାଟରେ ଠକ୍ ଠକ୍ ଶବ୍ଦ ହେଲା । କବାଟ ଖୋଲି ସେମାନେ ଦେଖିଲେ ବିଜୁବାବୁ ଠିଆ ହୋଇଛନ୍ତି । ଅବାକ୍ ହୋଇଗଲେ ସେମାନେ ଏହି ଅସମୟରେ ତାଙ୍କୁ ଦେଖି । ବିଜୁବାବୁ ଘରେ ପଶି କହିଲେ, 'କ'ଣ ଖାଇବାକୁ ଅଛି ଆଣ ।' ସେମାନେ କ'ଣ କରିବେ କୂଳ କିନାରା ପାଇଲେ ନାହିଁ । ସେମାନଙ୍କ ଅସହାୟତା ଦେଖି ସେ ନିଜେ କହିଲେ, 'ମୋତେ ଭୋକ କରୁଛି ଯାହା ଅଛି ଦିଅ ।' ଚାରିପାଞ୍ଚ ପଟ ରୁଟି ଛଡ଼ା ସେମାନଙ୍କ ପାଖରେ ଆଉ କିଛି ନଥିଲା । ସେଦିନ ରାତିରେ ସେ ଗୁଡ଼ ଦେଇ ରୁଟି କେଇପଟ ଖାଇ ଶୋଇଲେ । ଏହି ଘଟଣା ମୁଁ ସେହି କର୍ମଚାରୀମାନଙ୍କଠାରୁ ଶୁଣିଛି । ସେହି ବିଜୁବାବୁଙ୍କର ଇଲିସି ମାଛ ଓ ଚିଙ୍ଗୁଡ଼ି ମାଛ ଥିଲା ପ୍ରିୟ ଖାଦ୍ୟ । କୋଲକାତାର ବାଲିଗଞ୍ଜ-ଗଡ଼ିଆ ହାଟରୁ ସେହି ଲୋକଟି ବିଜୁବାବୁ ଦିଲ୍ଲୀରେ ଥିବାବେଳେ ତାଙ୍କ ପାଖକୁ ନିୟମିତ ପଠାଉଥିଲା ଚିଙ୍ଗୁଡ଼ି ମାଛ । ୧୯୯୭ ଏପ୍ରିଲ ୧୭ ତାରିଖ ସକାଳେ ସେ ଶୁଣିଲା ବିଜୁବାବୁ ଆଉ ନାହାନ୍ତି । ସେ ଭୋ ଭୋ କରି କାନ୍ଦି ପକାଇଲା । ସେ କୋହ ସମ୍ଭାଳି ପାରିଲା ନାହିଁ । ଏହିଭଳି ଛୋଟ ବଡ଼ ବହୁ ସ୍ମୃତି ଚିହ୍ନ ସେ ରଖି ଯାଇଛନ୍ତି ଏହି ସହରରେ, ଯାହାର ଟିପ୍ପଣୀ ଦେଲେ ଦୀର୍ଘ ହେବ ।

'ମୋତେ ଭୋକ କରୁଛି ଯାହା ଅଛି ଦିଅ ।' ଚାରିପାଞ୍ଚ ପଟ ରୁଟି ଛଡ଼ା ସେମାନଙ୍କ ପାଖରେ ଆଉ କିଛି ନଥିଲା । ସେଦିନ ରାତିରେ ସେ ଗୁଡ଼ ଦେଇ ରୁଟି କେଇପଟ ଖାଇ ଶୋଇଲେ । ଏହି ଘଟଣା ମୁଁ ସେହି କର୍ମଚାରୀମାନଙ୍କଠାରୁ ଶୁଣିଛି ।

ଓ-୧୨, କ୍ଲଷ୍ଟର-୩
ପୂର୍ବାଞ୍ଚଳ ସଲ୍ଟଲେଖ, କୋଲକାତା-୭୦୦୦୯୭



# ବିଜୁବାବୁଙ୍କ ପବିତ୍ର ଜନ୍ମସ୍ଥଳୀ କଟକର ଆନନ୍ଦଭବନ

ଡଃ ବି.କେ. ରଥ

**କ**ଟକ ସହରର ତୁଳସୀପୁର ଅନ୍ତର୍ଗତ ସେହି ଆନନ୍ଦଭବନ ବିଜୁବାବୁଙ୍କୁ ଜନ୍ମଦେଇ ଗର୍ବିତ । ଊନବିଂଶ ଶତାବ୍ଦୀ ପରବର୍ତ୍ତୀ ଓ ବିଂଶ ଶତାବ୍ଦୀର ଆରମ୍ଭ କାଳରେ ବିଜୁବାବୁଙ୍କ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ସେହି 'ଆନନ୍ଦ ଭବନ' ନିର୍ମାଣ କରିଥିଲେ ।

ଦୁଇ ମହଲା ବିଶିଷ୍ଟ ସେହି କୋଠାଘରଟି ଆୟତନ ଦୃଷ୍ଟିରୁ ବଡ଼ । କୋଠାଘରଟିରେ ଔପନିବେଶିକ କାରୁକାର୍ଯ୍ୟର ସଙ୍କେତ ସୁସ୍ପଷ୍ଟ । ଗୃହର ସମ୍ମୁଖ ଭାଗରେ ପୋର୍ଟିକୋ ଓ ଖମ୍ବଯୁକ୍ତ ବାରଣ୍ଡା ରହିଛି । ଇଟା, ଚୂନ ଓ ସିମେଣ୍ଟ ମିଶ୍ରିତ ପକ୍କା ଗୃହ । ଘରର ଛାତ ଭାରା ଦେଇଛି କାଷ୍ଠ ନିର୍ମିତ କଡ଼ିକାଠ ଉପରେ ।



ବୈମାନିକ ବିଜୁ

ଏହି ଗୃହର ତଳ ମହଲାରେ ରହିଛି ଦଶଗୋଟି ବାସୋପଯୋଗୀ କୋଠରୀ, ଚଟାଣ, ବାରଣ୍ଡା, ପାକଶାଳ ଓ ଭଣ୍ଡାରଘର ସହିତ । ଗୃହର ପଶ୍ଚାତ ଭାଗର ଉପର ମହଲାରେ ରହିଛି ଚାରିଗୋଟି କୋଠରୀ । ପୂର୍ବରୁ ମରାମତି ହୋଇଥିବା ଯୋଗୁଁ କୋଠାଘରଟିର ଅବସ୍ଥା ମୋଟାମୋଟି ଚଳନୀୟ । କିନ୍ତୁ ଏହାର ସଂରକ୍ଷଣ ପାଇଁ ଅନେକ ହେପାଜତ କରାଯିବା ଦରକାର । ଗୃହର ପଶ୍ଚିମ ଭାଗରେ ରହିଛି ଦଦରା ଅବସ୍ଥାରେ ଥିବା ଚାଳିଆ ଘରଟିଏ । ଗୃହର ଚାରିପଟେ ପାଚେରୀ ରହିଛି ଏବଂ ପୂର୍ବ ଓ ପଶ୍ଚିମ ପଟେ ଦୁଇ ଦୁଇଟି ଫାଟକ ରହିଛି ।



'ଆନନ୍ଦ ଭବନ'ର ଏକ ଦୃଶ୍ୟ

ଗୃହର କାଠ କବାଟ ଓ ଝରକାଗୁଡ଼ିକର ରାସାୟନିକ ମରାମତି ଆବଶ୍ୟକ । ଘର କାନ୍ଥମାନଙ୍କରେ ଥିବା ପ୍ଲାଷ୍ଟର ସବୁ ଅନେକ ସ୍ଥାନରେ ଦୁର୍ବଳ ହୋଇଯାଇଥିବାରୁ ସେ ସବୁର ମରାମତି ଆବଶ୍ୟକ ।

ଏହି ଗୃହରେ ବହୁ ପୁରୁଣା ଫଟୋଚିତ୍ରମାନ ଶୋଭାପାଉଛି । ସେଥିରେ ଜାତୀୟସ୍ତରର ନେତାମାନଙ୍କ ଫଟୋଚିତ୍ର ମଧ୍ୟ ରହିଛି । ଘରେ ଶୋଭା ପାଉଛି ଅତ୍ୟାଧୁନିକ ଘରକରଣା ଦ୍ରବ୍ୟ, ଚୀନାମାଟିର ଦ୍ରବ୍ୟ, ବିଦ୍ୟୁତ ଓ ସ୍ୱାସ୍ଥ୍ୟରକ୍ଷାର ଦ୍ରବ୍ୟ ।



'ଆନନ୍ଦ ଭବନ'ର ଅନ୍ୟ ଏକ ଅଂଶ

ବିଜୁବାବୁଙ୍କ ପରି ଜଣେ ବହୁ ପ୍ରତିଭାସଂପନ୍ନ ବରପୁତ୍ରଙ୍କର ଏହି ବାସଭବନଟି ଏକ ତୀର୍ଥସ୍ଥାନ ସଦୃଶ । ରାଜ୍ୟ ବାହାର ଓ ଭିତରର ଅନେକ ବ୍ୟକ୍ତି ସେଠାରେ ବିଜୁବାବୁଙ୍କର ଏକ ମ୍ୟୁଜିୟମ ହେବା ପାଇଁ ଇଚ୍ଛା କରୁଛନ୍ତି । କାରଣ ବିଜୁବାବୁ ସେଠାରେ କେବଳ ଜନ୍ମ ହୋଇ ନଥିଲେ, ତାଙ୍କର ପିଲାଦିନ ସେଠାରେ ହିଁ କଟିଥିଲା । ଭାରତୀୟ ସ୍ୱାଧୀନତା ସଂଗ୍ରାମକାଳୀନ ବହୁ ଘଟଣା ଓ ଇତିହାସର ମୂକସାକ୍ଷୀ ହେଉଛି 'ଆନନ୍ଦ ଭବନ' । ଏହି ଗୃହରେ ଏକଦା ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କର ସମାଗମ ହେଉଥିଲା । ବିଚିତ୍ର ସାମଞ୍ଜସ୍ୟ ଯେ ଆହ୍ଲାବାଦରେ ନେହରୁ ପରିବାରର ବାସଭବନର ନାମ ମଧ୍ୟ 'ଆନନ୍ଦ ଭବନ' ଯାହାକୁ ଭାରତ ସରକାର ଏବେ ମ୍ୟୁଜିୟମରେ ପରିଣତ କରିଛନ୍ତି । କଟକର 'ଆନନ୍ଦ ଭବନ'- ମଧ୍ୟ ନିକଟ ଭବିଷ୍ୟତରେ ବିଜୁବାବୁଙ୍କ ସ୍ମୃତି ସଙ୍କେତ ବହନ କରି ମ୍ୟୁଜିୟମରେ ପରିଣତ ହେବ ବୋଲି ଆଶା କରାଯାଉଛି ।

ଏଚ୍.ଆଇ.ଭି.-୩୩
ଫେଜ୍-୧, ହାଉସିଂବୋର୍ଡ଼ କଲୋନୀ
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର



'ଆନନ୍ଦ ଭବନ' ଭିତରେ ଥିବା ଏକ କୋଠରୀର ଦୃଶ୍ୟ

# ବିଜୁ ପଟ୍ଟନାୟକ : ଏକ ଅମ୍ଳାନ ପ୍ରତିଭା

ଗଦାଧର ଦାସ

ଓଡ଼ିଶା ମାଟିର ଓଡ଼ିଆ ଜାତି ପାଇଁ ଗୌରବମୟ ଐତିହ୍ୟ ଓ ସଂସ୍କୃତିର ସ୍ୱାଭିମାନ ବହନ କରି ସେଦିନର ତରୁଣ ଦିନେ ଯେ ଅବଦମିତ ହୋଇ ଉଠିବେ - ଏକଥା କିଏ ବା କାହିଁକି କଳ୍ପନା କରିଥିବ ? ଶୈଶବରୁ ବିଜୁ ପଟ୍ଟନାୟକଙ୍କଠାରେ ଯେଉଁ ସବୁ ଲକ୍ଷଣ ପରିସ୍ଫୁଟ ହୋଇଥିଲା - ସେଥିରେ ତାଙ୍କର ସ୍ୱାଭିମାନୀ ମନ, ଅଭୀପ୍ସା ସଫଳତାର ଶିଖରରେ ପହଞ୍ଚିବାର ଦୁର୍ବାର ଆଶା ଓ ଆକାଂକ୍ଷା ପ୍ରତିଫଳିତ ହୋଇଛି ତାଙ୍କ କର୍ମମୟ ଜୀବନ ଇତିହାସରେ ।



ଓଡ଼ିଶା ବା କଳିଙ୍ଗର ଗୌରବମୟ ଇତିହାସରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗ ସାମ୍ରାଜ୍ୟର ସୀମା ବୃଦ୍ଧି, ଅମ୍ଳାନ ଯଶ ଓ ପ୍ରତିଭାର ଅଧିକାରୀ ସମ୍ରାଟ ଖାରବେଳଙ୍କ ବୀରତ୍ୱ ତଥା ଗାରିମା, କଳିଙ୍ଗ ଯୁଦ୍ଧର କଳିଙ୍ଗ ବୀରମାନଙ୍କର ରକ୍ତରଞ୍ଜିତ ବୀରତ୍ୱ ତଥା ଆତ୍ମତ୍ୟାଗ, ଚଣ୍ଡାଶୋକ ସମ୍ରାଟ ଅଶୋକଙ୍କ ଧର୍ମାଶୋକରେ ପରିବର୍ତ୍ତନର କାହାଣୀ, ଉତ୍କଳର ଓଡ଼ିଆ ସାଧବପୁଅର ପାଲଟଣା ବୋଇତରେ ସାତ ଦରିଆ ପାରିରେ ବେପାର ବଣିଜ କଳିଙ୍ଗକୁ ଏକ ବିତ୍ତଶାଳୀ ରାଷ୍ଟ୍ରରେ ପରିଣତ କରିବାର ଦୁର୍ବାର ଆଶା ଓ ପ୍ରେରଣା ଯୋଗାଇ ଥିଲା ସେଇ କିଶୋର ପ୍ରାଣରେ । ଓଡ଼ିଆ ଜାତିର ଗର୍ବୋନ୍ନତ ତଥା ଦୁଃସାହସିକ ହେବାର ଉଦ୍ଦାମ ଆକାଂକ୍ଷା, ପ୍ରେରଣା ଯୋଗାଇ ଥିଲା ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ସ୍ୱାଭିମାନ ତଥା ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ମାନବ ସେବାର ଜ୍ୱଳନ୍ତ ଦୃଷ୍ଟାନ୍ତ ଚଳଚଞ୍ଚଳ କରି ଦେଇଥିଲା ସେଇ ତରୁଣଟିକୁ, ପ୍ରେରଣା ଯୋଗାଇ ଥିଲା ଜାତିର ପିତା ମହାତ୍ମା ଗାନ୍ଧୀଙ୍କର ଆଦର୍ଶ ଓ ଦୃଢ଼ ସଂକଳ୍ପ । ଜୟପ୍ରକାଶଙ୍କର କର୍ତ୍ତବ୍ୟନିଷ୍ଠା ଓ ଦୃଢ଼ ନେତୃତ୍ୱ ସେହି ଯୁବକଙ୍କୁ ସଂଗ୍ରାମୀ କରିବାକୁ ବାଧ କରିଥିଲ ।

ଓଡ଼ିଶାର ଭୂଗୋଳକୁ ତନ୍ନ ତନ୍ନ କରି ବିଶ୍ଳେଷଣ କଲାପରେ ଏହାର ଖଣି, ଖାଦାନ, ବଣ, ଜଙ୍ଗଲ, ନଦନଦୀ, ସମୁଦ୍ର ଅମାପ ସମ୍ପତ୍ତିର ଅବସ୍ଥିତି ବିଚଳିତ କରିଥିଲା ସେଇ ଯୁବକଟିର ମନକୁ । ସେଇଥିପାଇଁ ସେ ହୋଇ ଉଠିଥିଲେ ସଫଳ ଦୁଃସାହସୀ ଓ ସଂଗ୍ରାମୀ । ନିଜର ଦକ୍ଷତା ଓ ବିଚକ୍ଷଣତାର ପ୍ରମାଣ ଦେଇଥିଲେ ୧୯୪୨ର ଭାରତଛାଡ଼ ଆନ୍ଦୋଳନ ବେଳେ ଅଣ୍ଡରଗ୍ରାଉଣ୍ଡ କାର୍ଯ୍ୟରେ । ବିଶ୍ୱର ବହୁ ମହାମନିଷୀଙ୍କ ସଂସ୍ପର୍ଶରେ ଆସି ନିଜ ଭିତରେ ଜାତୀୟତା ବୋଧର ନିଶା ଜାଗ୍ରତ କରି ପାରିଥିଲେ । ଠୋସ୍ ଜବାବ ଦେଇଥିଲେ ଗୋରାମାନଙ୍କୁ ଯେଉଁମାନେ ଭାରତୀୟମାନଙ୍କୁ ଘୃଣା କରୁଥିଲେ ଭାରତୀୟମାନଙ୍କ ମର୍ଯ୍ୟାଦାକୁ ଭୂଲୁଣ୍ଠିତ କରୁଥିଲେ, ବିଦ୍ରୁପ କରୁଥିଲେ, ନିଜର ପଦମର୍ଯ୍ୟାଦା, କ୍ଷମତା, ସମ୍ଭୋଗକୁ ପଦଦଳିତ କରି ଦେଶ ଜାତିର ମୁକ୍ତି ପାଇଁ ନିଜକୁ ଝାସ ଦେଇଥିଲେ ସ୍ୱାଧୀନତା ସଂଗ୍ରାମରେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସ୍ୱଦେଶ ପାଇଁ, ସ୍ୱଜାତି ପାଇଁ ଗୋରା ସରକାରଙ୍କ ଦୃଷ୍ଟିରେ ହେଲେ ଦେଶଦ୍ରୋହୀ, ହାତରେ କଡ଼ି, ଗୋଡ଼ରେ ବେଡ଼ି ପିନ୍ଧି ହେଲେ ଅନ୍ଧକାର କାରାଗାରରେ ବନ୍ଦୀ ।

ତଥାପି ସେ ବିଚଳିତ ହୋଇ ନଥିଲେ । ଓଡ଼ିଆ ପୁଅ, ଓଡ଼ିଶା ମାଟିର ଜନ୍ମ ତଥା ପାଣି ଓ ପବନରେ ପୁଷ୍ଟ ବିଜୁ ପଟ୍ଟନାୟକଙ୍କର ଦେଶ ଓ ଜାତି ପାଇଁ ଉଲ୍ଲେଖନୀୟ କାର୍ଯ୍ୟାବଳୀ ଭାରତର ସ୍ୱର୍ଗତଃ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କୁ ଆକୃଷ୍ଟ କରିଥିଲା ।

ଓଡ଼ିଶାରେ ସେତେବେଳେ ଶିଳ୍ପ ପ୍ରତିଷ୍ଠା ପାଇଁ ଉଦ୍ୟମ ନଥିଲା, ଋଣ କିମ୍ବା ସବ୍‌ସିଡ଼ି ନଥିଲା, ବ୍ୟାଙ୍କ ନଥିଲା ଏପରିକି କୁଶଳୀ ତଥା

ବୈଷୟିକ ଜ୍ଞାନ ମଧ୍ୟ ନଥିଲା । ଅନ୍ୟ ଦିଗରୁ ବିଶ୍ଳେଷଣ କଲେ ଓଡ଼ିଶାରେ 'ବିଜୁଳି ନାହିଁ, ପାଣି ନାହିଁ, ପୋଲ ନାହିଁ, ଗାଡ଼ି ଯିବା ଭଳି ରାସ୍ତା ନାହିଁ ତଥାପି ବିଜୁବାବୁଙ୍କର ଜିଦ୍ ଥିଲା, ସେ ଶିଳ୍ପ ପ୍ରତିଷ୍ଠା କରିବେ । କଲେ ମଧ୍ୟ । ଚୌଦ୍ୱାରରେ 'ଓଡ଼ିଶା ଟେକ୍ସଟାଇଲ ମିଲ୍ସ' ବହୁ ଘାତ ପ୍ରତିଘାତ ମଧ୍ୟରେ ପ୍ରତିଷ୍ଠା କରିବା କମ୍ ବିସ୍ମୟକର କଥା ନୁହେଁ । ପୁଣି ଭାରତର ପ୍ରଥମ ଟ୍ୟୁବ କାରଖାନା 'କଳିଙ୍ଗ ଟ୍ୟୁବ୍ସ' ପ୍ରତିଷ୍ଠା ଏସିଆ ମହାଦେଶର ବୃହତ୍ତମ ଟ୍ୟୁବ୍ ମିଲ୍ସର କର୍ମମୁଖର ପରିବେଶ ଓଡ଼ିଶାର ଜନମାନସକୁ ଚଳଚଞ୍ଚଳ କରି ଦେଇଥିଲା । ଭାରତବର୍ଷର ଅନ୍ୟତମ ବୃହତ୍ତମ ଲୁହା କାରଖାନା ବଡ଼ବିଲଠାରେ 'କଳିଙ୍ଗ ଆଇରନ ଓ୍ୱାର୍କସ' ପ୍ରତିଷ୍ଠା କଲେ । ଓଡ଼ିଶା ମାଟି ତଳେ ଅସରନ୍ତି ଲୁହାପଥର ଗଚ୍ଛିତ ଅଛି, ବିଜୁବାବୁ ଏହାର ଉପଯୁକ୍ତ ବିନିଯୋଗ ପାଇଁ ଚାହିଁଥିଲେ । ଓଡ଼ିଶା ମାଟିର ସନ୍ତାନ 'ବିଜୁବାବୁ' ପ୍ରଥମେ କୋଇଲାରୁ ପେଟ୍ରୋଲ ଉତ୍ପାଦନର ପରିକଳ୍ପନା କରିଥିଲେ ଓ ଏ ସମ୍ପର୍କୀୟ ବୈଷୟିକ ଜ୍ଞାନ ଆହରଣ କରିବାକୁ ଶିକ୍ଷିତ ଓଡ଼ିଆ ଯୁବକଙ୍କୁ ବିଦେଶ ପଠାଇଥିଲେ ।

ଓଡ଼ିଶାକୁ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ କରିବାର ସ୍ୱପ୍ନକୁ ବାସ୍ତବରୂପ ଦେବା ପାଇଁ ବିଜୁବାବୁଙ୍କୁ ବିଚଳିତ କରି ଦେଇଥିଲା । ମାତ୍ର ବ୍ୟକ୍ତିଗତ ପୁଞ୍ଜି ଆଉ ଆନୁସଙ୍ଗିକ ବ୍ୟବସ୍ଥା ସୀମିତ ଥିଲା । ସେଥିପାଇଁ ବୋଧହୁଏ ସେ ରାଜ୍ୟ ଶାସନର ମଙ୍ଗ ଧରିବା ପାଇଁ ନିଷ୍ପତ୍ତି ନେଲେ । କ୍ଷମତା ମୋହ ଯୋଗୁଁ ନୁହେଁ- ଓଡ଼ିଆ ଜାତିକୁ ସମୃଦ୍ଧ କରିବାର ପରିକଳ୍ପନା ନେଇ ସେ ମୁଖ୍ୟମନ୍ତ୍ରୀ ହେଲେ । ଓଡ଼ିଶାର ନିର୍ମାଣ ଯୁଗର ଭିତ୍ତିପ୍ରସ୍ତର ସ୍ଥାପନ ହେଲା । ପୂର୍ବ ଉପକୂଳରେ ଗଭୀରତମ ସାମୁଦ୍ରିକ ବନ୍ଦର ପ୍ରତିଷ୍ଠା କଲେ ପାରାଦ୍ୱୀପରେ । ପାରାଦ୍ୱୀପ ବନ୍ଦର କେବଳ ନିର୍ମିତ ହେଲା ନାହିଁ ପ୍ରଗତିର ନିଦର୍ଶନ ସ୍ୱରୂପ ବରଂ କେବଳ ଓଡ଼ିଶାରେ ନୁହେଁ ଭାରତରେ ଏକ ବିରାଟ ବନ୍ଦରର ମାନ୍ୟତା ଲାଭ କଲା ଏହି ବନ୍ଦର ।

'ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଓଡ଼ିଶା, ଦରିଦ୍ରତମ ରାଜ୍ୟ' - ସ୍ୱାଭିମାନୀ ବିଜୁ ପଟ୍ଟନାୟକଙ୍କ ପ୍ରାଣ ବିଚଳିତ ହୋଇ ଉଠିଥିଲା, ବିଦ୍ରୋହ କରି ଉଠିଥିଲା କେନ୍ଦ୍ର ଶାସନ ବିରୁଦ୍ଧରେ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଓଡ଼ିଶାର ଅଧିବାସୀମାନଙ୍କୁ ଅର୍ଥନୈତିକ ସୁଖସ୍ୱାଚ୍ଛନ୍ଦ୍ୟ ଯୋଗାଇ ଦେବା ପାଇଁ ଏକ ସାମାଜିକ ଓ ଅଭିନବ ଅର୍ଥନୈତିକ ବ୍ୟବସ୍ଥା ସେ ଚାହିଁଥିଲେ ।

ବିଜୁବାବୁ ଆଜି ନାହାନ୍ତି ସତ୍ୟ, ତାଙ୍କର ଅନ୍ତିମ ଇଚ୍ଛା 'ମାଆଙ୍କୁ ସମ୍ମାନ, ଗାଁକୁ କାମ' ଆଜି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସରକାରଙ୍କ ଉନ୍ନୟନ କାର୍ଯ୍ୟାବଳୀର ପ୍ରତିଫଳିତ ହୋଇଛି । ଓଡ଼ିଶା କାହିଁକି ଭାରତର ଜନମାନସରେ ସମସ୍ତେ ସ୍ୱୀକାର କରିବେ ଯେ ସେ ଜଣେ କେବଳ ନିଛକ ରାଜନୀତିଜ୍ଞ ନଥିଲେ ବରଂ ଥିଲେ ଜଣେ ରାଷ୍ଟ୍ରୀୟ ନେତା । ତାଙ୍କର କଥାରେ, ଆଚରଣରେ ଏପରିକି ଭାଷଣରେ ଏ ଜାତିର ଗୌରବମୟ ଐତିହ୍ୟର ସ୍ୱାଭିମାନ ପରିସ୍ଫୁଟ । ଇତିହାସ ପୃଷ୍ଠାରେ ସେ ଓଡ଼ିଆ ଜାତିର ଉପଯୁକ୍ତ ଦାୟାଦ ଭାବେ କେବଳ ଗର୍ବିତ ନଥିଲେ - ଏ ଜାତିକୁ ସମୃଦ୍ଧ କରି ଗଢ଼ି ତୋଳିବାର ଦୁର୍ବାର ସଂକଳ୍ପରେ ସେ ନିମଗ୍ନ ଥିଲେ । ଓଡ଼ିଆ ଜାତିକୁ କେବଳ ଜାତୀୟ ସ୍ତରରେ ନୁହେଁ, ବିଶ୍ୱ ଦରବାରରେ ପରିଚିତ କରାଇବାର ଅଭୀପ୍ସା ସେ ତାଙ୍କ କାର୍ଯ୍ୟ ଶୈଳୀରେ ପ୍ରତିଫଳିତ କରିଯାଇଅଛନ୍ତି ।

ରେମୁଣା
ବାଲେଶ୍ୱର



ପାରାଦ୍ୱୀପ ବନ୍ଦର

# ଆମ୍ବେଦକରଙ୍କ ଦୃଷ୍ଟିରେ ସାମାଜିକ ନ୍ୟାୟ

ମାନସ କୁମାର ମଲ୍ଲିକ

**ଭା**ରତୀୟ ସମାଜରେ ହଜାର ହଜାର ବର୍ଷ ଧରି ଜାତି ବର୍ଣ୍ଣ ବ୍ୟବସ୍ଥା ପ୍ରଚଳିତ ଅଛି । ଏହି ବ୍ୟବସ୍ଥାରୁ କାଳକ୍ରମେ ନାନା ପ୍ରକାର ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ତଥା ଅସମାନତା ସୃଷ୍ଟି ହୋଇଛି, ଯାହାଫଳରେ କିଛି ଭାଗ ଲୋକ ବିଭିନ୍ନ ଦୃଷ୍ଟିକୋଣରୁ ସମାଜରେ ସୁବିଧାଜନକ ସ୍ଥିତିରେ ଥିବାବେଳେ ଆଉ କିଛି ଭାଗ ଲୋକ ଅବହେଳିତ ଓ ପଛୁଆ ହୋଇ ପଡ଼ି ରହିଛନ୍ତି । ତା'ଛଡ଼ା ଏହି ଜାତି ବର୍ଣ୍ଣ ବ୍ୟବସ୍ଥାକୁ ଆଧାର କରି ମଣିଷ ମଣିଷ ମଧ୍ୟରେ ଉଚ୍ଚ ନୀଚ ଭେଦଭାବର ଭାବନା ମଧ୍ୟ ସୃଷ୍ଟି ହୋଇ ପରବର୍ତ୍ତୀ ସମୟରେ ଅସ୍ପୃଶ୍ୟତା ଭଳି ସାମାଜିକ ବ୍ୟାଧିକୁ ଜନ୍ମ ଦେଇଛି । ସମାଜରେ ଅସ୍ପୃଶ୍ୟ କୁହାଯାଉଥିବା ମଣିଷମାନେ ସମସ୍ତ ପ୍ରକାର ମାନବିକ ଅଧିକାରରୁ ବଞ୍ଚିତ ହୋଇ ପଶୁବତ ଜୀବନଯାପନ କରିଆସିଛନ୍ତି । ସେମାନଙ୍କ ସ୍ଥିତିକୁ ସୁଧାରିବା ପାଇଁ ଏବଂ ସେମାନେ ସମାଜରେ କିଭଳି ଅନ୍ୟମାନଙ୍କ ଭଳି ସ୍ୱାଭିମାନର ସହିତ ଜୀବନଯାପନ କରିପାରିବେ, ସେଥିପାଇଁ ଅନେକ ସମୟରେ ଅନେକ ସମାଜ ସଂସ୍କାରକ ଉଦ୍ୟମ କରିଆସିଛନ୍ତି । ଅସମାନତା ଏବଂ ବୈଷମ୍ୟ ସୃଷ୍ଟି କରୁଥିବା ଜାତି ଭେଦ ତଥା ଅସ୍ପୃଶ୍ୟତାର ମୂଳୋତ୍ପାଟନ କରି ଦଳିତ ଅବହେଳିତମାନଙ୍କୁ ସାମାଜିକ ନ୍ୟାୟ ଏବଂ ଅର୍ଥନୈତିକ ସ୍ୱାଧୀନତା ପ୍ରଦାନ କରିବାରେ ଯେଉଁ କେତେ ଜଣ ମହାନ୍ ବ୍ୟକ୍ତି ନିଜର ସମଗ୍ର ଜୀବନ କାଳକୁ ଉତ୍ସର୍ଗ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଡକ୍ଟର ଭୀମରାଓ ଆମ୍ବେଦକରଙ୍କ ସ୍ଥାନ ସ୍ୱତନ୍ତ୍ର । ସେ ନିଜେ ଏକ ଅସ୍ପୃଶ୍ୟ, ଦଳିତ ପରିବାରରେ ଜନ୍ମ ହୋଇ ଅନେକ ଅପମାନ ଓ ଲାଞ୍ଛନା ସହି ନିଜର କଠିନ ଅଧ୍ୟବସାୟ ବଳରେ ଉଚ୍ଚସ୍ଥାନକୁ ଯାଇପାରିଥିଲେ ଏବଂ ଅନ୍ୟ ଦଳିତ ଅସ୍ପୃଶ୍ୟମାନଙ୍କୁ ମୁକ୍ତିରେ ରାସ୍ତା ଦେଖାଇ ସେମାନଙ୍କ ପାଇଁ ଅସରନ୍ତି ପ୍ରେରଣାର ଉତ୍ସ ଥିଲେ । ୧୮୯୧ ମସିହା ଏପ୍ରିଲ ୧୪ ତାରିଖରେ ଜନ୍ମ ନେଇଥିବା ଏହି ମହାପୁରୁଷଙ୍କର ୧୯୫୬ ମସିହା ଡିସେମ୍ବର ୬ ତାରିଖରେ ଦେହାନ୍ତ ହୋଇଥିଲା ।



ଡଃ ଆମ୍ବେଦକର ତତ୍କାଳୀନ ସମାଜ ବ୍ୟବସ୍ଥାରୁ ମଣିଷ ମଣିଷ ଭିତରେ ଜାତି ବର୍ଣ୍ଣକୁ ନେଇ ଅସମାନତା କିପରି ସଂହତି ନଷ୍ଟ କରୁଛି ତାହା ଅନୁଭବ କରିଥିଲେ । ଅସମାନତା ଯେଉଁ କାରଣରୁ ହେଉପଛେ, ଏହାଥରେ ପ୍ରତିଷ୍ଠା ହୋଇଗଲାପରେ କ୍ରମେ ନୀତି ନିୟମରେ ପରିଣତ ହୋଇଯାଏ, ଯାହା ଭାରତୀୟ ସମାଜରେ ଘଟୁଥିଲା । ଦଳିତ, ଅସ୍ପୃଶ୍ୟ ଲୋକମାନେ ଯେତେବେଳେ ସେହି ସାମାଜିକ ନିୟମ ଯୋଗୁଁ ନିଜର ଦୟନୀୟ ସ୍ଥିତିକୁ ଗ୍ରହଣ କରିନେଇ ଅଜ୍ଞ, ଦରିଦ୍ର ଓ ଅସଂଗଠିତ ହୋଇ ରହିଥିଲେ, ସେତେବେଳେ ସମାଜରେ ଅନ୍ୟ ବର୍ଗର ଲୋକମାନଙ୍କ ପାଇଁ ବିଶେଷ ସୁବିଧା ନଥିଲା । ମାତ୍ର ଯେତେବେଳେ ସେମାନେ ଉପର ସ୍ତରକୁ ଉଠିବାକୁ ଉଦ୍ୟମ କଲେ, ସେତେବେଳେ ଅନେକ ବିରୋଧ ଏବଂ ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼ିଲା । ଡଃ ଆମ୍ବେଦକରଙ୍କର ଭାରତୀୟ ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବା ପାଇଁ ଏବଂ ସାମାଜିକ ନ୍ୟାୟରୁ ବଞ୍ଚିତ ଲୋକମାନଙ୍କ ସ୍ଥିତିକୁ ସୁଦୃଢ଼ କରି ସେମାନଙ୍କୁ ରାଜନୈତିକ କ୍ଷମତାରେ ଭାଗୀଦାର କରାଇବା ପାଇଁ ଏପରି ସଂଘର୍ଷ ଅବଶ୍ୟମ୍ଭାବୀ ବୋଲି ମତ ଦେଇଥିଲେ । ତେବେ ଏହା ମଧ୍ୟ ବିନା ରକ୍ତପାତରେ ହେବା ଉଚିତ୍ ବୋଲି ସେ କହୁଥିଲେ । ସମାଜରୁ ଅସମାନତା ଜାତି ପ୍ରଥା ଓ ଅସ୍ପୃଶ୍ୟତା ଭଳି ବ୍ୟାଧି ନହଟିଲେ ସାମାଜିକ ନ୍ୟାୟ ପ୍ରତିଷ୍ଠା କେବେବି ସମ୍ଭବ ନୁହେଁ ଏକଥା ସେ ଭଲଭାବରେ ହୃଦୟଙ୍ଗମ କରିଥିଲେ । ଏଥିପାଇଁ ଅନେକ ଉପାୟ ମଧ୍ୟରୁ ଆନ୍ତଃଜାତି ବିବାହ ଏବଂ ଆନ୍ତଃଜାତି ସାମୂହିକ ଭୋଜନ ବ୍ୟବସ୍ଥାକୁ ପ୍ରୋତ୍ସାହନ ଦେବାକୁ ସେ ଯୁକ୍ତି ବାଢୁଥିଲେ । ସେ କହୁଥିଲେ, ଯଦିଓ ଆମେ ଜାତି ପ୍ରଥା ଓ ଅସ୍ପୃଶ୍ୟତା ସୃଷ୍ଟି ପାଇଁ ନିର୍ଦ୍ଦିଷ୍ଟ ଭାବରେ କାହାକୁ ଦାୟୀ କରିପାରିବା ନାହିଁ, ତେବେ ସେହି କୁପ୍ରଥାକୁ କିପରି ଉଚ୍ଛେଦ କରାଯିବ ତାହା ଆମ ସମସ୍ତଙ୍କର ଦାୟିତ୍ୱ ହେବା ଉଚିତ୍ ।

ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ପ୍ରତ୍ୟେକ ଲୋକ ବିଶେଷ କରି ଅସ୍ପୃଶ୍ୟ ଓ ଦଳିତମାନେ ନିଜ ନିଜର ଅଧିକାର ବିଷୟରେ ସଚେତନ ହେବା ଉଚିତ । ଅଧିକାର ସଚେତନ ନହେଲେ ଜଣକୁ ଅନ୍ୟର ଦୟା ଉପରେ ନିର୍ଭର କରିବାକୁ ପଡ଼ିବ ଏବଂ ଅନ୍ୟର ଦୟା ଉପରେ ନିର୍ଭର କରୁଥିବା ମଣିଷ କେବେ ସ୍ୱାଭିମାନର ସହିତ ସମାଜରେ ବଞ୍ଚିପାରେ ନାହିଁ । ସେଥିପାଇଁ ଆମ୍ବେଦକର ଦଳିତମାନଙ୍କୁ ପ୍ରଥମେ ଶିକ୍ଷିତ ହେବାକୁ

ପରାମର୍ଶ ଦେଉଥିଲେ । ଯେଉଁମାନେ ନିଜର ଅଧିକାର ପାଇଁ ସଂଗ୍ରାମ ଏବଂ ସଂଘର୍ଷ ନକରନ୍ତି ସେମାନେ ଦାସତ୍ୱ ଶୃଙ୍ଖଳ ଭିତରେ ବାନ୍ଧି ହୋଇ ରୁହନ୍ତି, ମାତ୍ର ଯେଉଁମାନେ ତାହା କରନ୍ତି, ସେମାନେ ସମାଜରେ ମୁକ୍ତି ଓ ସ୍ୱାଧୀନତାର ସ୍ୱାଦ ଚାଖିପାରନ୍ତି । ଆମ୍ବେଦକରଙ୍କ ମତରେ ମୁକ୍ତି ବା ସ୍ୱାଧୀନତା କାହାକୁ ଦାନ ସୂତ୍ରରେ ମିଳେ ନାହିଁ, ଏହା ନିରନ୍ତର ସଂଗ୍ରାମ ଫଳରେ ହିଁ ପ୍ରାପ୍ତି ହୁଏ ।

ମଣିଷ ସମାଜରେ ଶୃଙ୍ଖଳା ରକ୍ଷା ପାଇଁ ଧର୍ମର ଆବଶ୍ୟକତା ଥିବାରୁ ଜାତି, ବର୍ଣ୍ଣ ପ୍ରଥା ଭଳି ଅନେକ କୁସଂସ୍କାରଦ୍ୱାରା ଭାରାକ୍ରାନ୍ତ ତତ୍କାଳୀନ ହିନ୍ଦୁ ଧର୍ମରେ ସଂସ୍କାର ଆଣିବା ପାଇଁ ଆମ୍ବେଦକର ଆହ୍ୱାନ ଦେଇଥିଲେ । କାରଣ ଧର୍ମ ହିଁ ପ୍ରତ୍ୟେକ ସମାଜରେ ଏକ ନିର୍ଣ୍ଣୟାତ୍ମକ ଭୂମିକା ଗ୍ରହଣ କରିଥିବାରୁ ଏବଂ ଧାର୍ମିକ ନୀତି ନିୟମ, ଅନେକ ସ୍ଥଳରେ ଗୋଟିଏ ଗୋଷ୍ଠୀର ସାମାଜିକ ଏବଂ ଆର୍ଥିକ ସ୍ଥିତିକୁ ନିର୍ଦ୍ଧାରିତ କରୁଥିବାରୁ ତାହା ଜରୁରୀ ଥିଲା । ଦଳିତମାନଙ୍କୁ ପୂଜାର୍ଚ୍ଚନା ପାଇଁ ମନ୍ଦିର ପ୍ରବେଶ ନିଷେଧ ଥିବାରୁ ସେମାନଙ୍କର ଧାର୍ମିକ ସ୍ଥିତି ଅତ୍ୟନ୍ତ ଶୋଚନୀୟ ଥିଲା । ସେଥିପାଇଁ ଆମ୍ବେଦକର ମନ୍ଦିର ପ୍ରବେଶ ସତ୍ୟାଗ୍ରହ କରିଥିଲେ, କାରଣ ଏହା ସେତେବେଳେ ଦଳିତମାନଙ୍କ ପାଇଁ ଆତ୍ମସମ୍ମାନର ପ୍ରଶ୍ନ ଥିଲା । ତେବେ ଏଥିରେ ସେ କିଛିଟା ବିଫଳ ହେଲେ ମଧ୍ୟ ତାଙ୍କର ଏହି ପ୍ରୟାସ ପରବର୍ତ୍ତୀ ସମୟରେ ମହାତ୍ମା ଗାନ୍ଧୀ ତଥା ଅନ୍ୟ ଜାତୀୟ ସ୍ତରର ନେତା ଏବଂ ସଂସ୍କାରକମାନଙ୍କୁ ପ୍ରେରଣା ଯୋଗାଇଥିଲା । କାରଣ ଏହା ମଧ୍ୟରେ ସମସ୍ତେ ଅନୁଭବ କରିପାରିଥିଲେ ସାମାଜିକ ନ୍ୟାୟ ଏବଂ ଐକ୍ୟ ପ୍ରତିଷ୍ଠା ପାଇଁ ଧର୍ମ କ୍ଷେତ୍ରରେ ମଧ୍ୟ ସମସ୍ତଙ୍କ ଧାର୍ମିକ ଅଧିକାରକୁ ସୁରକ୍ଷିତ ରଖାଯିବା ଉଚିତ ।

ସମାଜରେ ଦଳିତ, ପଛୁଆ ଲୋକମାନଙ୍କର ଅର୍ଥନୈତିକ ସ୍ଥିତି ସୁଦୃଢ଼ ନହେଲେ ସାମାଜିକ ନ୍ୟାୟ ପ୍ରତିଷ୍ଠା ମଧ୍ୟ ବିଳମ୍ବିତ ହେବ । କାରଣ ଅର୍ଥନୈତିକ ଅସମାନତା ଦ୍ୱାରା ଅଭାବଗ୍ରସ୍ତ ହୋଇ ଯେଉଁ କ୍ଷୁଧାଗ୍ରସ୍ତ ମଣିଷ ଗୋଷ୍ଠୀଟି ସୃଷ୍ଟି ହୁଏ ସେମାନଙ୍କ ପାଇଁ ମାନବିକ ଅଧିକାର ଏବଂ ସାମାଜିକ ନ୍ୟାୟ ଭଳି ଶବ୍ଦଗୁଡ଼ିକର କୌଣସି ମୂଲ୍ୟ ନଥାଏ । ସେଥିପାଇଁ ଆମ୍ବେଦକର ୧୯୩୦ ମସିହାରେ କରାଚୀ ଗୋଲଟେବୁଲ ବୈଠକରେ ଦଳିତମାନଙ୍କର ଅର୍ଥନୈତିକ ଅଧିକାର ପାଇଁ କେତେକ ଦାବି ଉପସ୍ଥାପନ କରିଥିଲେ । ସେଥିରେ ରାଷ୍ଟ୍ର ସମ୍ପତ୍ତି ଉପରେ ସମାନ ଅଧିକାର, ଶିକ୍ଷା ଏବଂ ଚାକିରି କ୍ଷେତ୍ରରେ ଉପଯୁକ୍ତ ପ୍ରତିନିଧିତ୍ୱ ଏବଂ ସାମାଜିକ ତଥା ଅର୍ଥନୈତିକ ଶୋଷଣ ବିରୋଧରେ ଆଇନ ପ୍ରଣୟନ ଇତ୍ୟାଦି ବିଷୟ ଅନ୍ତର୍ଭୁକ୍ତ ଥିଲା । ଆମ୍ବେଦକରଙ୍କ ଯୁକ୍ତିଥିଲା ଯେ ସାମାଜିକ ପ୍ରାଣୀ ଭାବରେ ପ୍ରତ୍ୟେକଙ୍କର ସ୍ୱାଧୀନ ଭାବରେ ବୃତ୍ତି ନିର୍ଦ୍ଧାରଣ କରିବାର ଏବଂ ନିଜ ଧନ ଜୀବନକୁ ସୁରକ୍ଷା ଦେବା ବା ପାଇବାର ଅଧିକାର ରହିଛି । ତା'ଛଡ଼ା ଖାଦ୍ୟ, ବସ୍ତ୍ର ଏବଂ ବାସସ୍ଥାନ ପ୍ରତ୍ୟେକ ମଣିଷର ମୌଳିକ ଆବଶ୍ୟକତା । ତେବେ ଏହି ମୌଳିକ ଆବଶ୍ୟକତାର ପୂରଣ କେବଳ ଦେଶର ସମ୍ବଳ ଏବଂ ସମ୍ପଦର ଉପଯୁକ୍ତ ବଣ୍ଟନ ଦ୍ୱାରା ହିଁ ସମ୍ଭବ । ଏଥିପାଇଁ ସେ କେତେକ ସାମ୍ବିଧାନିକ ବିଧି ବ୍ୟବସ୍ଥା ମଧ୍ୟ କରିଥିଲେ, ଯାହା ପରବର୍ତ୍ତୀ ସମୟରେ ଆର୍ଥିକ କ୍ଷେତ୍ରରେ ଦୁର୍ବଳ ଶ୍ରେଣୀର ଲୋକଙ୍କ ପାଇଁ ଅତ୍ୟନ୍ତ ସହାୟକ ହୋଇଥିଲା ।

ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ରାଜନୈତିକ ଅଧିକାରର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଆମ୍ବେଦକରଙ୍କ ମତରେ ରାଜନୈତିକ ଅଧିକାର ହିଁ ଅନ୍ୟସବୁ ଅଧିକାରକୁ ହାସଲ କରିବାର ଅସଲ ଚାବିକାଠି । ତେଣୁ ଦଳିତ ଲୋକମାନେ ରାଜନୈତିକ ଉପାୟରେ ସମାଜରେ ସାମାଜିକ ଏବଂ ଅର୍ଥନୈତିକ ସମାନତା ହାସଲ ପାଇଁ ଉଦ୍ୟମ କରିବା ଉଚିତ ବୋଲି ସେ ମତ ଦେଇଥିଲେ । ସେଥିସକାଶେ ସେ ଦଳିତମାନଙ୍କ ପାଇଁ ଅଲଗା ଭୋଟ ଦାନର ବ୍ୟବସ୍ଥା କରିବାକୁ ଯୁକ୍ତି ବାଢ଼ିବା ସହିତ ସମାନ ନାଗରିକତା, ବ୍ୟବସ୍ଥାପକ ସଭାରେ ଉପଯୁକ୍ତ ପ୍ରତିନିଧିତ୍ୱ ଇତ୍ୟାଦି ଉପରେ ଗୁରୁତ୍ୱ ଦେଇଥିଲେ । ତେବେ ସ୍ୱାଧୀନତା ପରେ ଦଳିତମାନଙ୍କର ରାଜନୈତିକ ଅଧିକାର ପାଇଁ ଯେଉଁ ସାମ୍ବିଧାନିକ ନୀତି ନିୟମ ସବୁ ରହିଲା ତାହା ସାମାଜିକ ନ୍ୟାୟ ପ୍ରତିଷ୍ଠାର ରାସ୍ତା ଖୋଲି ଦେଇଥିଲା । ଅନ୍ୟ ଅର୍ଥରେ କହିବାକୁ ଗଲେ ସାମାଜିକ ଏବଂ ଆର୍ଥିକ ଅସମାନତା ଦୂର ହୋଇ ସମାଜରେ ସବୁକ୍ଷେତ୍ରରେ ସମାନତା ପ୍ରତିଷ୍ଠା ହେବାରେ ସାମ୍ବିଧାନିକ ନୀତି ନିର୍ଦ୍ଦେଶ ସବୁର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଲା ।

ଦଳିତ, ଅସ୍ପୃଶ୍ୟମାନଙ୍କର ସାମାଜିକ, ଆର୍ଥିକ ଏବଂ ରାଜନୈତିକ ସ୍ଥିତିରେ ପରିବର୍ତ୍ତନ ଆଣି ସେମାନଙ୍କୁ ନିଜର ଅଧିକାର ବାବଦରେ ସଚେତନ କରାଇ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଆମ୍ବେଦକରଙ୍କ ଦୃଷ୍ଟିଭଙ୍ଗୀ ଥିଲା ପ୍ରକୃତରେ ଅନନ୍ୟ । ତାଙ୍କରି ଚେଷ୍ଟା ଫଳରେ ଭାରତୀୟ ସମାଜରେ ଅସ୍ପୃଶ୍ୟତା ଏବଂ ଅନ୍ୟାନ୍ୟ ବୈଷମ୍ୟ ଦୂର ପାଇଁ ଆଇନ ପ୍ରଣୟନ ଯୋଗୁଁ ବିଭିନ୍ନ ସ୍ତରର ଲୋକମାନଙ୍କ ଭିତରେ ସାମାଜିକ ସମ୍ପର୍କ ସୁଦୃଢ଼ ହେଲା । ସେ ଉଚ୍ଚ ବର୍ଣ୍ଣର ହିନ୍ଦୁମାନଙ୍କୁ ଦଳିତମାନଙ୍କପ୍ରତି ନିଜ ମନୋଭାବରେ ପରିବର୍ତ୍ତନ ଆଣିବା ପାଇଁ ଯେଉଁ ନିବେଦନ କରିଥିଲେ ତାହା ଅନେକାଂଶରେ ଫଳପ୍ରଦ ହୋଇଥିଲା । ଯୁଗ ଯୁଗ ଧରି ପ୍ରଚଳିତ ଥିବା ସମାଜ ବ୍ୟବସ୍ଥାରେ ପରିବର୍ତ୍ତନ ଘଟିଲା ।

ମୁକ୍ତି ବା ସ୍ୱାଧୀନତା, ସମାନତା ଏବଂ ଭ୍ରାତୃତ୍ୱ ଇତିହାସରେ ପ୍ରତ୍ୟେକ ସମାଜରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ମାନବୀୟ ବିକାଶ ପାଇଁ ଏହି ତିନୋଟି ତତ୍ତ୍ୱକୁ ମୌଳିକ ଉତ୍ସ ଭାବରେ ବିବେଚନା କରାଯାଏ । ଏଥିରୁ କୌଣସି ଗୋଟିଏର ଅଭାବ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ପ୍ରତିବନ୍ଧକ ଅଟେ । ତେଣୁ ସବୁ ନାଗରିକଙ୍କୁ ଦେଶରୁ ଜାତିପ୍ରଥା ଓ ଅସ୍ପୃଶ୍ୟତା ଭଳି ବ୍ୟାଧିକୁ ହଟାଇ ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱକୁ ବଞ୍ଚେଇ ରଖି ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ଉଦ୍ୟମ କରିବାକୁ ହେବ । ଏହା ହିଁ ହେବ ଭାରତରତ୍ନ ବାବା ସାହେବ ଡକ୍ଟର ଭୀମରାଓ ଆମ୍ବେଦକରଙ୍କ ପ୍ରତି ହେବ ପ୍ରକୃତ ଶ୍ରଦ୍ଧା ଓ ସମ୍ମାନ ।

ଗ୍ରା/ପୋ- ସର୍ଦ୍ଦୋଳା
ଭାୟା- କନକପୁର (ଝଙ୍କଡ଼)
ଜଗତସିଂହପୁର

## ୧୮୫୭ ସିପାହୀ ବିଦ୍ରୋହର ପ୍ରଥମ ଶହୀଦ

# ଇତିହାସରେ ବିସ୍ମୃତ ଜଗୁ ଦେଓ୍ୱାନ

ଡକ୍ଟର ନିହାର ରଞ୍ଜନ ପଟ୍ଟନାୟକ

**ଇ**ତିହାସର ଧାରା ଯେପରି ଉନ୍ମାଦମୟ, ଇତିହାସର ପରିପ୍ରକାଶ ସେହିପରି ବିସ୍ମୟକର । ପୁଣି ଅଧିକ ବିଚିତ୍ର ହେଉଛନ୍ତି ଇତିହାସ ରଚନାକାରୀ ଐତିହାସିକ । କେତେବେଳେ ସେ ଛୋଟ ଘଟଣା ବା ନଗଣ୍ୟ ଚରିତ୍ରକୁ ଅତିରଞ୍ଜିତ କରି ଇତିହାସର ଅଗ୍ରଭାଗରେ ସ୍ଥାନ ଦେଇଛନ୍ତି ତ କେତେବେଳେ ଗୁରୁତ୍ୱପୂର୍ଣ୍ଣ ଘଟଣା ବା ବିଶାଳ ବ୍ୟକ୍ତିତ୍ୱକୁ ହେୟ କରି ଇତିହାସରେ ସର୍ବଶେଷ ଲିପିବଦ୍ଧ କରିବାକୁ ଦ୍ୱିଧା ପ୍ରକାଶ କରିଛନ୍ତି । ଇତିହାସ ପୃଷ୍ଠାରେ ଅବହେଳିତ ଏହିପରି ଏକ ଚରିତ୍ର ୧୮୫୭ ମହାନ୍ ବିଦ୍ରୋହର ପ୍ରଥମ ଓଡ଼ିଆ ଶହୀଦ ଜଗୁ ଦେଓ୍ୱାନ ।

୧୮୫୬ ମସିହାର ପଲାସୀ ଯୁଦ୍ଧକ୍ଷେତ୍ରରେ ଦୀପ୍ତିମନ୍ତ ସୂର୍ଯ୍ୟ ଅସ୍ତମିତ ହେବା ସଂଗେସଂଗେ ଭାରତ ପାଇଁ ପରାଧୀନତାର ଅନ୍ଧକାର ମାଡ଼ି ଆସିଥିଲା । ଉକ୍ତ ଯୁଦ୍ଧ ସମାପ୍ତ ହେବାର ଗୋଟିଏ ଶତାବ୍ଦୀ ମଧ୍ୟରେ 'ଇଷ୍ଟ ଇଣ୍ଡିଆ' କମ୍ପାନୀ ସାମାନ୍ୟ ବଣିକ ଗୋଷ୍ଠୀରୁ ଏକ ବିରାଟ ଶକ୍ତିରେ ପରିଣତ ହୋଇପାରିଥିଲା । ଏହି ସମୟ ମଧ୍ୟରେ ଭାରତର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ସ୍ୱାଧୀନତା ବ୍ରିଟିଶ ଶାସନର ଯୂପକାଠରେ ବଳି ପଡ଼ିଥିଲା । କିନ୍ତୁ ସ୍ୱାଧୀନତା ମନୁଷ୍ୟର ଜନ୍ମଗତ ଅଧିକାର । ଏହା ବିନା ମଣିଷ ଶ୍ୱାସରୁଦ୍ଧ ହୋଇଯାଏ । ଇଂରେଜ ଶାସନରୁ ମୁକ୍ତ ହୋଇ ସ୍ୱାଧୀନତାର ସ୍ୱାଦ ପୁଣି ଆସ୍ୱାଦନ କରିବା ପାଇଁ ଭାରତୀୟମାନେ ୧୮୫୭ରେ ଏକ ବିଦ୍ରୋହ ସଂଘଟିତ କରିଥିଲେ । ୧୮୫୭ ମସିହା ମାର୍ଚ୍ଚ ୧୦ ତାରିଖ ଦିନ ଦେଖାଦେଲା ବିଦ୍ରୋହର ପ୍ରଥମ ଝଲକ । ବାରାକ୍‌ପୁରସ୍ଥିତ ବଙ୍ଗ ରେଜିମେଣ୍ଟରେ ମଙ୍ଗଳ ପାଣ୍ଡେ ନାମକ ଜଣେ ସିପାହୀ ନିଜର ଉପରିସ୍ଥ ଇଂରେଜ କର୍ମଚାରୀଙ୍କୁ ଗୁଳିକରି ହତ୍ୟା କରିବା ପରେ ମୃତ୍ୟୁଦଣ୍ଡରେ ଦଣ୍ଡିତ ହୋଇଥିଲେ । ଏହା ସହିତ ଭାରତୀୟ ସିପାହୀମାନଙ୍କ ମଧ୍ୟରେ ଆରମ୍ଭ ହୋଇଗଲା ବ୍ରିଟିଶ୍ ବିରୋଧୀ ବିଦ୍ରୋହ । ଏହା ସିପାହୀମାନଙ୍କଠାରୁ ଆରମ୍ଭ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସୀମିତ ନରହି ପରେ ପରେ ଏହା ଭାରତୀୟମାନଙ୍କ ମଧ୍ୟରେ ସବୁସ୍ତରରେ ବିସ୍ତାର ଲାଭ କରିଥିଲା ।

୧୮୫୭ ମସିହା ମାର୍ଚ୍ଚ ୧୦ ତାରିଖ ଦିନ ଦେଖାଦେଲା ବିଦ୍ରୋହର ପ୍ରଥମ ଝଲକ । ବାରାକ୍‌ପୁରସ୍ଥିତ ବଙ୍ଗ ରେଜିମେଣ୍ଟରେ ମଙ୍ଗଳ ପାଣ୍ଡେ ନାମକ ଜଣେ ସିପାହୀ ନିଜର ଉପରିସ୍ଥ ଇଂରେଜ କର୍ମଚାରୀଙ୍କୁ ଗୁଳିକରି ହତ୍ୟା କରିବା ପରେ ମୃତ୍ୟୁଦଣ୍ଡରେ ଦଣ୍ଡିତ ହୋଇଥିଲେ । ଏହା ସହିତ ଭାରତୀୟ ସିପାହୀମାନଙ୍କ ମଧ୍ୟରେ ଆରମ୍ଭ ହୋଇଗଲା ବ୍ରିଟିଶ୍ ବିରୋଧୀ ବିଦ୍ରୋହ । ଏହା ସିପାହୀମାନଙ୍କଠାରୁ ଆରମ୍ଭ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସୀମିତ ନରହି ପରେ ପରେ ଏହା ଭାରତୀୟମାନଙ୍କ ମଧ୍ୟରେ ସବୁସ୍ତରରେ ବିସ୍ତାର ଲାଭ କରିଥିଲା ।

୧୮୫୭ ମସିହା ଜୁଲାଇ ୩୦ ତାରିଖ ଦିନ ଇଂରେଜ ବିରୋଧୀ ବିଦ୍ରୋହର ଅନ୍ୟ ଏକ ଝଲକ ଦେଖାଦେଲା ହଜାରିବାଗସ୍ଥିତ ସିପାହୀ ସେନା ଛାଉଣୀରେ । ଏହି ବିଦ୍ରୋହ କ୍ରମଶଃ ପ୍ରସାର ଲାଭ କରିବାରୁ ଚାଇଁବସାଠାରେ ଥିବା ରାମଗଡ଼ ବାଟାଲିୟନ୍, ସେପ୍ଟେମ୍ବର ୩ ତାରିଖ ଦିନ ବିଦ୍ରୋହ ଆରମ୍ଭ କରିଦେଲେ । କ୍ରମେ କ୍ରମେ ସମଗ୍ର ସିଂହଭୂମ ହେଲା ବିଦ୍ରୋହୀଙ୍କ ଲୀଳାଭୂମି । ଏହି ବିଦ୍ରୋହୀମାନଙ୍କୁ ପ୍ରଥମେ ଆଶ୍ରୟ ତଥା ସାହାଯ୍ୟ କରିଥିଲେ ପୋଡ଼ାହାଟ ରାଜାଙ୍କ ଦେଓ୍ୱାନ ଜଗୁ । ସେ ମଧ୍ୟ ବିଦ୍ରୋହୀମାନଙ୍କୁ ସାହାଯ୍ୟ କରିବା ପାଇଁ ପୋଡ଼ାହାଟର ରାଜା ଅର୍ଜୁନ ସିଂହଙ୍କୁ ପ୍ରବର୍ତ୍ତାଇଥିଲେ । କ୍ରମେ କ୍ରମେ ଜଗୁ ଦେଓ୍ୱାନଙ୍କର ନିଷ୍ଠା ଓ କର୍ମପ୍ରେରଣା ପାଇଁ ତାଙ୍କୁ ସିଂହଭୂମରେ ବିଦ୍ରୋହ ସଂଗଠନର ଦାୟିତ୍ୱ ଦିଆଯାଇଥିଲା । ସିଂହଭୂମ ଅଞ୍ଚଳରେ ରହୁଥିବା କୋ୍ଲହମାନଙ୍କୁ ଇଂରେଜ ଶାସନ ବିରୁଦ୍ଧରେ ଉତ୍ତେଜିତ କରାଇ ଏହି ବିଦ୍ରୋହରେ ଯୋଗଦେବାପାଇଁ ଜଗୁ ଦେଓ୍ୱାନ ପ୍ରବର୍ତ୍ତାଇଥିଲେ । ତାଙ୍କରି ନେତୃତ୍ୱ ଓ ପ୍ରରୋଚନାରେ କେବଳ କୋ୍ଲହ ନୁହଁନ୍ତି, ସିଂହଭୂମର ଅନ୍ୟାନ୍ୟ ବ୍ୟକ୍ତି ମଧ୍ୟ ଏହି ବିଦ୍ରୋହରେ ଯୋଗ ଦେଇଥିବା ଜଣାଯାଏ । ପରେ ପରେ ରାଜା ଅର୍ଜୁନ ସିଂହ ମଧ୍ୟ ଜଗୁ ଦେଓ୍ୱାନଙ୍କ ସହ ହାତ ମିଳାଇ ବିଦ୍ରୋହର ନେତୃତ୍ୱ ନେଇଥିଲେ ।

ସେତେବେଳେ କ୍ୟାପଟେନ୍ ବ୍ରିକ ଥାଆନ୍ତି ସିଂହଭୂମର ଡେପୁଟି କମିଶନର୍ ଏବଂ ଇ.ଟି. ଡାଲଟନ୍ ଥାଆନ୍ତି ଛୋଟ ନାଗପୁରର କମିଶନର । ଜଗୁ ଦେଓ୍ୱାନଙ୍କ ନେତୃତ୍ୱରେ ସିଂହଭୂମରେ ବିଦ୍ରୋହ ପ୍ରଚଣ୍ଡ ରୂପ ଧାରଣ କରିବାରୁ ସେପ୍ଟେମ୍ବର ମାସ ୧୮ ତାରିଖ ଦିନ କ୍ୟାପଟେନ୍

ବ୍ରିକ୍ ସିଂହଭୂମର ଦାୟିତ୍ୱ ଗ୍ରହଣ କରି ବିଦ୍ରୋହ ଦମନ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ଏ ଦିଗରେ ଷଢ଼େଇକଳାର ତତ୍କାଳୀନ ରାଜା ଚକ୍ରଧର ସିଂହ ତାଙ୍କୁ ସାହାଯ୍ୟ ଦେଇଥିବା ଜଣାଯାଏ । ସେ ପୋଡ଼ାହାଟର ରାଜାଙ୍କୁ ବିଦ୍ରୋହୀ ରୂପେ ଘୋଷଣା କଲେ । ସମ୍ବଲପୁରରୁ କ୍ୟାପଟେନ୍ ଲି ଚାଇଁବସା ଯାଇ କ୍ୟାପଟେନ୍ ବ୍ରିକ୍‌ଙ୍କୁ ସାହାଯ୍ୟ କଲେ । ମାତ୍ର ପୋଡ଼ାହାଟର ରାଜା ଅର୍ଜୁନ ସିଂହ ଓ ବିଦ୍ରୋହୀ ନେତା ଜଗୁ ଦେଓ୍ୱାନଙ୍କୁ କରଗତ କରି ହେଲା ନାହିଁ । ମୟୂରଭଞ୍ଜ ରାଜାଙ୍କ ଜାମାତା ଥିଲେ ଅର୍ଜୁନ ସିଂହ । ଏହା ଜାଣି, ବିଦ୍ରୋହର ଅଧିକ ଭାଗ ନନେବା ପାଇଁ ନିଜ ଜାମାତାଙ୍କୁ ପ୍ରବର୍ତ୍ତାଇବାକୁ କ୍ୟାପ୍‌ଟେନ ବ୍ରିକ୍ ମୟୂରଭଞ୍ଜ ରାଜାଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏଥିସହିତ ଅର୍ଜୁନ ସିଂହ ଯେପରି ଶୀଘ୍ର ଆତ୍ମସମର୍ପଣ କରନ୍ତି ସେଥିପାଇଁ ମଧ ମୟୂରଭଞ୍ଜ ରାଜା ଚେଷ୍ଟା କରିବାକୁ କ୍ୟାପଟେନ୍ ବ୍ରିକ୍ ପରାମର୍ଶ ଦେଇଥିଲେ । ଫଳସ୍ୱରୂପ ମୟୂରଭଞ୍ଜ ରାଜା ନିଜ ଜାମାତା ଅର୍ଜୁନ ସିଂହଙ୍କୁ ଏହି ମର୍ମରେ ପତ୍ର ଲେଖିଥିଲେ । ସମ୍ଭବତଃ ତାଙ୍କରିଦ୍ୱାରା ପ୍ରଭାବିତ ହୋଇ ରାଜା ଅର୍ଜୁନ ସିଂହ ଶେଷରେ ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ ।

ଏ ଦୃଷ୍ଟିରୁ ୧୮୫୭ରେ ସଂଘଟିତ ମହାନ୍ ଭାରତୀୟ ବିଦ୍ରୋହର ଯଜ୍ଞବେଦୀରେ ଆତ୍ମହୂତି ଦେଇଥିବା ଶହୀଦମାନଙ୍କ ମଧ୍ୟରୁ ପ୍ରଥମ ଓଡ଼ିଆ ଥିଲେ ଜଗୁ ଦେଓ୍ୱାନ । ଧରାପଡ଼ି ଯଦି ସେ ଫାଶୀ ପାଇ ନଥାଆନ୍ତେ, ହୁଏତ ସେ ୧୮୫୭ ବିଦ୍ରୋହରେ ଅଧିକ ସକ୍ରିୟଭାବେ ଅଂଶ ଗ୍ରହଣ କରି ଅନ୍ୟଜଣେ ଜାତୀୟବାଦୀ ନେତାରୂପେ ସମ୍ମାନିତ ହୋଇପାରିଥାଆନ୍ତେ । ୧୮୫୭ ବିଦ୍ରୋହର ଅବକାଶରେ ଓଡ଼ିଶାର ଅନ୍ୟ ବରପୁତ୍ର ସୁରେନ୍ଦ୍ର ସାଏ ଓ ଚାଖିଖୁଣ୍ଟିଆଙ୍କ ପରି ଜଗୁ ଦେଓ୍ୱାନ ମଧ ଚିର ସ୍ମରଣୀୟ ।

ରାଜା ଆତ୍ମସମର୍ପଣ କରିଥିଲେ ମଧ ଦେଓ୍ୱାନ ଜଗୁଙ୍କ ମନରୁ ବିପ୍ଳବର ଅଗ୍ନି ନିର୍ବାପିତ ହୋଇପାରିନଥିଲା । ଶରୀରରେ ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ସ୍ୱାଧୀନତା ଲାଭ ପାଇଁ ବ୍ରିଟିଶ ଶାସନ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସେ ଥିଲେ ସଂକଳ୍ପବଦ୍ଧ । ରାଜାଙ୍କ ଆତ୍ମସମର୍ପଣଦ୍ୱାରା ସେ ହତୋତ୍ସାହିତ ହୋଇନଥିଲେ ମଧ ତାଙ୍କ ବିଦ୍ରୋହାତ୍ମକ କାର୍ଯ୍ୟକଳାପ ସାମାନ୍ୟ ବାଧାପ୍ରାପ୍ତ ହୋଇଥିଲା । ଇଂରେଜମାନଙ୍କର ବହୁଚେଷ୍ଟା ସତ୍ତ୍ୱେ ଜଗୁ ଦେଓ୍ୱାନଙ୍କୁ ଧରିବା ସମ୍ଭବପର ହେଲାନାହିଁ । ଶେଷରେ ଏଥିପାଇଁ ସେମାନେ କେନ୍ଦୁଝର ରାଜାଙ୍କର ସହାୟତା ଲୋଡ଼ିଥିଲେ । ସେ କେନ୍ଦୁଝରରୁ କିଶୋର ସିଂହ, ରାମଚନ୍ଦ୍ର ସିଂହ ଓ ଚିନ୍ତାମଣି ଭଞ୍ଜଙ୍କୁ ପୋଡ଼ାହାଟକୁ ପ୍ରେରଣ କରିଥିଲେ ଜଗୁ ଦେଓ୍ୱାନଙ୍କୁ ଧରିବା ପାଇଁ । ଇତିମଧ୍ୟରେ ସମ୍ବଲପୁରରୁ କ୍ୟାପଟେନ୍ ଲି ଆସି ପୋଡ଼ାହାଟରେ ପହଞ୍ଚି ଯାଇଥିଲେ । ତାଙ୍କୁ ଧରିବା ପାଇଁ ସବୁସ୍ତରରେ ପ୍ରବଳ ଉଦ୍ୟମ ହେତୁ ଆଉ ଅଧିକ ଦିନ ଆତ୍ମଗୋପନ କରିବା ଜଗୁ ଦେଓ୍ୱାନଙ୍କ ପକ୍ଷେ ସମ୍ଭବପର ହେଲାନାହିଁ । ଶେଷରେ ୧୮୫୭ ମସିହା ଡିସେମ୍ବର ୯ ତାରିଖ ଦିନ କେତେଜଣ ଶିଖ, ପୋଡ଼ାହାଟ ରାଜାଙ୍କର କେତେଜଣ ଆତ୍ମୀୟ ଓ କେନ୍ଦୁଝରରୁ ଯାଇଥିବା ରାଜକର୍ମଚାରୀଙ୍କ ସହାୟତାରେ କ୍ୟାପଟେନ୍ ଲି ଜଗୁ ଦେଓ୍ୱାନଙ୍କୁ ବନ୍ଦୀ କରିଥିଲେ । ଏହାପରେ ଆରମ୍ଭ ହେଲା ତାଙ୍କର ବିଚାର ପର୍ବ ।

ନିର୍ଭୀକ ଭାବେ ଜଗୁ ଦେଓ୍ୱାନ୍ ସ୍ୱୀକାର କଲେ ଯେ ସେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରିବାକୁ ସିଂହଭୂମବାସୀଙ୍କୁ ପ୍ରବର୍ତ୍ତାଇଥିଲେ । ଏଥିପାଇଁ ତାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଗଲା । ଶେଷରେ ଚକ୍ରଧରପୁରଠାରେ ରାଜାଙ୍କ ପ୍ରାସାଦ ସମ୍ମୁଖରେ ଜଗୁ ଦେଓ୍ୱାନଙ୍କୁ ଫାଶୀ ଦିଆଯାଇଥିଲା । ଦେଶର ସ୍ୱାଧୀନତା ପାଇଁ ସେ ପ୍ରାଣବଳି ଦେଲେ । ଏ ଦୃଷ୍ଟିରୁ ୧୮୫୭ରେ ସଂଘଟିତ ମହାନ୍ ଭାରତୀୟ ବିଦ୍ରୋହର ଯଜ୍ଞବେଦୀରେ ଆତ୍ମହୂତି ଦେଇଥିବା ଶହୀଦମାନଙ୍କ ମଧ୍ୟରୁ ପ୍ରଥମ ଓଡ଼ିଆ ଥିଲେ ଜଗୁ ଦେଓ୍ୱାନ । ଧରାପଡ଼ି ଯଦି ସେ ଫାଶୀ ପାଇ ନଥାଆନ୍ତେ, ହୁଏତ ସେ ୧୮୫୭ ବିଦ୍ରୋହରେ ଅଧିକ ସକ୍ରିୟଭାବେ ଅଂଶ ଗ୍ରହଣ କରି ଅନ୍ୟଜଣେ ଜାତୀୟବାଦୀ ନେତାରୂପେ ସମ୍ମାନିତ ହୋଇପାରିଥାଆନ୍ତେ । ୧୮୫୭ ବିଦ୍ରୋହର ଅବକାଶରେ ଓଡ଼ିଶାର ଅନ୍ୟ ବରପୁତ୍ର ସୁରେନ୍ଦ୍ର ସାଏ ଓ ଚାଖିଖୁଣ୍ଟିଆଙ୍କ ପରି ଜଗୁ ଦେଓ୍ୱାନ ମଧ ଚିର ସ୍ମରଣୀୟ । ଜଗୁ ଦେଓ୍ୱାନଙ୍କ ପରି ଓଡ଼ିଆ ବିପ୍ଳବୀ ଦେଶପାଇଁ ଯେପରି ଆତ୍ମବଳି ଦେଲେ ତାହା ଓଡ଼ିଆ ଜାତି ପାଇଁ ଗର୍ବ ଓ ଗୌରବର ବିଷୟ ।

ପ୍ରଫେସର
ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ



# ଜନଶ୍ରୁତିରେ ଜୟୀ ରାଜଗୁରୁ

ଡଃ ଭାଗ୍ୟଲିପି ମଲ୍ଲ

**ଇଂ**ରେଜମାନେ ୧୭୫୭ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ନବାବ ସିରାଜଉଦ୍ଦୌଲାଙ୍କୁ ପଲାସି ଯୁଦ୍ଧରେ ପରାସ୍ତ କରି ବଙ୍ଗପ୍ରଦେଶ ଅଧିକାର କଲେ । ତାର ୧୦ ବର୍ଷ ପରେ ୧୭୬୬ ଖ୍ରୀଷ୍ଟାବ୍ଦରେ ହାଇଦ୍ରାବାଦର ନିଜାମଙ୍କଠାରୁ ଦକ୍ଷିଣ ଓଡିଶାର ଗଞ୍ଜାମ ଅଞ୍ଚଳ ପାଇ ମାଡ୍ରାସ ପ୍ରେସିଡେନ୍ସି ସହିତ ମଶାଇ ଦେଲେ । କିନ୍ତୁ ଓଡିଶା ଅଧିକାର କଲେ ବଙ୍ଗଳା ଅଧିକାର କରିବାର ଦୀର୍ଘ ୪୬ ବର୍ଷ ପରେ ଅର୍ଥାତ୍ ୧୮୦୩ ଖ୍ରୀଷ୍ଟାବ୍ଦରେ । କିନ୍ତୁ ଇଂରେଜମାନେ ୧୮୦୩ରେ ଓଡିଶାକୁ ଅଧିକାର କରିବାର ମାତ୍ର ଅଳ୍ପ କେତେ ସପ୍ତାହ ମଧ୍ୟରେ ଜୟୀ ରାଜଗୁରୁ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବଙ୍କୁ ସାଙ୍ଗରେ ଧରି ଇଂରେଜ ଶାସନ ବିରୁଦ୍ଧରେ ଦୁଃସାହସିକ ବିଦ୍ରୋହ ଆରମ୍ଭ କରି ଦେଇଥିଲେ । ଇଂରେଜମାନେ ଅଳ୍ପଦିନ ଆଗରୁ ବାରବାଟୀ ଦୁର୍ଗ ଦଖଲ କରି ଓଡିଶାରେ ନୂଆ ନୂଆ ହୋଇ ଶାସନ ଆରମ୍ଭ କରିଥିବାରୁ ବୋଧହୁଏ ତାଙ୍କୁ ଖୁବ୍ ସହଜରେ ତଡ଼ିହେବ ବୋଲି ଜୟୀ ରାଜଗୁରୁ ଆଶା କରିଥିଲେ । ତେଣୁ ସେଥିପାଇଁ ଯେପରି ପ୍ରସ୍ତୁତି ଆବଶ୍ୟକ, ସେ ତାହା କରିପାରିଲେ ନାହିଁ । ସେ ଏକା ଏକା ମୁଷ୍ଟିମେୟ ପାଇକଙ୍କୁ ଧରି ଶକ୍ତିଶାଳୀ ଇଂରେଜବାହିନୀଙ୍କୁ ଯୁଦ୍ଧ ଡାକରା ଦେଲେ । ଇଂରେଜ ସେନାପତି କର୍ଣ୍ଣେଲ୍ ହାରକୋର୍ଟଙ୍କୁ ମୁକୁନ୍ଦଦେବ ଓଡିଶାରୁ ମରହଟ୍ଟାମାନଙ୍କୁ ତଡ଼ିବାକୁ ପରାମର୍ଶ ଦେଇଥିଲେ । ମୁକୁନ୍ଦଦେବଙ୍କ ସମର୍ଥନ ଯୋଗୁଁ ମରହଟ୍ଟାଙ୍କୁ ତଡି ଓଡିଶା ଅଧିକାର କରିବାରେ ହାରକୋର୍ଟଙ୍କ ସାମରିକ ଶକ୍ତି କିଛିମାତ୍ର କ୍ଷୟ ହୋଇ ନଥିଲା ବୋଲି କହିଲେ ଚଳେ । ତେଣୁ ଜୟୀ ରାଜଗୁରୁଙ୍କ ବିଦ୍ରୋହକୁ ସେ ବିଦ୍ରୋହ ନକହି ରାଜଦ୍ରୋହର ଆଖ୍ୟା ଦେଲେ । ଇଂରେଜ ସାମ୍ରାଜ୍ୟ ବିସ୍ତାର ଲାଗି ଖୋର୍ଦ୍ଧା ଦୁର୍ଗକୁ ଆକ୍ରମଣ କଲେ ଏବଂ ତିନି ସପ୍ତାହ ପରେ ଖୋର୍ଦ୍ଧା ଦୁର୍ଗ ଜୟ କରି ଖୋର୍ଦ୍ଧା ରାଜ୍ୟକୁ ଅଧିକାର କଲେ ।



ମୁକୁନ୍ଦଦେବ ରାଜ୍ୟ ହରାଇ ବନ୍ଦୀ ହେଲେ ଏବଂ ଜୟୀ ରାଜଗୁରୁ ଫାଶୀଦଣ୍ଡ ପାଇଲେ । ପୂର୍ବରୁ କିନ୍ତୁ ହଣ୍ଟର ଓ ଚୟନବୀ ପ୍ରଭୃତି ଇଂରେଜ ଐତିହାସିକମାନେ ଜୟୀ ରାଜଗୁରୁଙ୍କ ନାମ ଉଲ୍ଲେଖ କରି ନଥିଲେ ହେଁ ୧୮୦୪ର ଖୋର୍ଦ୍ଧାଗଡ ଯୁଦ୍ଧରେ ମୁକୁନ୍ଦଦେବଙ୍କ ପକ୍ଷରୁ ଜୟୀ ରାଜଗୁରୁ ସେନାପତି ଭାବେ ଇଂରେଜଙ୍କ ବିରୁଦ୍ଧରେ ଲଢିଥିବାରୁ ତାଙ୍କର ଦୁଃସାହସିକ ବ୍ୟକ୍ତିତ୍ୱ ଓ ଅସାଧାରଣ ବୀରତ୍ୱର ପ୍ରମାଣ ଟୟନବୀଙ୍କର ସେହି ଉକ୍ତିରୁ ହିଁ ମିଳୁଛି । ଅଧିକନ୍ତୁ ସେଇ ଯୁଦ୍ଧରେ ହାରି ପ୍ରାଣଦଣ୍ଡ ପାଇଥିବାରୁ ସେ ନିଶ୍ଚିତ ଭାବେ ମାତୃଭୂମିର ସ୍ୱାଧୀନତା ପାଇଁ ସଂଗ୍ରାମ କରି ପ୍ରାଣ ଦାନ କଲେ ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ଇତିହାସ ଯେଉଁଠି ନୀରବ ରହିଛି, ଜନଶ୍ରୁତି ସେଠି ପ୍ରଖର ବେଗରେ ଗତିଶୀଳ ହୋଇଛି । ଏହିଭଳି ଜନଶ୍ରୁତି ଓ ଇତିହାସର ଦୋଛକିରେ ଦଣ୍ଡାୟମାନ ହୋଇଥିବା ବୀର ବିପ୍ଳବୀ ହେଉଛନ୍ତି ଜୟୀ ରାଜଗୁରୁ ।

ଓଡିଶା ବିଭିନ୍ନ ସମୟରେ ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କଦ୍ୱାରା ଶାସିତ ହୋଇ ଅବହେଳିତ ଓ ଅବଦମିତ ହୋଇ ରହିଥିଲା । ଦେଓଗ୍ରାମ ସନ୍ଧିରେ ଇଂରେଜମାନେ ୧୮୦୩ ସାଲ ଡିସେମ୍ବର ୧୭ ତାରିଖରେ ମରହଟ୍ଟାମାନଙ୍କଠାରୁ ଓଡିଶାକୁ ନିଜ ଅଧୀନକୁ ଆଣିଲେ । ବଣିକ ଇଂରେଜ ଜାତି ନିଜର କୂଟନୀତି ପ୍ରୟୋଗ କରି ସାରା ଭାରତ ଜୟ କରିସାରିବା ପରେ ସର୍ବଶେଷରେ ଜୟ କରିଥିଲେ ଓଡିଶା । ମାତ୍ର ଓଡିଶା ଜୟ କରିବା ସମୟରେ ଖୋର୍ଦ୍ଧା ରାଜବଂଶ ଓ ପାଇକମାନଙ୍କର ସୁସଂଗଠିତ ପ୍ରତିରୋଧର ସମ୍ମୁଖୀନ ହୋଇ ବହୁ ବ୍ରିଟିଶ୍ ସେନା ମୃତାହତ ହୋଇଥିଲେ । ଇଂରେଜମାନେ ଖୋର୍ଦ୍ଧା ପାଇକମାନଙ୍କର ପ୍ରତିରୋଧ ଓ ଆତ୍ମବଳି ଦେଖି ଅଭିଭୂତ ହୋଇଥିଲେ । ବିଶେଷତଃ ଜୟୀ ରାଜଗୁରୁଙ୍କର ବୀରତ୍ୱ, ପରାକାଷ୍ଠା ଓ କୂଟନୀତି ଇଂରେଜମାନଙ୍କୁ ସ୍ତମ୍ଭୀଭୂତ କରିଥିଲା । ଖୋର୍ଦ୍ଧାମାଟିରେ ଇଂରେଜମାନଙ୍କୁ ପ୍ରବେଶ କରାଇ

ନଦେବାର ଅଦମ୍ୟ ଆକାଂକ୍ଷା, ବିପ୍ଳବୀ ଜୟୀ ରାଜଗୁରୁଙ୍କର ମନରେ ପ୍ରଜ୍ୱଳିତ ହୋଇ ପରିଶେଷରେ ବିଦ୍ରୋହର ରୂପ ନେଇଥିଲା ।

ଏହି ବିପ୍ଳବୀ ବୀର ଜୟୀ ରାଜଗୁରୁଙ୍କର ଓଡିଶାର ସ୍ୱାଧୀନତା ଆନ୍ଦୋଳନ ପାଇଁ ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଥିଲେ ଓଡିଶା ମୁକ୍ତି ସଂଗ୍ରାମର ପ୍ରଥମ ଶହୀଦ । ମାତୃଭୂମିର ସୁରକ୍ଷା ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରି ଯେଉଁ ପରାକାଷ୍ଠା ଦେଖାଇ ଯାଇଛନ୍ତି, ତାହା ଇତିହାସରେ ବିରଳ । ସ୍ୱାଧୀନତା ସଂଗ୍ରାମ ସହିତ ଜୟୀ ରାଜଗୁରୁଙ୍କର ଭୂମିକା ବା ସଂପର୍କ ଯେତିକି ଐତିହାସିକମାନଙ୍କ ଲେଖନୀରେ ସ୍ଥାନ ପାଇନାହିଁ, ତା'ଠାରୁ ଅଧିକ ଓଡିଶାର ଜନଶ୍ରୁତିରେ ତାଙ୍କର ନାମ ଦେଖିବାକୁ ମିଳେ । ଏହି ମହାନ୍ ଜନନାୟକ ଜନ୍ମ ଲାଭ କରିଥିଲେ ୧୭୩୯ ମସିହା କାର୍ତ୍ତିକମାସ ଶୁକ୍ଳପକ୍ଷ ଅଁଳା ନବମୀ ତିଥିରେ । ପିତା ଚାନ୍ଦ ରାଜଗୁରୁ ଓ ହାରାମଣି ଦେବୀଙ୍କ କୋଳମଣ୍ଡନ କରିଥିଲେ ବୀର ଜୟକୃଷ୍ଣ ରାଜଗୁରୁ । ବଂଶ ପରଂପରାରେ ସେ କେବଳ ରାଜପୁରୋହିତ ନଥିଲେ ସେ ଥିଲେ ଜ୍ଞାନୀ, ମାନୀ, ନାନା ଶାସ୍ତ୍ର ବିଶାରଦ, ଭାଷାବିତ୍ ତଥା ରାଜନୈତିକ ପରାମର୍ଶଦାତା । ସେ ନିଜେ ହଜାର ହଜାର ଶ୍ଳୋକ ରଚନା କରି ବ୍ୟାଖ୍ୟା କରିପାରୁଥିବାରୁ ଏବଂ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ର ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିବାରୁ ସେତେବେଳେ ଖୋର୍ଦ୍ଧାରାଜାଙ୍କ ଦରବାରରେ ଜଣେ ଶାସ୍ତ୍ରଜ୍ଞ ପୁରୋଧା ରୂପେ ସେ ନିଯୁକ୍ତି ପାଇଥିଲେ ।

୧୮୦୬ ମସିହା ଡିସେମ୍ବର ୬ ତାରିଖରେ ତାଙ୍କୁ ଇଂରେଜମାନେ ନିର୍ମମ ଭାବେ ହତ୍ୟା କଲେ । ଏହି ହତ୍ୟା ପଛରେ ଯେଉଁ ଜନଶ୍ରୁତି ରହିଛି ତାହା ଆହୁରି ଲୋମହର୍ଷକ । ଗୋଟିଏ ବରଗଛର ଦୁଇଟି ଡାଳ ଟାଣିଆଣି ତାଙ୍କର ଦୁଇଗୋଡରେ ବାନ୍ଧି ଡାଳ ଦୁଇଟିକୁ ଛାଡି ଦେଇଥିଲେ । ଫଳରେ ରାଜଗୁରୁଙ୍କର ଶରୀର ନିମିଷକ ମଧ୍ୟରେ ଦୁଇଫାଳ ହୋଇଯାଇଥିଲା । ଆଉ କେହି କେହି କୁହନ୍ତି, ରାଜଗୁରୁଙ୍କର ଦୁଇଗୋଡକୁ ଦୁଇଟି ହାତୀଙ୍କର ଶୁଣ୍ଢରେ ବାନ୍ଧି ଦିଆଯାଇ ହାତୀଦୁଇଟିଙ୍କୁ ଦୁଇ ବିପରୀତ ଦିଗକୁ ଛାଡି ଦିଆଯାଇଥିଲା ।

ଅସାଧାରଣ ପାଣ୍ଡିତ୍ୟ ସହିତ ଜୟୀ ରାଜଗୁରୁ ଜଣେ ସୁଦକ୍ଷ ଯୋଦ୍ଧା ଥିଲେ । ଜନଶ୍ରୁତିରେ ପିଲାଦିନରୁ ତାଙ୍କ ବୀରତ୍ୱର ପରିଚୟ ମିଳିଥାଏ । ପିଲାଦିନରୁ ଜୟୀ ଅସମ୍ଭବ ପ୍ରକାରର ସାହାସୀ ବୋଲି ପ୍ରତିପାଦନ କରିପାରିଥିଲେ । ଜୟୀ ଦିନେ ଗୁରୁଣ୍ଡି ଗୁରୁଣ୍ଡି ଉଚ୍ଚାପିଣ୍ଡାର ଦାଢକୁ ଚାଲି ଆସିଥିଲେ । ଶିଶୁ ଜୟୀ ଅଳ୍ପ ସମୟ ଭିତରେ ତଳେ ପଡିଯାଇଥାନ୍ତି । ମାତ୍ର କିଛି ଦୂରରେ ନଡିଆଗଛରେ ବନ୍ଧା ହୋଇଥିବା ଘରର କାଳିଆ ଘୋଡା ଦଉଡି ଛିଣ୍ଡାଇ ଧାଇଁ ଆସିଥିଲା ଓ ପିଣ୍ଡାରେ ମୁଣ୍ଡ ଲଗାଇ ଦେଇଥିଲା । ଶିଶୁ ଜୟୀ ଖୁବ୍ ଆରାମରେ ଘୋଡାର ପିଠି ଉପରକୁ ଉଠୁଥିବାର ଦେଖି ପିତା ଚାନ୍ଦ ରାଜଗୁରୁ ହତଚକିତ ହୋଇଯାଇଥିଲେ । ଜୟୀ ରାଜଗୁରୁଙ୍କର ଅସୀମ ବୀରତ୍ୱ ଓ ସାହସକୁ ଦେଖି ଜନଶ୍ରୁତିରେ କବିତାର ପଂକ୍ତିମାନ ଦେଖିବାକୁ ମିଳେ । ଯଥା-

'କୁଆଡେ ବହି ଯାଉଛି କାଳ
ଗଲାଣି କଟି କେତେଶ' ସାଲ
ରହିଛି ଏବେ କଥା
ଜଇଆ ପଛେ ଜୀବନ ଦେଲା
ନୁଆଁଇ ନାହିଁ ମଥା ।'

ଜନଶ୍ରୁତିରୁ ଶୁଣାଯାଏ, ଜୟୀ ରାଜଗୁରୁ ଜଣେ ତନ୍ତ୍ର ସାଧକ ଥିଲେ । ସେ ନିଜର ସାଧନା ବଳରେ ବରୁଣେଇ ଦୁର୍ଗର ଦୁଇ ଦେବୀ ବରୁଣେଇ ଓ ଅରୁଣେଇଙ୍କୁ ପୂଜା କରି ସିଦ୍ଧି ଲାଭ କରିଥିଲେ - ଯାହାଦ୍ୱାରା ଶୂନ୍ୟରୁ ଶର ସବୁ ଆସି ଶତ୍ରୁ ଦେହରେ ବିଦ୍ଧ ହେଉଥିଲା । କିନ୍ତୁ କାଞ୍ଚିବେଓ୍ୱା ନାମ୍ନୀ ଜଣେ ବିଶ୍ୱାସଘାତିନୀ ଯୋଗୁଁ ଇଂରେଜମାନେ କମାଣ ଭିତରେ ଗୋରୁ ଓ ଘୁଷୁରୀ ମାଂସ ପୂରାଇ ଠାକୁରାଣୀଙ୍କ ଉପରକୁ ଫିଙ୍ଗିଲେ । ଫଳରେ ତନ୍ତ୍ର ଆଉ କାମ ଦେଲାନାହିଁ ଏବଂ ବରୁଣେଇ ଦୁର୍ଗର ପତନ ଘଟିଲା ।

ଜୟୀ ରାଜଗୁରୁଙ୍କର ମୃତ୍ୟୁ ସଂପର୍କରେ ମଧ୍ୟ ବହୁ କୌତୁହଳପ୍ରଦ ଜନଶ୍ରୁତି ଶୁଣିବାକୁ ମିଳେ । ଜୟୀ ରାଜଗୁରୁ ଯଦି ଭୁଲ ମାନିବେ ତେବେ ତାଙ୍କୁ ମୁକ୍ତି ମିଳିବ ବୋଲି କର୍ଣ୍ଣେଲ୍ ହାରକୋର୍ଟ ଏକ ପ୍ରସ୍ତାବ ଦେଲେ । କିନ୍ତୁ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ ଜୟୀ ରାଜଗୁରୁ । ସେ ଅତି ଦାମ୍ଭିକତାପୂର୍ଣ୍ଣ ସ୍ୱରରେ କହିଥିଲେ, ସାହେବ, ସୂର୍ଯ୍ୟ ପଶ୍ଚିମ ଦିଗରେ ଉଇଁ ପାରେ, ପଦ୍ମଫୁଲ ପାହାଡ ଉପରେ ଫୁଟିପାରେ, ହେଲେ ଓଡିଆ ପୁଅ କାହା ଆଗରେ ମୁଣ୍ଡ ନୁଆଁଇ ପାରେନାହିଁ । ହାରକୋର୍ଟ ଆହୁରି ରାଗିଗଲେ । ସିପାହୀମାନେ ରାଜଗୁରୁଙ୍କ ମୁଣ୍ଡ ତଳକୁ କରି ଛାତରେ ଲଟକାଇ ତଳେ ନିଆଁ ଜାଳିଲେ । ଚାବୁକ୍‌ରେ ପ୍ରହାର କଲେ । ଜୟୀ ରାଜଗୁରୁ ମୂର୍ଚ୍ଛା ଗଲେ । ତଥାପି ପାଇକ ମେଳର ସୂତ୍ର କହିଲେ ନାହିଁ, କି ଭୁଲ ସ୍ୱୀକାର କଲେ ନାହିଁ । ତାପରେ ତାଙ୍କୁ ମେଦିନାପୁରର ବାଘି ତୋଟାକୁ ନିଆଗଲା । ୧୮୦୬ ମସିହା ଡିସେମ୍ବର ୬ ତାରିଖରେ ତାଙ୍କୁ ଇଂରେଜମାନେ ନିର୍ମମ ଭାବେ ହତ୍ୟା କଲେ । ଏହି ହତ୍ୟା ପଛରେ ଯେଉଁ ଜନଶ୍ରୁତି ରହିଛି ତାହା ଆହୁରି ଲୋମହର୍ଷକ । ଗୋଟିଏ ବରଗଛର ଦୁଇଟି ଡାଳ ଟାଣିଆଣି ତାଙ୍କର ଦୁଇଗୋଡରେ ବାନ୍ଧି ଡାଳ ଦୁଇଟିକୁ ଛାଡି ଦେଇଥିଲେ । ଫଳରେ ରାଜଗୁରୁଙ୍କର ଶରୀର ନିମିଷକ ମଧ୍ୟରେ ଦୁଇଫାଳ ହୋଇଯାଇଥିଲା । ଆଉ କେହି କେହି କୁହନ୍ତି, ରାଜଗୁରୁଙ୍କର ଦୁଇଗୋଡକୁ ଦୁଇଟି ହାତୀଙ୍କର ଶୁଣ୍ଢରେ ବାନ୍ଧି ଦିଆଯାଇ ହାତୀଦୁଇଟିଙ୍କୁ ଦୁଇ ବିପରୀତ ଦିଗକୁ ଛାଡି ଦିଆଯାଇଥିଲା । ସୂତରାଂ ରାଜଗୁରୁଙ୍କର ଶରୀର

ଦୁଇଫାଳ ହୋଇଯାଇଥିଲା । ସେହି ସମୟରେ ତାଙ୍କୁ ଆହା ବୋଲି ପଦେ କହିବାକୁ କେହି ନଥିଲେ । ତେଣୁ ଜନଶ୍ରୁତି କହେ-

କାଉ ବୋଲେ ରାଉ ରାଉ
ଜୟୀ ରାଜଗୁରୁ ଫାଶୀ ପାଇଲେ
କେହି ନ କହିଲେ ଥାଉ ।

ତେବେ ଯେଉଁଭଳି ଭାବରେ ଜୟୀ ରାଜଗୁରୁଙ୍କ ଜୀବନର ଦୀପଶିଖା ନିର୍ବାପିତ ହେଉପଛେ, ମେଦିନୀପୁର ଭୂମିକୁ ରକ୍ତବର୍ଣ୍ଣ କରିଦେଲା ରାଜଗୁରୁଙ୍କ ଟୋପାଟୋପା ରକ୍ତ ବିନ୍ଦୁ । ଏଥିସହିତ ସମଗ୍ର ଭାରତବର୍ଷର ପ୍ରଥମ ଅମର ଶହୀଦ ଜୟକୃଷ୍ଣ ରାଜଗୁରୁଙ୍କର ଜୀବନର ଦୀପଶିଖା ନିର୍ବାପିତ ହୋଇଗଲା ।

ଏହି ବିପ୍ଳବୀ ବୀର, ଭାରତ ସ୍ୱାଧୀନତାର ପ୍ରଥମ ଅମର ଶହୀଦ ଜୟୀ ରାଜଗୁରୁଙ୍କ ସଂପର୍କରେ ଯେତେସବୁ ଜନଶ୍ରୁତି ବା ତଥ୍ୟ ରହିଛି, ତାହାକୁ ଐତିହାସିକମାନେ ବିଭିନ୍ନ ବଳିଷ୍ଠ ପ୍ରମାଣ ସାହାଯ୍ୟରେ ପ୍ରତିପାଦନ କରିବାକୁ ଚେଷ୍ଟା ଅବ୍ୟାହତ ରଖିଛନ୍ତି । ତେବେ ଏହି ଜନଶ୍ରୁତିଗୁଡିକ ଯେ ଇତିହାସର ଭିତ୍ତିଭୂମିକୁ ସୁଦୃଢ ନ କରିବ, ସେକଥା ସମୟ କହିବ ।

ଓଡିଶାର ସ୍ୱାଧୀନତା ଆନ୍ଦୋଳନ ଇତିହାସରେ ଜୟୀ ରାଜଗୁରୁଙ୍କର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଓଡିଶା ମୁକ୍ତି ସଂଗ୍ରାମର ସେହି ପ୍ରଥମ ଶହୀଦ, ମହାନବୀର ପ୍ରକୃତରେ ଓଡିଶାବାସୀଙ୍କର ଚିର ବନ୍ଦନୀୟ, ପ୍ରାତଃ ସ୍ମରଣୀୟ ।

ସହାୟକ ଗ୍ରନ୍ଥ :


୧. ଉତ୍କଳ ପ୍ରସଙ୍ଗ - ଜାନୁଆରୀ ୧୯୯୯
୨. ଓଡିଶାର କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ
୩. ଜୟୀ ରାଜଗୁରୁ
୪. ଖୋର୍ଦ୍ଧା ଇତିହାସ
୫. History of Orissa - K. C. Panigrahi



କ୍ୟୁରେଟର୍ ଇନ୍‌ଚାର୍ଜ
ପୋଥି ବିଭାଗ, ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର-୧୪




ଓଡ଼ିଶା ବିଧାନସଭା

## ଭାରତୀୟ ପ୍ରଥମ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବୀର

# ଚନ୍ଦନ ହଜୁରୀ

କାଞ୍ଚନାରାୟଣ ମହାନ୍ତି

**କୋ**ଟି କୋଟି ମଣିଷ ଏ ମାଟିରେ ଜନ୍ମ ନିଅନ୍ତି । ନିଜ ଘର ସଂସାର ସୁଖଦୁଃଖ ଭିତରେ ଦିନେ ଏ ଦୁନିଆଁରୁ ଚାଲିଯାଆନ୍ତି । ଯେଉଁ କେତେ ଜଣ ଘର ସଂସାରକୁ ବଡ଼ ନକରି ଦେଶ ଓ ଜାତିପାଇଁ କିଛି କାମ କରିଯାଆନ୍ତି ସେମାନେ ଅମର ହୋଇଯାଆନ୍ତି ।

ଆମ ଭାରତମାତାକୁ ବିଦେଶୀ ହାତରୁ ମୁକ୍ତକରି ଆଣିବା ପାଇଁ ଗାନ୍ଧିଜୀ ଯେପରି ଶାନ୍ତିର ପଥ ଦେଖାଇ ଆଜି ସାରା ଦୁନିଆ ଆଖିରେ ଜାତିର ପିତା ମହାତ୍ମା ପାଲଟିଗଲେ, ସେହି ଡାକରାରେ ମୁକତି ସମରରେ ଯୋଗ ଦେଇଥିଲେ ଆମ ଓଡ଼ିଶାର କେତେ କେତେ ବୀର । ସେମାନେ ହେଲେ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ଦଳବେହେରା, ସୁରେନ୍ଦ୍ର ସାଏ, ଚନ୍ଦନ ହଜୁରୀ ଓ ଅନ୍ୟମାନେ ।



ଚନ୍ଦନ ହଜୁରୀଙ୍କର ଆଉ ଗୋଟାଏ ନାଁ ଥିଲା 'ଚାଖି' । 'ଖୁଣ୍ଟିଆ' ସେବା ମିଳିଥିବାରୁ ତାଙ୍କୁ ଚାଖି ଖୁଣ୍ଟିଆ କୁହାଯାଉଥିଲା । ସେ ପ୍ରଭୁ ଜଗନ୍ନାଥଙ୍କର ସେବକ । ପୁରୀର ହଜୁରୀ ପରିବାରରେ ତାଙ୍କର ଜନ୍ମ । ବାପା ରଘୁନାଥ ହଜୁରୀ ଆଉ ମାଆ କମଳାବତୀ ଦେବୀ । ସେ ଥିଲେ ପ୍ରଭୁଙ୍କର ଚନ୍ଦନଲାଗି ସେବକ । ଯୋଗକୁ ଚନ୍ଦନଲାଗି ସେବା ଚାଲିଥିବାବେଳେ ବହୁ ବିଳମ୍ବରେ ତାଙ୍କୁ ପ୍ରଭୁ ପୁଅଟିଏ ଦେଇଥିବାରୁ ସେ ତାଙ୍କ ଦୟାରୁ ମିଳିଥିବାରୁ ଶିଶୁର ନାମ ରଖିଥିଲେ 'ଚନ୍ଦନ' ।

ଚନ୍ଦନର ସୁବାସ ପରି ସେ ପିଲାଦିନୁ ଜଣେ ଭଲ ମଣିଷ ହେବାର ସବୁ ଲକ୍ଷଣ ତାଙ୍କଠାରେ ଜଣା ପଡ଼ିଯାଇଥିଲା ।

ଅତି ଛୋଟବେଳୁଁ ସେ ସାହସୀ, ସାହାଯ୍ୟକାରୀ ଓ ସତ୍ୟବାଦୀ ଥିବାରୁ ପୁରୀ ହରଚଣ୍ଡୀ ସାହିର ସବୁରି ପ୍ରିୟ ଥିଲେ । ପରେ ସେ ହେଲେ ଜଣେ ଦେଶଭକ୍ତ ସ୍ୱାଧୀନତା ସଂଗ୍ରାମୀ, ଭକ୍ତକବି, ଶ୍ରୀଜୀଉଙ୍କ ଅଙ୍ଗଲାଗି ସେବକ । ତାଙ୍କର ଖେଳ, ଜାଗା ଆଖେଡ଼ା ଯେତିକି ପ୍ରିୟ ଥିଲା, ଜଗନ୍ନାଥଙ୍କ ସେବା କରିବାକୁ ମଧ୍ୟ ସେତିକି ଆଗ୍ରହ ଥିଲା । ଛୋଟ ବେଳେ ବାପାଙ୍କ ସହିତ ସେ ମନ୍ଦିର ଗଲାବେଳେ ବେଢ଼ା ବୁଲିବୁଲି ମହାଭାରତ ପୁରାଣ କାହାଣୀ ସବୁ ପଚାରି ବୁଝନ୍ତି ।

ପୁରୀକୁ ଭାରତବର୍ଷର ବହୁ ଦୂର ଦୂରାନ୍ତରୁ ବିଭିନ୍ନ ଭାଷାଭାଷୀର କହୁଥିବା ଯାତ୍ରୀମାନେ ଆସନ୍ତି । ସେମାନଙ୍କର ଭାଷା ନ ଜାଣିଲେ ପୂଜାପଣ୍ଡାର ବେଉସା କେମିତି ଚାଲିବ ତେଣୁ ସେ ସଂସ୍କୃତ ଭାଷା ଶିଖିବା ସହିତ ହିନ୍ଦୀ, ବଙ୍ଗଳା ଭାଷା ମଧ୍ୟ ଅତି ସହଜରେ କହିବା ଓ ଲେଖିବା ଶିଖି ଯାଇଥିଲେ ।

ଉତ୍ତର ଭାରତରେ ତାଙ୍କର ଯଜମାନ ବେଶୀ ଥିବାରୁ ସେ ହିନ୍ଦୀଭାଷା ଭଲ ଭାବରେ ଜାଣିବା ଦରକାର ବୋଲି ବାପାଙ୍କଠାରୁ ବୁଝି ସାରିଥିଲେ । ସେତେବେଳେ ଶ୍ରୀମନ୍ଦିରର ସେବାୟତମାନଙ୍କୁ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ବୋଲି ଭାବି ଦୂରକୁ ଯାଉଥିବା ଯାତ୍ରୀ ପଣ୍ଡାମାନଙ୍କୁ ଆଦର ସମ୍ମାନ କରାଯାଉଥିଲା ।

### ପାଠପଢ଼ା

ସଂସ୍କୃତ ହେଲା ସବୁଭାଷାର ଜନନୀ । କଥାରେ ଅଛି, ଜଣେ ପାଠପଢ଼ି ଶିକ୍ଷିତ ହେଲେ ସେ ଦେଶ ଦଶର ମଙ୍ଗଳ କରେ । ରଘୁନାଥ ହଜୁରୀ ଛାମୁ ଖୁଣ୍ଟିଆ ଭାବରେ ବେଶ୍ ଜ୍ଞାନୀ ଥିଲେ ।

ପୁଅ ଚନ୍ଦନର ଶିକ୍ଷାଦୀକ୍ଷା ପାଇଁ ସେ ନିଜେ ତତ୍ତ୍ୱ ନେଇ ପଢ଼ାଇ ସାରିବା ପରେ ପୁରୀର ସେ ସମୟର ପ୍ରସିଦ୍ଧ ସନ୍ଥ ପଣ୍ଡିତ ହରିହର ବ୍ରହ୍ମାଙ୍କଠାରୁ ସଂସ୍କୃତରେ ଅଧିକତର ଶିକ୍ଷା ପାଇଁ ପଠାଇଥିଲେ ।

ତାଙ୍କଠାରୁ ଅଳ୍ପ କେତେଦିନ ଶିକ୍ଷାଲାଭ କଲା ପରେ ହିନ୍ଦୀର ପ୍ରବୀଣ ଶିକ୍ଷକ ରାମ ଦୟାଲ ଶର୍ମାଙ୍କ ପାଖରେ ଚନ୍ଦନ ପାଠପଢ଼ିଲେ । ପାଠପଢ଼ା ସହିତ ମନ୍ଦିରର ପୂଜାପଦ୍ଧତି ଉପରେ ତାଙ୍କର ବେଶ୍ ଦଖଲ ଥିଲା ।

### ଯାତ୍ରୀ ବ୍ୟବସାୟ ଓ ଉତ୍ତର ଭାରତରେ ଲୋକ ସଂପର୍କ

ପୁଅ ଚନ୍ଦନର ପାରିଲାପଣିଆ ଦେଖି ରଘୁନାଥ ହଜୁରୀ ମନ୍ଦିର ସେବାରେ ତାଙ୍କୁ ମଣେଇ ଦେଲେ । ଚନ୍ଦନ ବେଶ୍ ଦି' ପଇସା କମେଇ

ପାରିଲା ଦେଖି ବୁଢ଼ା ହଜୁରୀ ଖୁସି ହେଲେ । ଏଥର ସେ ଟିକିଏ ବିଶ୍ରାମ ଖୋଜୁଥିଲେ । ଚନ୍ଦନଙ୍କର ଏବେ ଦୁଇଟି କାମ । ମନ୍ଦିରର ସେବା, ଆଉ ବଣ୍ଟା ଯାଇଥିବା ଯଜମାନୀ । ଏଥିପାଇଁ ତାଙ୍କୁ ଉତ୍ତର-ପ୍ରଦେଶ ପର୍ଯ୍ୟନ୍ତ ଯିବାକୁ ପଡୁଥିଲା ।

ଆଗେ ତ ଯାତାୟାତ ପାଇଁ ପୁରୀକୁ କିଛି ସୁବିଧା ନଥିଲା । ଲୋକମାନେ ଚାଲି ଚାଲି ଅବା ଧନୀ ଲୋକମାନେ ହାତୀ, ଘୋଡ଼ା, ଶଗଡ଼ ଇତ୍ୟାଦିରେ ଆସୁଥିଲେ । ବାଟରେ ଥିଲା ରାତି କିମ୍ବା ଖରାବେଳର ବିଶ୍ରାମ ପାଇଁ ଚଟିଘର । ସାଙ୍ଗରେ ଚୁଡ଼ା, ଚାଉଳ, ପରିବା ଧରି ଯିବାକୁ ପଡୁଥିଲା ।

ଯାତ୍ରୀପଣ୍ଡାମାନେ ମଧ୍ୟ ସେହିପରି ଦୂରଯାତ୍ରା ପାଇଁ ଚାଲି ଚାଲି ସୁଦୂର କଲକତା, ବିହାର, ଉତ୍ତରପ୍ରଦେଶ ରାଜ୍ୟକୁ ଯାଉଥିଲେ । ପଣ୍ଡାମାନଙ୍କୁ ସେମାନେ ଅତି ଭକ୍ତିରେ ଅତିଥି ପରି ରଖି ଦାନ ଦକ୍ଷିଣା ଦେଉଥିଲେ । ବିଠୁରର ସେତେବେଳର ଅବସ୍ଥା ଦାରୁଣ ଥିଲା । ପେଶୱା ବାଜିରାଓ ନିଜ ରାଜ୍ୟ ଛାଡ଼ି ଇଂରେଜ ଶାସକଙ୍କର ଭୟରେ ବିଠୁରରେ ରହୁଥାନ୍ତି ।

ଚନ୍ଦନ ହଜୁରୀ ଯାତ୍ରୀ ଭାବେ ବୁଲି ଦାନ ଦକ୍ଷିଣା ଆଣିବା ସହିତ ଭାରତର ସ୍ୱାଧୀନତାର ପରିସ୍ଥିତି ସଂଗ୍ରହ କରୁଥିଲେ । ତାଙ୍କର ଉଚ୍ଚତା ଓ ବାହୁବଳ ଏତେ ଥିଲା ଯେ ଥରେ ରଥଯାତ୍ରା ପରେ ଗଜପତି ରାଜା ଘୋଷଣା କରିଥିଲେ, ଯିଏ ଦୁଇହାତରେ ଗୋଟିଏ ରଥଚକକୁ ଛତି କରି ଦେବ, ତା' ମଥାରେ ପାଗ ଭିଡ଼ା ହେବ । ହେଲେ କେହି ଦୁଇ ହାତରେ ଟେକି ପାରିଲେ ନାହିଁ ଅଥଚ ବୀରବାହୁ ହଜୁରୀ ବାମ ହାତରେ ଏକାଥରକେ ରଥଚକକୁ ରାଜାଙ୍କ ସାମ୍ନାରେ ଛତି କରି ଦେଇଥିବାରୁ ରଥଯାତ୍ରା ପରେ ସମ୍ମାନ ସ୍ୱରୂପ ତାଙ୍କ ପରିବାରକୁ ଗୋଟିଏ ରଥଚକ ଦାନ କରାଯାଉଥିଲା । ଏବେ ତାଙ୍କୁ ସେଇ ପୁରସ୍କାରଟି ନ ମିଳିବାରୁ ତାଙ୍କ ବଂଶର ଅଣନାତି ଭୀମସେନ ହଜୁରୀ ସେ ବିଷୟରେ ନିବେଦନ କରିଛନ୍ତି ।

### ସେ ସମୟର ଦେଶର ଅବସ୍ଥା

ଭାରତରେ ସେତିକିବେଳେ ମୋଗଲ ସାମ୍ରାଜ୍ୟର ପତନ ସମୟ । ଚାରିଆଡ଼େ ଗୃହଯୁଦ୍ଧ । ଛୋଟ ଛୋଟ ରାଜ୍ୟ ସବୁ ମୁଣ୍ଡଟେକି ନିଜକୁ ସ୍ୱାଧୀନ ଘୋଷଣା କରି ପଡ଼ୋଶୀ ରାଜ୍ୟମାନଙ୍କୁ ଦଖଲ କରିବାକୁ ଆକ୍ରମଣ କରିବାରେ ବ୍ୟସ୍ତ । ମରହଟ୍ଟାମାନଙ୍କର ଅମାପ ଶକ୍ତି । କୌଶଳୀ ଇଂରେଜ ବଣିକ ଭାରତର ଏପରି ଅବସ୍ଥାରେ କଳିର ମଞ୍ଜିପୋତି ଅଶାନ୍ତିର ନିଆଁ ଜଳାଇ ଚାଲିଲେ । ଏହାଦ୍ୱାରା ଦୁଇଜଣଙ୍କ କଳିରେ ତୃତୀୟର ଲାଭ ହେଲା ।

ସେହି ସମୟରେ କାଶୀର ମରହଟ୍ଟା ଶାସକ ଚମାଜୀଙ୍କର ଦେବାନ୍ ଥିଲେ ମୋରାପନ୍ଥ ତାମ୍ବେ । ସେ ତୀର୍ଥ କରିବାକୁ ପୁରୀ ଆସିଥିଲେ । ସେତେବେଳେ ଯଜମାନମାନେ ନିଜ ନିଜର ପୂଜାପଣ୍ଡାମାନଙ୍କ ଘରେ ରହୁଥିଲେ । ଅସୁବିଧା ସୁବିଧାରେ ଦୂରଯାତ୍ରାରେ ସେ ପଣ୍ଡାମାନେ ତାଙ୍କୁ ସାହାଯ୍ୟ କରୁଥିଲେ । ସେତେବେଳେ ତାଙ୍କ ଯଜମାନ ତାମ୍ବେଙ୍କ ସହିତ ଥିଲେ ତାଙ୍କ ସ୍ତ୍ରୀ ଓ ସାନ ଝିଅ ମୀନୁବାଈ ।

ପରବର୍ତ୍ତୀ ସମୟରେ ସେ ଝାନ୍ସୀର ରାଣୀ ହୋଇଥିଲେ । ଚନ୍ଦନ ହଜୁରୀଙ୍କର ବାପା ଭୀମସେନ ନିଜ ଝିଅଭଳି ମୀନୁବାଈକୁ ଖୁବ୍ ସ୍ନେହ କରୁଥିଲେ ।

୧୮୪୮ ମସିହାରେ ମୀନୁବାଈ ଝାନ୍ସୀର ଅଧିପତି ଗଙ୍ଗାଧର ରାଓଙ୍କୁ ବିବାହ କରିଥିଲେ । ତୀର୍ଥଗୁରୁ ହିସାବରେ ପୁରୀର ହଜୁରୀ ପରିବାର ଉତ୍ତରପ୍ରଦେଶ ଯାଇ ବିବାହରେ ଯୋଗ ଦେଇଥିଲେ ଏବଂ ରାଜାଙ୍କଠାରୁ ବହୁ ଉପହାର ଆଣିଥିଲେ ।

### ଚନ୍ଦନ ହଜୁରୀଙ୍କ ସହ ଲକ୍ଷ୍ମୀବାଈଙ୍କର ସୁସଂପର୍କ

ରାଜା ଗଂଗାଧର ରାଓ ଝାନ୍ସୀର ଶାସକ । ସେ ଲକ୍ଷ୍ମୀବାଈଙ୍କୁ ବିବାହ କରି ଅତି ଖୁସିରେ ରାଜ୍ୟ ଚଳାଇଥାନ୍ତି । ରାଣୀ ସୁଗୁଣବତୀ, ବିଦୁଷୀ ବୀର ରମଣୀ ଏ କଥା ଜାଣି ବେଳେବେଳେ କୌଣସି ବିଶେଷ ନିଷ୍ପତ୍ତି ନେଲାବେଳେ ରାଜା ଲକ୍ଷ୍ମୀବାଈଙ୍କର ପରାମର୍ଶ ନିଅନ୍ତି । ଜନହିତକର କାମରେ ସବୁବେଳେ ମନ ଦେଇ ସେ ପ୍ରଜାମାନଙ୍କର ଅତି ଆପଣାର ହୋଇପାରିଥିଲେ ।

ଚାରିବର୍ଷର ସୁଖୀ ବିବାହିତ ଜୀବନକୁ ସମୟର ଜୁଆର ଭସେଇ ନେଇଥିଲା । ବିବାହର ଦୁଇବର୍ଷ ମଧ୍ୟରେ ପୁଅଟିଏ ତାଙ୍କ କୋଳକୁ ଆସିଥିଲା । ହେଲେ ରାଜପୁତ୍ର ହେବାର ଭାଗ୍ୟ ତା'ର ନଥିଲା । ସେ ଅକାଳରେ ଆଖି ବୁଜି ଦେଇଥିଲା । ପୁଅ ଚାଲିଗଲା ପରେ ଆଉ ମାତ୍ର ଦୁଇବର୍ଷ ପରେ ରାଜା ଗଂଗାଧର ରାଓ ହଠାତ୍ ସେ ସମୟରେ ଚାଲିଗଲେ ।

ଜୀବନରେ ଗୋଟାଏ ପରେ ଗୋଟାଏ ଦୁଃଖ ଚାଲିଥିବାବେଳେ ଇଂରେଜର କୋପଦୃଷ୍ଟି ଭାରତବର୍ଷର ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କରେ ପଡ଼ିଥାଏ । ଯେଉଁ ରାଜ୍ୟରେ ପୁଅ ନାହିଁ ସେମାନେ ଆଉ ପୋଷ୍ୟପୁଅ ଗ୍ରହଣ କରିପାରିବେ ନାହିଁ । ମାତ୍ର ଉଣେଇଶ ବର୍ଷ ବୟସର ନାରୀ ସବୁ ଧନସଂପଦ ଥାଇ ମଧ୍ୟ ସବୁକିଛି ହରାଇ ଭାଙ୍ଗି ପଡ଼ିଥିଲେ । କେବଳ ଗୋଟିଏ ବଡ଼କାରଣ ଥିଲା ଯେ ତାଙ୍କର ବିଶ୍ୱସ୍ତ ଲୋକମାନେ ହେଲେ ଚକ୍ରାନ୍ତକାରୀ ଗୃହଶତ୍ରୁ । ଏପରିକି ତାଙ୍କ ପରାମର୍ଶଦାତା ମନ୍ତ୍ରୀ ମଧ୍ୟ ଚାହୁଁଥିଲେ ସୁଯୋଗ ଦେଖି ସିଂହାସନ ଦଖଲ କରିବା ପାଇଁ । ଏ ପରିସ୍ଥିତିରେ ରାଣୀଙ୍କର ପିଲାଦିନେ ପୁରୀ ଶ୍ରୀକ୍ଷେତ୍ରର ତୀର୍ଥଗୁରୁ ବନ୍ଧୁଙ୍କ କଥା ମନେ ପଡ଼ିଥିଲା ।

ସେ କିଛି ଥଳକୂଳ ନପାଇ ନିଜ ହାତ ଅକ୍ଷରରେ ଲେଖା ଚିଠି ସହ ଗୋଟିଏ ପଥରରେ ତିଆରି ଦୁର୍ଗା ମୂର୍ତ୍ତି ଚନ୍ଦନ ହଜୁରୀଙ୍କ ନିକଟକୁ ପଠାଇଥିଲେ । ତାହା ଥିଲା ଦେଶରକ୍ଷା ଆମନ୍ତ୍ରଣ । ସେହି ଦୁର୍ଗା ମୂର୍ତ୍ତି

ଏବେ ମଧ୍ୟ ହରଚଣ୍ଡି ସାହି ହଜୁରୀ ନିବାସର ଇଷ୍ଟଦେବୀ ଭଳି ଛୋଟ ମନ୍ଦିରଟିରେ ପୂଜା ପାଉଛନ୍ତି ।

ରାଣୀ ଲକ୍ଷ୍ମୀବାଈଙ୍କ ଚିଠି

ତୀର୍ଥଗୁରୁ ପୁରୁଷୋତ୍ତମ କ୍ଷେତ୍ର ପଣ୍ଡା ମହାରାଜା ଖୋଦ ଶ୍ରୀ ଚନ୍ଦନ ହଜୁରୀ ଏବଂ ଛଡ଼ିଦାର ମହାରାଣୀଙ୍କର ଜୟ ଶ୍ରୀରାମ ।

ମହାଶୟ !

ଏ ପତ୍ର ଲେଖିବା ଜରୁରୀ ହେତୁ ଲେଖି ଜଣାଉଛି । ଆପଣ ଆମ ତୀର୍ଥଗୁରୁ ପିତାଜୀଙ୍କର ଗୁରୁଭାଇ ଅଟନ୍ତି ।

ଆପଣଙ୍କ ବିଚକ୍ଷଣ ବୁଦ୍ଧି ଓ ଅସୀମ ସାହସ ମୋର ଏ ଅସମୟରେ ଅତି ଆବଶ୍ୟକ । ମୁଁ ଆପଣ କହିବା ଅନୁଯାୟୀ ମହାଲକ୍ଷ୍ମୀ ବ୍ରତ ପାଳନ କରୁଛି । ମୁଁ ବର୍ତ୍ତମାନ ବଡ଼ ବ୍ୟଥିତ । ଝାନ୍ସୀରେ ଏବେ ଚାରିଆଡ଼େ ଗୋ-ବଧ ଚାଲିଛି । ଲଳିତପୁରରେ ମଧ୍ୟ ସେହି ଅବସ୍ଥା । ଗତବର୍ଷ ମୁଁ ମୋର ଋଣ ଶୁଝିବାକୁ ଟଙ୍କା ଚାହିଁଥିଲି ଇଷ୍ଟଇଣ୍ଡିଆ କମ୍ପାନୀ କର ଆଦାୟ କରି ନେଉଛି କିନ୍ତୁ ଟଙ୍କା ମଞ୍ଜୁର କଲା ନାହିଁ । ମୁଁ ମଧ୍ୟ ଧନହୀନ ।

ଅର୍ଥଚିନ୍ତା ସହିତ ପ୍ରତି ମୁହୂର୍ତ୍ତରେ ଚାରିପାଖରେ ମୋର ଆପଣାର ରାଜକର୍ମଚାରୀ ମଧ୍ୟ ଚକ୍ରାନ୍ତକାରୀ ଶତ୍ରୁ କେଉଁ ମୁହୂର୍ତ୍ତରେ କ'ଣ ଘଟାଇପାରନ୍ତି । ଏସବୁ ବରଦାସ୍ତ କରିବା ସକାଶେ ନାରୀଟିଏ ଭାବେ କଷ୍ଟକର ହୋଇ ପଡୁଛି । ଆପଣ ମୋର ବାଲ୍ୟସାଥୀ, ବନ୍ଧୁ ତୀର୍ଥଗୁରୁ ଅଭିଭାବକ ଭାବେ ଖାଲି ପାଖେପାଖେ ରହିଲେ ମୋର କିଛି ଚିନ୍ତା ନାହିଁ ବରଂ ସାହସ ଦ୍ୱିଗୁଣ ବଢ଼ିଯିବ ।

ଶ୍ରୀଶ୍ରୀଜଗନ୍ନାଥଙ୍କୁ ଶତ ଶତ ପ୍ରଣାମ । ଶ୍ରୀଜୀଉଙ୍କୁ ସବୁ ଜଣାଇବେ । ଆପଣଙ୍କ ଶୁଭ ଆଗମନକୁ ଅପେକ୍ଷା କରି ରହିଲି । ମୋ' ଦୁଃଖ କଥା ଜାଣିବାକୁ ପଣ୍ଡାଜୀ ଭୀମସେନ ହଜୁରୀ ଆଜି ନାହାନ୍ତି । ସେ ମହାତ୍ମାଙ୍କୁ ମୋ' ହୃଦୟରୁ ଭୁଲି ପାରୁନି । ଆପଣଙ୍କ ବିନୀତ ।

- ଲକ୍ଷ୍ମୀବାଈ

ଅସାଧାରଣ ନାରୀ ଲକ୍ଷ୍ମୀବାଈଙ୍କ ସହ ଦୁଃଖର ସାଥୀ ଚନ୍ଦନ ହଜୁରୀ

କେବଳ ଯେ ଉତ୍ତରଭାରତରେ ହଜୁରୀ ବଂଶର ଯଜମାନୀ ଥିଲା ବୋଲି ନୁହେଁ, ପୁରୀ ପଣ୍ଡାମାନଙ୍କର ପରାମର୍ଶ ମଧ୍ୟ ରାଜାମାନେ ଗ୍ରହଣ କରୁଥିଲେ । ଉପଯୁକ୍ତ ସମ୍ମାନ ସହ ଯଥେଷ୍ଟ ଦାନ ଦକ୍ଷିଣା ଦେଉଥିଲେ ।

ବହୁ ଦୁଃଖ ବିପଦ ଆସିଲେ ସବୁ ସହି ସହି ମଣିଷ ଭିତରେ ନିରାଶା ଅପେକ୍ଷା ଧୈର୍ଯ୍ୟ ବସା ବାନ୍ଧିଥାଏ । ନିଜ ଜୀବନକୁ ପ୍ରଜାମାନଙ୍କ ପାଇଁ ଉତ୍ସର୍ଗ କରି ସେ ସବୁ ବିପଦକୁ ସାମ୍ନା କରିବାକୁ ପ୍ରସ୍ତୁତ ଥିଲେ । ନାରୀ କେବେ ବି ଦୁର୍ବଳ ନୁହେଁ, ଏହା ସେ ସମସ୍ତଙ୍କୁ ଜଣାଇ ଦେଇ ରାଜ୍ୟଭାର ଚଳାଇ ଥିଲେ । ଦୁଃଖକୁ ବିଧାତାଙ୍କର ଆଶୀର୍ବାଦ ମନେକରି ସେ ବରଂ ନିଜକୁ ଦୁଃସାହସୀ କରି ଗଢ଼ିଲେ ।

ମୋଗଲମାନେ ଦୁର୍ବଳ ହୋଇ ପଡ଼ିଥିଲେ । ଦିଲ୍ଲୀ ଦରବାରରେ ଅରାଜକତାର ସୁଯୋଗ ନେଇ ବ୍ରିଟିଶ ଶାସକ ପାଇଁ ସୁବର୍ଣ୍ଣ ସୁଯୋଗ ଉପୁଜିଥିଲା । ଦିଲ୍ଲୀ ଦରବାରକୁ ଅଧିକାର କରିବା ପରେ ଗୋରା-ଶାସକମାନଙ୍କୁ ସମଗ୍ର ଭାରତ କବଳିତ କରିବାକୁ ସମୟ ଲାଗିଲା ନାହିଁ ।

ଚାରିଆଡ଼େ ବିଦ୍ରୋହ, ଅଶାନ୍ତି, ପ୍ରଜା ଅଶାନ୍ତି, ଲାଗି ରହିଲା । ଇଂରେଜମାନଙ୍କର ଗୋଡ଼ାଣିଆ ହୋଇ କେତେକ ଦେଶଦ୍ରୋହୀ ବିଶ୍ୱାସଘାତକତା କରି ଆମ ସ୍ୱାଧୀନତାର ମୁକ୍ତି ସଂଗ୍ରାମୀମାନଙ୍କୁ ଧରାଇ ଦେଲେ । ସେତେବେଳର ବ୍ରିଟିଶ ଶାସକ ଲର୍ଡ଼ କ୍ଲାଇବ ଓ ଡେଲ୍ ହାଉସୀ ପ୍ରଭୃତି ଭାରତକୁ ଖଣ୍ଡ ଖଣ୍ଡ କରି ବ୍ରିଟିଶରାଜ ଚଳାଇଥିଲେ । ସେମାନଙ୍କୁ ମାତ୍ର କିଛି ପଦପଦବୀର ଲୋଭ ଦେଖାଇ ଲକ୍ଷ ଲକ୍ଷ ଟଙ୍କାର କର ଆଦାୟ କରି ଇଂରେଜ ସରକାର ଶୋଷଣ ଚଳାଇଥିଲା । ଚାରିଆଡ଼େ ଅଶାନ୍ତିର ନିଆଁ କୁହୁଳୁଥିଲା । ପ୍ରଥମେ ଦକ୍ଷିଣ ଭାରତର ତ୍ରିଚିନାପଲ୍ଲୀ, ପଣ୍ଡିଚେରୀ, କର୍ଣ୍ଣାଟକ ତା' ପରେ ବଙ୍ଗ, ବିହାର, ଓଡ଼ିଶା ପ୍ରଭୃତି ଅଧିକାର କରି ଚାଲିଥିଲେ ବ୍ରିଟିଶ ସରକାର - ଲର୍ଡ଼ ଡେଲ ହାଉସୀ ଭାରତବର୍ଷକୁ ଆସିବା ପୂର୍ବରୁ ଅତି ନୃଶଂସ ଭାବେ କହିଥିଲେ - 'ମୁଁ ହିନ୍ଦୁସ୍ଥାନକୁ ମାଟିରେ ମିଶେଇ ଦେବି, ଆଉ ଓ୍ୱିଲ ଲେଭେଲ ଦି ଲ୍ୟାଣ୍ଡ ହିନ୍ଦୁସ୍ଥାନ ।'

ଭାରତ ଇଂରେଜର କୁଟନୀତି ବଳରେ କବଳିତ ହୋଇଥିଲା । ଯେତେବେଳେ ରାଣୀ ଲକ୍ଷ୍ମୀବାଈଙ୍କର ଅବସ୍ଥା ଅସମ୍ଭାଳ ହୋଇପଡ଼ିଥିଲା, ସେତିକିବେଳେ ତୀର୍ଥଗୁରୁ ଚନ୍ଦନ ହଜୁରୀ ଝାନ୍ସୀରେ ପହଞ୍ଚି ତାଙ୍କ ମନରେ ଭରସା ଦେଇଥିଲେ । ୧୮୫୭ ମସିହା ଜାନୁଆରୀ ୨୪ ତାରିଖରେ ଝାନ୍ସୀରେ ଚନ୍ଦନ ହଜୁରୀ ପହଞ୍ଚି ଗୃହଶତ୍ରୁ ଲକ୍ଷ୍ମଣ ରାଓର ଚକ୍ରାନ୍ତ ଜାଣି ଘୋଷଣା କରିଥିଲେ - ରାଣୀଙ୍କର ଗୁମାସ୍ତା ଅଯୋଗ୍ୟ ଲକ୍ଷ୍ମଣ ରାଓ ପୁଣି କୌଣସି ରାଜ୍ୟର ପ୍ରଧାନମନ୍ତ୍ରୀ ହେବାକୁ ସଂପୂର୍ଣ୍ଣ ଅଯୋଗ୍ୟ ।

ରାଣୀଙ୍କର ପୋଷ୍ୟପୁତ୍ର ଦାମୋଦରକୁ ଇଂରେଜ ସରକାର ଗ୍ରହଣ କରିବାକୁ ନାରାଜ । ସୈନ୍ୟ ସାମନ୍ତ ବିପର୍ଯ୍ୟସ୍ତ । ଆଉ ଅନ୍ୟ କେହି ଝାନ୍ସୀର ଉତ୍ତରାଧିକାରୀ ହୋଇ ପାରିବେ ନାହିଁ ବୋଲି ଡେଲ୍‌ହାଉସୀଙ୍କର ପ୍ରତିନିଧି ରାଜ ଉଆସ ଉପରେ ୟୁନିଅନ ଜ୍ୟାକ୍ ଉଡ଼ାଇ ଦେଲା । ରାଜା ଗଙ୍ଗାଧର ରାଓଙ୍କର ବିଧବା ପତ୍ନୀ ଭାବେ ମାସିକ ପାଞ୍ଚ ହଜାର ଟଙ୍କା ସରକାରୀ ଭତ୍ତା ମଞ୍ଜୁର କରାଗଲା ।

ଏହା ରାଣୀଙ୍କ ସମ୍ମାନକୁ ଆଘାତ କଲା । ଇଂରେଜ ସେନାପତି କ୍ୟାପଟେନ ସ୍କିନର ରାଣୀଙ୍କୁ ଜଣେଇ ଦେଇ ଗଲା - ରାଣି ! ତୁମେ

ଇଂରେଜ ଶାସକର ଦୟାର ପାତ୍ର । ତେଣୁ ତାଙ୍କ ନିକଟରେ ତୁମେ କୃତଜ୍ଞ ରହିବା ଉଚିତ ।

ରାଣୀ ଯେତେବେଳେ ଦୁର୍ବଳ ହୋଇ ପଡୁଥିଲେ, ବୀର ବିଚକ୍ଷଣ ଚନ୍ଦନ ହଜୁରୀ ସେତେବେଳେ ସମ୍ମୁଖରେ ପହଞ୍ଚି ତାଙ୍କୁ ଉତ୍ସାହିତ କରୁଥିଲେ । ମଣିଷ ଦିନେ ମରିବ କିନ୍ତୁ ଦେଶ ଜାତି ପାଇଁ ଜୀବନ ଦେବା କେତେ ଜଣଙ୍କ ଭାଗ୍ୟରେ ମିଳେ ? ଭାରତୀୟ ନାରୀ କିଛି କମ୍ ସାହସୀ ନୁହନ୍ତି, ଆପଣଙ୍କ ସାମ୍ନାରେ ଯେତେ ଶତ୍ରୁ ଆସିଲେ ଟଳି ପଡ଼ିବ ।

ପଦ୍ମଫୁଲ ଓ ରୁଟି

ଦିନକର ଘଟଣା । ଖୁବ୍ ଭାରି ମନରେ ହଜୁରୀ ଚାଲି ଚାଲି ଜନପଦ ବାହାରକୁ ଯାଇ ଶିବ ମନ୍ଦିରର ଚଉତରା ଉପରେ ନିରୋଳା ମନରେ ବସି ପରିସ୍ଥିତି ବିଷୟରେ ଚିନ୍ତା କରୁଥିଲେ । କେହି କୁଆଡ଼େ ନ ଥିଲେ, ଦେଖିଲା ବେଳକୁ ହଠାତ୍ ଜଣେ ସାଧୁ ଆସି ମଣ୍ଡପରେ ବସିଲେ । କିଛି ସମୟ ପରେ ମନ୍ଦିର ଭିତରୁ ଦୁଇ ଜଣ ବଳବାନ ଯୁବକ ଚାରିଆଡ଼କୁ ସତର୍କ ଦୃଷ୍ଟିରଖି ସାଧୁଙ୍କ ପାଖରେ ପହଞ୍ଚିଲେ । ହଜୁରୀ ଅପରିଚିତ କାଳେ ସେମାନେ ସନ୍ଦେହ କରିବେ, ତେଣୁ ସମୀପରେ ଥିବା ଗଛ ଆଢୁଆଳକୁ ଚାଲିଯାଇ କାନ ଡେରିଲେ । ସେମାନେ ଇଂରେଜ ଶାସକ ବିଷୟରେ କଥା ହେଉଥିଲେ । ସନ୍ୟାସୀ ପଚାରିଲେ - 'କ'ଣ ଆଉ ଖବର କୃପା ନାରାୟଣ ?' କୃପା ନାରାୟଣ କହିଲେ- କଥା ବିଷମ ଗତିରେ ଆଗେଇଛି । ସେମାନଙ୍କ ମଧ୍ୟରେ ତିନିଜଣଙ୍କ ଉପରେ ସନ୍ଦେହ ଅଛି ।

> ରାଣୀ ଯେତେବେଳେ ଦୁର୍ବଳ ହୋଇ ପଡୁଥିଲେ, ବୀର ବିଚକ୍ଷଣ ଚନ୍ଦନ ହଜୁରୀ ସେତେବେଳେ ସମ୍ମୁଖରେ ପହଞ୍ଚି ତାଙ୍କୁ ଉତ୍ସାହିତ କରୁଥିଲେ । ମଣିଷ ଦିନେ ମରିବ କିନ୍ତୁ ଦେଶ ଜାତି ପାଇଁ ଜୀବନ ଦେବା କେତେ ଜଣଙ୍କ ଭାଗ୍ୟରେ ମିଳେ ?

ସନ୍ୟାସୀ କହିଲେ - ସେମାନେ ମୋ' ଗତିବିଧି ଉପରେ ଗୋପନରେ ନଜର ରଖିଛନ୍ତି । ଅନ୍ୟ ଜଣେ ଯୁବକ ଗର୍ଜି ଉଠି କହିଲା- ଆପଣ ଆଦେଶ ଦେଲେ ମୁଁ ସେମାନଙ୍କୁ ମାରି ସଫା କରିଦେବି ।

ସନ୍ୟାସୀ କହିଲେ, ଏପରି ନୁହେଁ । ଏକତା ଦରକାର, ଚତୁରତା ଦରକାର । ସେ ଯୁବକଦ୍ୱୟଙ୍କୁ ଆଶୀଷ ଦେଇ ଗୋଟିଏ ପଦ୍ମଫୁଲ ଓ ରୁଟିଟିଏ ଦେଲେ । କହିଲେ, 'ଶୁଣ, ପଦ୍ମ ହେଉଛି ଆଗାମୀ ବିପ୍ଳବର ଚିହ୍ନ । ରୁଟିରୁ ଟିକିଏ ଟିକିଏ ଦେଇ ସମସ୍ତଙ୍କୁ ବୁଝେଇ ଦେବ ।

ସେମାନେ ପୁଣି ଆସନ୍ତା ଏକାଦଶୀ ଦିନ ସେଇ ଶିବ ମନ୍ଦିରରେ ଏକାଠି ହେବା ଯୋଜନା ସ୍ଥିର କରି କୁଆଡ଼େ ଅଦୃଶ୍ୟ ହୋଇଗଲେ । ଚନ୍ଦନ ହଜୁରୀ ଗୁପ୍ତରେ ଖବର ନେଲେ ସେମାନେ ହେଉଛନ୍ତି ଇଂରେଜର ବିଶ୍ୱସ୍ତ ହୋଇ ଗୁପ୍ତଚର କାମ କରୁଥିବା କୃପା ନାରାୟଣ, ଅନ୍ୟ ଜଣକ ଭଗତ ସିଂ ଏବଂ ମୁଖ୍ୟ ସୂତ୍ରଧର ପେଶବାର ବାଜିରାଓଙ୍କ ପୋଷ୍ୟ ପୁତ୍ର ନାନା ସାହେବ ।

ଚନ୍ଦନ ହଜୁରୀ ଗୋପନରେ ନାନା ସାହେବଙ୍କୁ ଭେଟିଲେ । ସେ ହଜୁରୀଙ୍କର ପରିଚୟ ଓ ସହଯୋଗର ହାତ ମିଳାଇ ଥିବାରୁ ଖୁସି ହେଲେ ଏବଂ ତାଙ୍କୁ କହିଲେ - ଇଂରେଜ ଶାସକ ତାଙ୍କ ବାପାଙ୍କର ବାର୍ଷିକ ଆଠଲକ୍ଷ ଟଙ୍କାର ପେନସନ୍ ବନ୍ଦ କରି ଦେଇଛନ୍ତି କାରଣ ମୁଁ ପୋଷ୍ୟପୁତ୍ର ହେବା ଯେମିତି ଗୋଟାଏ ଅପରାଧ । ଏଥିପାଇଁ ମୁଁ ଇଂରେଜ ଶାସକଙ୍କୁ ଅନୁରୋଧ କରିବି ।

ବର୍ଷକୁ ଆଠଲକ୍ଷ ଟଙ୍କା ପେନ୍‌ସନ ଦାବି ଅପେକ୍ଷା ଭାରତର ସ୍ୱାଧୀନତା ମୋର ମୂଳଇଚ୍ଛା । ସେମାନେ ଏକାଠି ହେବାରେ ତାନ୍ତିଆ ଟୋପେଙ୍କର ସହଯୋଗ କମ୍ ନୁହେଁ । ମା' ଭବାନୀଙ୍କ ପାଖରେ ସେମାନେ ଶପଥ ନେଲେ - 'ଭାରତର ସ୍ୱାଧୀନତା ଲାଗି ଜୀବନ ଯାଉପଛେ ଆମ ପ୍ରାର୍ଥନା ପୂରଣ କର ମାଆ ।'

ପ୍ରଥମ ଲକ୍ଷ୍ୟ ହେଲା- ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ଏକତାର ଜାଗରଣ, ଦ୍ୱିତୀୟରେ - ଝାନ୍‌ସୀ ରାଣୀଙ୍କର ସୈନ୍ୟବଳ ବୃଦ୍ଧି । ତୃତୀୟରେ ନାନା ସାହେବଙ୍କର ସଙ୍କେତ ବିନା ବିପ୍ଳବ ଆରମ୍ଭ ହେବ ନାହିଁ ।

ବିପ୍ଳବ

ନବଭାରତର ପ୍ରଥମ ଗଣଆନ୍ଦୋଳନ ମହାରାଷ୍ଟ୍ରର ହିନ୍ଦୁ ଶାସକ ନାନାସାହେବ ଓ ମୋଗଲ ବାଦଶାହା ବାହାଦୂର ଶାହାଙ୍କର ନେତୃତ୍ୱରେ ଆରମ୍ଭ ହୋଇଥିଲା ।

ରାଣୀ ଲକ୍ଷ୍ମୀବାଈ, ଭଗତ ସିଂ, ନାନା ସାହେବ ଜାଣିଥିଲେ ହଜୁରୀ କେବଳ ନଗର ପରିକ୍ରମା କରୁନାହାନ୍ତି, ତାହା ତାଙ୍କର ସଂଗଠନ ଗଢ଼ିବାର ଦକ୍ଷତା । ବାରକ୍‌ପୁରରେ ପ୍ରଥମେ ସୈନ୍ୟ ଶିବିରରେ ନିଆଁ ଜଳିଲା । ଦଳପତିଙ୍କୁ ଅମାନ୍ୟ କରି ମଙ୍ଗଳ ପାଣ୍ଡେ ଚିତ୍କାର କଲେ - 'ଇଂରେଜମାନଙ୍କୁ ହତ୍ୟାକର ।' ନାନା ସାହେବଙ୍କ ଯୋଜନା ପଣ୍ଡ ହୋଇଗଲା । ସାରା ଭାରତବର୍ଷରେ ନିଆଁ ଜଳିଲା ।

ଝାନ୍‌ସୀରେ ଏହି ବିପ୍ଳବ ଭିନ୍ନ ରୂପ ନେଲା । ଝାନ୍‌ସୀର ଇଂରେଜ ଶାସକ କ୍ୟାପେଟନ ସ୍କିନର ଏବଂ ତାଙ୍କ ସମର୍ଥକମାନଙ୍କୁ ଦୁର୍ଗରେ ଅବରୁଦ୍ଧ କରି ରଖାଗଲା । ସେମାନେ ଛଟପଟ ହୋଇ ମରିବା ଆଗରୁ ରାଣୀଙ୍କ ପାଖକୁ ସାହାଯ୍ୟ ପାଇଁ ଛଦ୍ମବେଶୀ ସୈନ୍ୟମାନଙ୍କୁ ପଠାଇଥିଲେ । ଝାନ୍‌ସୀ ସୈନ୍ୟମାନେ ରାସ୍ତାରେ ସେମାନଙ୍କୁ ହତ୍ୟା କଲେ ।

ସ୍କିନର ଆତ୍ମସମର୍ପଣ କଲେ । ଶ୍ୱେତ ପତାକା ଆତ୍ମ ସମର୍ପଣର ପ୍ରତୀକ ରୂପେ ଦୁର୍ଗ ଉପରେ ଉଡ଼ିଲା । ଏହା କେବଳ ଚକ୍ରାନ୍ତ ଥିଲା । ଦୁର୍ଗ ଅଧିକାର କରିବା ପରେ ଦୁର୍ଗର ଦ୍ୱାର ବନ୍ଦ କରି ଇଂରେଜ

ସୈନ୍ୟମାନେ ଶ୍ୱେତ ପତାକା ନମାନି ନାରକୀୟ ଲୀଳା କରି ହତ୍ୟା କରି ଚାଲିଲେ ।

ତେବେ ବି ଝାନ୍ସୀର ବିଜୟ ହେଲା । ଚନ୍ଦନ ହଜୁରୀ ଥିଲେ ତାଙ୍କର ଗୁପ୍ତ ପରାମର୍ଶଦାତା । ରାଣୀଙ୍କୁ ଚନ୍ଦନ ହଜୁରୀ ତାଙ୍କ ଗୃହଶତ୍ରୁ ଆତ୍ମୀୟ ସଦାଶିବ ରାଓ ଏବଂ ତେହେରିର ନବାବ ନାଥେ ଖାଁକୁ ସତର୍କ ରହିବାକୁ ସୂଚାଇ ଦେଇଥିଲେ । ସେମାନେ ପରାକ୍ରମୀ ରାଣୀ ଲକ୍ଷ୍ମୀବାଈଙ୍କଦ୍ୱାରା ସମୁଚିତ ଶାସ୍ତି ପାଇଥିଲେ ।

ଝାନ୍‌ସୀ ଆକ୍ରମଣ

ଆକ୍ରମଣର ନିଆଁ ତେଜି ଉଠିଲା । ଇଂରେଜ ସରକାର ଦୁଇଜଣ ଦକ୍ଷ ସେନାପତିଙ୍କ ଅଧୀନରେ ସୈନ୍ୟ ପରିଚାଳନା ଦାୟିତ୍ୱ ଦେଲେ । ସେମାନେ ହେଲେ 'ସାର ହିଉରୋଜ୍' ଓ 'ସାର୍ କଲିନ୍ କ୍ୟାମ୍ପବେଲ' । ହିଉରୋଜ୍ ଯମୁନା ଓ ବିନ୍ଧ୍ୟ ଅଞ୍ଚଳର ଦାୟିତ୍ୱ ନେଇଥିଲା ବେଳେ ଉତ୍ତର ଭାରତର ସୈନ୍ୟବାହିନୀ ଦାୟିତ୍ୱ ନେଇଥିଲେ 'ସାର୍ ହିଉରୋଜ୍' । ଦୁଇ ଦିଗରୁ ଇଂରେଜର ମରାତ୍ମକ ଆକ୍ରମଣ ଭୟରେ ବହୁ ଦେଶୀୟ ରାଜ୍ୟ ଇଂରେଜ ସହ ହାତ ମିଳାଇଲେ । ରାଣୀ ଅବିଚଳିତ । ପରିସ୍ଥିତି ସଂପର୍କରେ ହଜୁରୀ ରାଣୀଙ୍କୁ ଜଣାଉଥିଲେ ।

ହଠାତ୍ କାହାର ଗୁରୁଗମ୍ଭୀର ନିବେଦନ ଜନତାଙ୍କୁ ଭାରତମାତାର ମୁକ୍ତି ଲାଗି ଆହ୍ୱାନ ଦେଲା - ସେ ହେଲେ ଚନ୍ଦନ ହଜୁରୀ । ସେ କହିଲେ - 'ଭାରତବାସୀ ବନ୍ଧୁ ମୋର, ଆପଣ ଜାଣନ୍ତି ମରହଟ୍ଟା ବୀରର ରକ୍ତରେ ମହାରାଷ୍ଟ୍ର ଗଢ଼ି ଉଠିଛି । ସେ ଆପଣଙ୍କ ହାତରୁ ଚାଲି ଯାଉନାହିଁ, ଚାଲି ଯାଉଛି ଭାରତମାତାର ଆତ୍ମା ।' ଝାନ୍ସୀ ରାଣୀ ହାତରେ ଖଡ୍ଗଧରି ଉପରକୁ ଉଠାଇ କହିଥିଲେ, 'ଚନ୍ଦନ ହଜୁରୀ ଯେଉଁ ପବିତ୍ର ପ୍ରେରଣା ଦେଲେ, ତାହା ମୋର ଶିରୋଧାର୍ଯ୍ୟ । ଏଥର ଯାଅ କହିଦିଅ ଇଂରେଜକୁ ଝାନ୍ସୀ କାହାରି ପଦାନତ ହୋଇପାରେନା, ଆସୁ ଝଡ଼ ମୁଁ ସଂଗ୍ରାମ କରିବି ।'

ରାଣୀ ଲକ୍ଷ୍ମୀବାଈଙ୍କର ଚନ୍ଦନ ହଜୁରୀଙ୍କ ସହିତ ଅନ୍ୟମାନେ ଜୟ ଜୟକାର କଲେ ।

୧୮୫୮ ମସିହା ଜାନୁଆରୀ ୨୫ରେ ହିଉରୋଜ୍ ଝାନ୍ସୀ ଆକ୍ରମଣ କଲେ । କମାଣ ଶବଦରେ ନଗରୀ ଥରିଲା । ସାତ ଦିନ ଯୁଦ୍ଧରେ ଦୁର୍ଗର ବାମପଟ ପାଚେରୀ ଭାଙ୍ଗିଗଲା । ଚନ୍ଦନ ହଜୁରୀଙ୍କ ନିର୍ଦ୍ଦେଶରେ ରାତାରାତି ପାଚେରୀ ନିର୍ମାଣ ଚାଲିଲା । ଅଷ୍ଟମ ଦିନ ପାଚେରୀ ସଂପୂର୍ଣ୍ଣ ହୋଇଯିବା ଦେଖି ଇଂରେଜ କମ୍ପି ଉଠିଲା ।

ବିଶ୍ୱାସଘାତକ ନରାଧମ ଠାକୁର ଲାହାଜୀ ଚନ୍ଦନ ହଜୁରୀଙ୍କୁ ନ ଜଣାଇ ବୋହରା ଦରଜା ଖୋଲିଦେଲା । ସୈନ୍ୟମାନେ ଦୁର୍ଗ ଅଧିକାର କରିନେଲେ । ଆସନ୍ନ ବିପଦକୁ ଆଖିରେ ରଖି ରାଣୀ ଲକ୍ଷ୍ମୀବାଈ ଓ ତାଙ୍କ ପୋଷ୍ୟପୁତ୍ର ଦାମୋଦରକୁ ଦୁର୍ଗର ଗୁପ୍ତଦ୍ୱାର ଦେଇ ଘୋଡ଼ାରେ ବସାଇ ପଠାଇ ଦେଇ ନିଜେ ମଧ ଖସି ଚାଲିଯାଇ ଥିଲେ । ଏକଥା କେହି ଜାଣିପାରିଲେ ନାହିଁ ।

ଗୋଆଲିଅରରେ କିନ୍ତୁ ତାନ୍ତିଆ ଟୋପେ ଓ ରାଣୀଙ୍କ ସହ ଇଂରେଜର ସମ୍ମୁଖ ସମର ଚାଲିଲା । ତୃତୀୟ ଦିନ ଯୁଦ୍ଧରେ ରାଣୀ ଅସହାୟ ହୋଇପଡ଼ିଲେ । ତଥାପି ସେ ମୁକ୍ତି ସଂଗ୍ରାମରେ ମୁକ୍ତ ତରବାରୀରେ ଶେଷ ରକ୍ତବିନ୍ଦୁ ପର୍ଯ୍ୟନ୍ତ ଇଂରେଜ ରକ୍ତରେ ହୋଲି ଖେଳି ଇତିହାସରେ ଅମର ଶହୀଦ ହୋଇଗଲେ ।

ପୁରୀ ସହରରେ ସେତେବେଳେ ପ୍ରଚାର ହୋଇଗଲା ଯେ ରାଣୀ ଓ ତାଙ୍କ ତୀର୍ଥଗୁରୁ ଚନ୍ଦନ ହଜୁରୀ ଆଉ ନାହାନ୍ତି । ସେ ୧୮୬୫ ମସିହା କାର୍ତ୍ତିକ ମାସ ଶୁକ୍ଳ ନବମୀ ତିଥିରେ ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । ପୁରୀ ଛାଡ଼ିଯିବାବେଳେ ତାଙ୍କ ପତ୍ନୀ ରତ୍ନମାଳାଙ୍କୁ ସେ ତାଙ୍କ ପଡ଼ୋଶୀ ପାରନାନୀର ହେପାଜତରେ ରଖି ଯାଇଥିଲେ ।

ଚନ୍ଦନ ହଜୁରୀ ବା ଚାଖି ଖୁଣ୍ଟିଆ ମରିଯାଇଛନ୍ତି ଶୁଣି ପୂର୍ବରୁ ତାଙ୍କ ସ୍ତ୍ରୀ ହାତରୁ ଚୁଡ଼ି ଖୋଲି ଦେଇଥିଲେ । ବିଧବା ସବୁ ଶୁଦ୍ଧି ସାରି ଦେଇଥିଲେ । ସେ ପୁଣି ଶଂଖା ସିନ୍ଦୂର ନାଇଥିଲେ । ତେଣୁ କଥାରେ ଅଛି - 'ନଇରେ ବାଳିଆ ଚହଟିଲା, କଜଳ ସୁନ୍ଦର ନା'ଲୋ ରାଣ୍ଡ, ପୁଣି ଚାଖିଆ ଲେଉଟିଲା ।' ଚନ୍ଦନ ପୁରୀରେ ଯାତ୍ରା ସେବା ବୃତ୍ତିରେ ରହିଲେ ମଧ ଇଂରେଜମାନଙ୍କ ଆଖି ତାଙ୍କ ଉପରେ ରହିଥିଲା ।

ସେ ଅତି ଚମତ୍କାର ଭଜନ ଜଣାଣ ଲେଖିଥିଲେ । ସେଥିରୁ ଗୋଟିଏ ହେଲା - 'ଚକା ନୟନକୁ ପତିତ ଚାହିଁ ...'

୧୮୭୦ ମସିହାରେ ତାଙ୍କର ଦେହାନ୍ତ ହୋଇଥିଲା । ପୁରୀରେ ହଜୁରୀ ଲେନ୍‌ରେ ତାଙ୍କ ନିବାସ ଏକ ସ୍ମରଣୀୟ ଦେଶପ୍ରେମୀର ସ୍ମାରକୀସ୍ୱରୂପ ରହିଛି । ତାଙ୍କର ବୀରତ୍ୱ ପାଇଁ ପ୍ରତିଥର ଏକ ରଥର ଚକ ଦାନ କରାଯାଉଥିଲା ।

'ଆଶ୍ରମ', ଶ୍ରୀବିହାର କଲୋନୀ
କଟକ-୭୫୩୦୦୮



# ବୀର ପୁଙ୍ଗବ ବିପ୍ଳବୀ ବକ୍ସି ବନାମ ବ୍ରିଟିଶ ସାଲିସ୍

ମଧୁସୂଦନ ପଟ୍ଟନାୟକ

୧୮୦୩ ମସିହା । ଯେତେବେଳେ ଇଂରେଜମାନେ ଓଡ଼ିଶା ଦଖଲ କଲେ, ସେତେବେଳକୁ ଓଡ଼ିଶାର ନାବାଳକ ଗଜପତି ମୁକୁନ୍ଦ ଦେବ ଖୋର୍ଦ୍ଧାରେ ରହି ଶାସନ କରୁଥିଲେ । ଖୋର୍ଦ୍ଧା ଥିଲା ତାଙ୍କର ରାଜଧାନୀ । ତାଙ୍କର ବୟସ ଖୁବ୍ କମ୍ ଥିବାରୁ ରାଜକାର୍ଯ୍ୟ ପରିଚାଳନା କରିବାକୁ ତାଙ୍କୁ ତାଙ୍କର କୁଳପୁରୋହିତ ଜୟୀ ରାଜଗୁରୁ ସବୁ କଥାରେ ପରାମର୍ଶ ଦେଉଥିଲେ । ସେ ଥିଲେ ତାଙ୍କର ମନ୍ତ୍ରୀ ସଦୃଶ ।

ଗଜପତି ମୁକୁନ୍ଦ ଦେବଙ୍କ ପ୍ରଧାନ ସେନାପତି ଥିଲେ ବକ୍ସି ଜଗବନ୍ଧୁ । ତାଙ୍କର ପୂରାନାମ ଥିଲା ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ । ଚିଲିକା ନିକଟବର୍ତ୍ତୀ ରୋଡ଼ଙ୍ଗଗଡ଼ର ସେ ଥିଲେ ପ୍ରକୃତ ଅଧିକାରୀ । ସେନାଧ୍ୟକ୍ଷ ହୋଇଥିବାରୁ ତାଙ୍କୁ କେତେଗୁଡ଼ିଏ ପ୍ରଗଣା ଜାଗିରୀସ୍ୱରୂପ ମିଳିଥିଲା । କିନ୍ତୁ ଅନ୍ୟାୟ ଭାବେ ଇଂରେଜ ସରକାର ସେହି ପ୍ରଗଣାଗୁଡ଼ିକ ଛଡ଼ାଇ ନେଇଥିଲେ । ଚାଉଳ ଓ ଲୁଣ ଦର ବହୁତ ବଢ଼ିଯିବାରୁ ଅତ୍ୟାଚାରୀ ସର୍ବରାକାରମାନେ (ଖଜଣା ଆଦାୟକାରୀ) ନିରୀହ ଲୋକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରନ୍ତେ ସେହି ଅଶାନ୍ତି ଓ ଅସନ୍ତୋଷର ଦାବାଗ୍ନି ମଧ୍ୟରୁ ଆରମ୍ଭ ହେଲା ଗଣବିପ୍ଳବ - ପାଇକବିଦ୍ରୋହ, ଯାହାର କର୍ଣ୍ଣଧାର ଥିଲେ ବୀର ପୁଙ୍ଗବ ବକ୍ସି ଜଗବନ୍ଧୁ ।



ବକ୍ସି ଥିଲେ ରାଜକୁଳ ସମ୍ଭୂତ । ପିଲାଦିନୁ ସେ ଅଶ୍ୱଚାଳନା ଓ ବିଭିନ୍ନ ରଣକୌଶଳ ଶିକ୍ଷାଲାଭ କରିଥିଲେ । ବଳିଷ୍ଠ ବପୁ, ଉନ୍ନତ କପାଳ, ଗୌରବର୍ଣ୍ଣ ଶରୀର ଓ ଅବୟବର ମାଂସପେଶୀଗୁଡ଼ିକ ପ୍ରତିପକ୍ଷ ପ୍ରାଣରେ ଭୟ ସଂଚାର କରୁଥିଲା । ଯେଉଁଦିନ ଇଂରେଜ କର୍ତ୍ତୃପକ୍ଷ ହୀନଚକ୍ରାନ୍ତ କରି ବକ୍ସିଙ୍କର ଗଡ଼ରୋଡ଼ଙ୍ଗକୁ ଦେଶଦ୍ରୋହୀ ଚରଣ ପଟ୍ଟନାୟକଙ୍କ କୁମନ୍ତ୍ରଣାରେ ଜନୈକ ଧନୀ ବଙ୍ଗାଳୀ କୃଷ୍ଣଚନ୍ଦ୍ର ସିଂହଙ୍କୁ ବିକ୍ରୟ କରିଦେଲେ, ସେହିଦିନ ଶାନ୍ତ ଜଗବନ୍ଧୁ ଅଶାନ୍ତ ଜଗବନ୍ଧୁ ରୂପେ ଭୟଙ୍କର ରୂପ ଧାରଣ କଲେ । ସେ ଆହୁରି ଅଶାନ୍ତ ହୋଇପଡ଼ିଥିଲେ ଯେତେବେଳେ ଗଜପତିରାଜା ମୁକୁନ୍ଦ ଦେବ ଶତ୍ରୁ ହାତରେ କାରାବରଣ କଲେ । ବିଦେଶୀ ଶାସକଙ୍କୁ ଉପଯୁକ୍ତ ଶିକ୍ଷାଦେବା ଲାଗି ସୁଯୋଗକୁ ସେ ଅପେକ୍ଷା କରି ରହିଲେ ।

କଥିତ ଅଛି, ଏହି ଶକ୍ତିଶାଳୀ ବୀରପୁଙ୍ଗବ ବକ୍ସିଙ୍କର ଦୈହିକ ଶକ୍ତି ଏତେ ଅଧିକ ଥିଲା ଯେ ଘୁମୁସର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରିଥିବା ସମୟରେ ନିଜ ପୃଷ୍ଠଦେଶକୁ ଗୋଟିଏ ଦଶଫୁଟ ଲମ୍ବ ଓ ପାଞ୍ଚଫୁଟ ଓସାରର ଏକ ପ୍ରସ୍ତରଖଣ୍ଡରେ ସ୍ପର୍ଶ କରନ୍ତେ, ତାହା ସ୍ଥାନଚ୍ୟୁତ ହୋଇଯାଇଥିଲା । ଇଂରେଜ କର୍ତ୍ତୃପକ୍ଷ ତାଙ୍କ ନାମ ଶୁଣିବା ମାତ୍ରେ ଭୟଭୀତ ହୋଇଯାଉଥିଲେ ।

ଇଂରେଜମାନେ ୧୮୦୩ରେ ଓଡ଼ିଶାକୁ ଶାସନ କରି ଦୁଇଭାଗ କରିଦେଲେ । ଗୋଟିଏକୁ କୁହାଗଲା ମୋଗଲବନ୍ଦୀ । ଏହା କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳକୁ ନେଇ ଗଠିତ ହୋଇଥିଲା । ଇଂରେଜ ସାହେବମାନେ ବୁଝୁଥିଲେ । ଅନ୍ୟଟି ଥିଲା ଗଡ଼ଜାତ । ଏହାର ହାନିଲାଭ ଗଡ଼ଜାତ ରାଜାମାନେ ସେ ସବୁର ଶାସନ କଥା ବୁଝୁଥିଲେ । ସେମାନେ ଥିଲେ ଅତ୍ୟନ୍ତ ଅତ୍ୟାଚାରୀ ନିଷ୍ଠୁର ପ୍ରକୃତିର । ସେମାନଙ୍କ ଉପରେ ଥିଲେ ଗୋରା ପଲିଟିକାଲ୍ ଓ ଏଜେଣ୍ଟ ।

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଘୁମୁସର ଥିଲା ଗୋଟିଏ ରାଜ୍ୟ ଯେଉଁଠାରେ କରଦ ରାଜାମାନେ ଶାସନ କରୁଥିଲେ । ସେଠାରେ ଇଂରେଜମାନଙ୍କ ବିରୁଦ୍ଧରେ ଆରମ୍ଭ ହେଲା ବିଦ୍ରୋହ । ତତ୍‌ପୂର୍ବରୁ ଘୁମୁସରର ରାଜା କୃଷ୍ଣ ଭଞ୍ଜ ଫରାସୀ ଶାସକଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବାରୁ କୃଷ୍ଣଭଞ୍ଜଙ୍କୁ କୁହାଯାଏ ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ପ୍ରଥମ ଯୋଦ୍ଧା ।

୧୮୧୭ ମସିହାରେ ଘୁମୁସରରୁ ପ୍ରାୟ ୪୦୦ ବିଦ୍ରୋହୀ କନ୍ଧ ଆଦିବାସୀ ଖୋର୍ଦ୍ଧା ରାଜ୍ୟ ସଂଲଗ୍ନ ବାଣପୁର ଭିତରେ ପଶି ସରକାରୀ ଖଜଣାଖାନା ଲୁଟି କଲେ । ଥାନା, ସରକାରୀ ଅଫିସ, କଚେରୀ ଲୁଣ୍ଠନ କଲେ ଓ ଶତ ଶତ ଇଂରେଜ ସୈନ୍ୟଙ୍କୁ ନିହତ କଲେ । ମାଜିଷ୍ଟ୍ରେଟ ଏଡ଼ଉଆଡ଼୍ ଇମ୍ପେ ବିଦେଶୀ ସୈନିକଙ୍କୁ ନେଇ ଲେଫ୍‌ଟନାଣ୍ଟ ଟ୍ରାଭିସ୍‌ଙ୍କ ସହ ଖୋର୍ଦ୍ଧାଠାରେ ପହଞ୍ଚିଲେ । ପାଇକମାନଙ୍କ ସହ ମୁହାଁମୁହିଁ ଯୁଦ୍ଧ ହେଲା । କେବଳ ଗଙ୍ଗପଡ଼ା ପାଇଁ ନୁହେଁ ଖୋର୍ଦ୍ଧା ପାଇଁ ମଧ୍ୟ । ୧୮୧୭ ମସିହାର ଶେଷ ଭାଗରେ ବକ୍‌ସିଙ୍କ ନିର୍ଦ୍ଦେଶନାରେ ଖୋର୍ଦ୍ଧା, ପୁରୀ, ପିପିଲି ଓ ଲେମ୍ଭାଇ ଅଞ୍ଚଳରେ ବିଦ୍ରୋହାଗ୍ନି ପ୍ରଜ୍ଜ୍ୱଳିତ ହେଲା । ଓଡ଼ିଆ ପାଇକବାହିନୀ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଲେ । ବକ୍ସିଙ୍କ ବିଦ୍ରୋହାତ୍ମକ କର୍ମପନ୍ଥା ଓଡ଼ିଶାରେ ଇଂରେଜ ଶାସକଙ୍କୁ ଅଚଳ କରିଦେଲା । ତେଣୁ ଇଂରେଜ ସରକାର କଠୋର ଦମନନୀତି ପ୍ରୟୋଗ କଲେ । ଏହାପରେ ବକ୍ସିଙ୍କ ନେତୃତ୍ୱରେ ଆରମ୍ଭ ହେଲା ଗଣ ଆନ୍ଦୋଳନ । କିୟତକ୍ଷଣ ମଧ୍ୟରେ ବିଦ୍ରୋହ କୁଜଙ୍ଗ, ଖୋର୍ଦ୍ଧା, ଗୋପ, ତିରଣ, ହରିଶପୁର, ମରିଚପୁର ସର୍ବତ୍ର ବ୍ୟାପି ଗଲା । ଇଂରେଜମାନେ ବିଦ୍ରୋହୀ ସେନାପତିଙ୍କୁ ଧରିପାରି ନଥିଲେ ସିନା ବକ୍ସିଙ୍କ କେତେକ ସହଯୋଗୀଙ୍କୁ ଫାଶୀଖୁଣ୍ଟରେ ଝୁଲାଇବାକୁ ସକ୍ଷମ ହେଲେ । ଅନେକଙ୍କୁ ଦ୍ୱୀପାନ୍ତର କରାଗଲା । ଗଜପତି ମୁକୁନ୍ଦ ଦେବଙ୍କୁ ବାରବାଟୀ ଦୁର୍ଗରେ ଅଟକବନ୍ଦୀ କରି ରଖାଗଲା । ବକ୍ସିଙ୍କ ପରିବାରର ପ୍ରତ୍ୟେକ ବ୍ୟକ୍ତିଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖାଗଲା ସିନା କିନ୍ତୁ ବକ୍ସି ଘୁମୁସର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରି ହୃତଗୌରବକୁ ଫେରି ପାଇବାକୁ ଯୋଜନା ପ୍ରସ୍ତୁତ କରୁଥିଲେ । ସେତେବେଳକୁ ସେ ରାଜ୍ୟବାସୀଙ୍କ ମଧ୍ୟରେ ଏତେ ପ୍ରିୟ ହୋଇ ପାରିଥିଲେ ଯେ ଖୋର୍ଦ୍ଧାର ପ୍ରତ୍ୟେକ ପରିବାର ନିଜ ନିଜ ଘରେ ପଖାଳଭାତ ଶାଗଭଜା ସାଇତି ରଖିଥିଲେ । ଯଦି ଅସମୟରେ ବକ୍ସି କାହାଘରେ ପହଞ୍ଚି ଯାଆନ୍ତି, ତେବେ ସେହି ସାଇତା ଖାଦ୍ୟ ବିପ୍ଳବୀଙ୍କ ସେବାରେ ଲାଗୁଥିଲା ।

ଗଜପତି ମୁକୁନ୍ଦ ଦେବ ବାରବାଟୀ ଦୁର୍ଗ ଓ ମେଦିନୀପୁର ଦୁର୍ଗ ଅଟକବନ୍ଦୀରୁ ମୁକୁଳିବା ପରେ ପୁରୀର ବାଲିସାହିସ୍ଥିତ ରାଜନଅରରେ ଅଟକବନ୍ଦୀ ରୂପେ ରହିଲେ । ସେନାଧ୍ୟକ୍ଷ ବକ୍ସି ତେଣେ ଖୋର୍ଦ୍ଧା, ବାଣପୁର ଓ ଲେମ୍ଭାଇ ସ୍ଥାନରେ ପାଇକବାହିନୀ ନେଇ ରକ୍ତର ତାଣ୍ଡବଲୀଳା ସୃଷ୍ଟି କଲେ । ଖୋର୍ଦ୍ଧାର ସମସ୍ତ ପ୍ରଜା ଗଜପତିଙ୍କର ମୁକ୍ତି ଦାବିକରି ପ୍ରାଣବଳୀ ଦେବାକୁ ଭୀଷ୍ମ ପ୍ରତିଜ୍ଞା କଲେ । ଅସନ୍ତୁଷ୍ଟ ବକ୍ସି ବାଲିସାହି ନଅରରେ ଗୋପନରେ ମୁକୁନ୍ଦ ଦେବଙ୍କୁ ସାକ୍ଷାତ କରି ବିପ୍ଳବର ଗତି ଓ ପ୍ରଜାଙ୍କ ଅନୁରକ୍ତି ଜଣାଇଲେ । ବକ୍ସି ମୁକୁନ୍ଦ ଦେବଙ୍କୁ କହିଲେ - 'ଓଡ଼ିଶାର ଲୋକେ କେବଳ ଆପଣଙ୍କୁ ରାଜା ବୋଲି ସ୍ୱୀକାର କରିବା ଚାହାନ୍ତି ।' ସେନାଧ୍ୟକ୍ଷ ଜଗବନ୍ଧୁଙ୍କ ମୁହଁରୁ ନିଜର ପ୍ରିୟ ପ୍ରଜାଙ୍କ ଏକାନ୍ତ ଇଚ୍ଛା ସଂପର୍କରେ ଅବଗତ ହୋଇ ମୁକୁନ୍ଦ ଦେବ ପୁନର୍ବାର ଶାଣିତ ତରବାରୀ ସହିତ ଇଂରେଜ ପଶୁଶକ୍ତିର ମୁକାବିଲା କରିବାକୁ ଆଗେଇ ଆସିଲେ ।

ଇତ୍ୟବସରରେ କ୍ୟାପ୍‌ଟେନ ଲିଫାଙ୍କେ ଏକ ଘୃଣ୍ୟ ଗୁଜବର ଆଶ୍ରୟ ନେଇ ଗଜପତିଙ୍କୁ ଶୁଣାଇ ଦେଲେ - 'ବକ୍ସି ଜଗବନ୍ଧୁ ନିଜେ ଖୋର୍ଦ୍ଧା ରାଜ୍ୟରେ ରାଜା ହେବାକୁ ଇଚ୍ଛା ପ୍ରକଟ କରନ୍ତି ଓ ନିଜର ସ୍ୱାର୍ଥ ହାସଲ ପାଇଁ ପାଇକମାନଙ୍କୁ ମେଳି କରାଇ ବିଦ୍ରୋହ କରୁଛନ୍ତି ।'

ଏହି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଗଜପତି କିୟତକ୍ଷଣ ପାଇଁ ଭୁଲ ବୁଝିଲେ, କିନ୍ତୁ ପରେ ନିଜର ଭୁଲ ବୁଝି ଅନୁତପ୍ତ ପୂର୍ବକ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱକୁ ପୂର୍ଣ୍ଣମାତ୍ରାରେ ସମର୍ଥନ କଲେ । କ୍ୟାପ୍‌ଟେନ ଲିଫାଙ୍କେ ପୁରୀ ଆକ୍ରମଣ କରିବା ପାଇଁ ଆଗଭର ହେଲେ । ପୁରୀଠାରେ ବକ୍ସି, ଗଜପତିଙ୍କ ସୈନ୍ୟବାହିନୀ ଓ ଶ୍ରୀଜଗନ୍ନାଥଙ୍କ ସେବକଗଣ ଇଂରେଜ ସୈନ୍ୟବାହିନୀର ପ୍ରତିରୋଧ କରି ବିଫଳ ହେଲେ । ମୁକୁନ୍ଦ ଦେବଙ୍କୁ ଶତ୍ରୁ ସୈନ୍ୟହାତରେ ବନ୍ଦୀ ହେବାକୁ ପଡ଼ିଲା । ବକ୍ସି ଖସିଯାଇ ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କଲେ ।

ବାରବାଟୀ ଦୁର୍ଗର ଗୋଟିଏ କ୍ଷୁଦ୍ର କୁଟୀର ମଧ୍ୟରେ ନିଜର ପୁତ୍ର ସହ ଓଡ଼ିଶାର ପରାଜିତ ଗଜପତି ପାଇକ ବିଦ୍ରୋହର ଅନ୍ୟତମ ସାରଥୀ ଓ 'ଭୋଇ' ବଂଶର ଶେଷସମ୍ରାଟ ଦ୍ୱିତୀୟ ମୁକୁନ୍ଦ ଦେବ ମହାଦୁଃଖରେ କାଳାତିପାତ କରିବା ସଂଗେସଂଗେ ଜଗନ୍ନାଥଙ୍କ ଜୟଗାନ ପୂର୍ବକ ଖ୍ରୀ:୧୮୧୭ରେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ବକ୍ସି କିନ୍ତୁ ଇଂରେଜ ସରକାର ଆଗରେ ମଥା ନୁଆଁଇ ନଥିଲେ । ବାଧ୍ୟ ହୋଇ ଇଂରେଜ କର୍ତ୍ତୃପକ୍ଷ ୧୮୨୦ ମସିହାରେ ତାଙ୍କ ପରିବାରର ସମସ୍ତଙ୍କୁ ମୁକ୍ତ କରି ଦେଲେ ।

୧୮୨୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହିପରି ଛକାପଞ୍ଝା ଚାଲିଲା । ବିପ୍ଳବୀ ଜଗବନ୍ଧୁ ଓ ଇଂରେଜ ପ୍ରଶାସକ ମଧ୍ୟରେ ଏକ ଆପୋଷ ସମାଧାନ ହେଲା । ସେତେବେଳେ ଜଗବନ୍ଧୁ ନୟାଗଡ଼ ରାଜ୍ୟର ଜଙ୍ଗଲ ମଧ୍ୟରେ । ଇଂରେଜଶାସକ ନୟାଗଡ଼ ରାଜାଙ୍କୁ ଧମକ ଦେଇ ଖ୍ରୀ: ୧୮୨୫ରେ ଖ୍ୱାଜ ମହମ୍ମଦ ନାମକ ଜଣେ ସୁଦକ୍ଷ କର୍ମଚାରୀଙ୍କ ସହାୟତାରେ ଏକ ଆପୋଷ ରାଜିନାମାରେ ସ୍ୱାକ୍ଷର କରାଇବାକୁ ସକ୍ଷମ ହେଲେ । ତଦନୁସାରେ ଇଂରେଜ ସରକାର ନିକଟରେ ଆତ୍ମସମର୍ପଣ ପୂର୍ବକ ମାସିକ ଦେଢ଼ଶହ ଟଙ୍କା ଭତ୍ତା ପାଉଥିଲେ । ୧୮୨୯ ମସିହା ଜାନୁଆରୀ ୨୪ ତାରିଖ ଶନିବାର ଦିନ ସେହି ମହାନ୍ ବିପ୍ଳବୀଙ୍କ ମହାପ୍ରୟାଣ ହୋଇଥିଲା । ଭାରତ ଜନନୀ ତା'ର ଜଣେ ଅଦ୍ୱିତୀୟ ଯୋଦ୍ଧାଙ୍କୁ ହରାଇ ବସିଲା । ବକ୍ସିଙ୍କର ବାଣୀ ଥିଲା ଅମର । ସେ ଶେଷ ପର୍ଯ୍ୟନ୍ତ ବୀରଦର୍ପରେ କହୁଥିଲେ - ଓଡ଼ିଶା ଆମର, ଚିରଦିନ ଆମର ହୋଇ ରହିବ । ଧନ୍ୟ ଧନ୍ୟ ସେହି ବୀର । ବୀରପ୍ରସବିନୀ ଉତ୍କଳମାତାର ସୁଯୋଗ୍ୟ ସନ୍ତାନ ।

କୈବଲ୍ୟ
ଦଣ୍ଡତୋଟା, ପୁରୀ



# ଆଦିବାସୀଙ୍କ ଭଗବାନ ବିର୍ସା ମୁଣ୍ଡା

ସୁଧାକର ନନ୍ଦ

**ଚା**ଲକଦା ଛୋଟ ଗାଁଟିଏ । ସେ ଗାଁର ସୁଗୁନା ମୁଣ୍ଡା ଓ କିରିମୀ । ଦୁହିଁଙ୍କ ପୁଅ ନାଁ ବିର୍ସା । ପିଲାଟି ଦିନରୁ ସେ ଖୁବ୍ ଭଲ ପଢ଼ିଲା । ତେଣୁ ଚାଇଁବସାଠାରେ ଖ୍ରୀଷ୍ଟିୟାନ ମିଶନ୍ ସ୍କୁଲରେ ସେ ପଢ଼ିବାକୁ ଗଲା । ସେତେବେଳେ ଆଦିବାସୀ ପିଲାମାନେ ପ୍ରାୟ ପାଠ ପଢୁ ନଥିଲେ । ବିର୍ସା କିନ୍ତୁ ଅତି ଶୀଘ୍ର ଓଡ଼ିଆ ସହିତ ଇଂରାଜୀ ଲେଖିବା, ପଢ଼ିବା ଓ କହିବା ଶିଖିଗଲା । ଚାଇଁବସା ମିଶନ୍ ଦାୟିତ୍ୱରେ ଥିବା ଇଂରେଜ ପାଦ୍ରୀ ଫାଦର୍ ନେଟ୍ରେଟେ ତାକୁ ନିଜର ପୁଅ ପରି ଭଲ ପାଇଲେ ।

ସେତେବେଳେ ଆଦିବାସୀମାନଙ୍କ ଉପରେ ବିଦେଶୀ ଇଂରେଜମାନଙ୍କ ଅପେକ୍ଷା ଦେଶୀ ବ୍ୟବସାୟୀମାନେ ବେଶୀ ଅତ୍ୟାଚାର କରୁଥିଲେ । ମିଶନର କଥା ସମସ୍ତେ ମାନିବାକୁ ବାଧ ଥିଲେ । ଯଦି କେହି ନମାନିଲା ତା' ସହିତ ତା' ପରିବାରକୁ ମଧ କଠିନ ଦଣ୍ଡ ଦିଆଯାଉଥିଲା । ସେତେବେଳେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ । ମିଶନରେ ପଢୁଥିବା ଜଣେ ପିଲାର ବାପା ଇଂରେଜମାନଙ୍କ ବିରୋଧରେ ହେଉଥିବା ଆନ୍ଦୋଳନରେ ଯୋଗଦେଲା । ତାକୁ ବନ୍ଦୀ କରାଗଲା । ପଢୁଥିବା ତା' ପୁଅଟିକୁ କଠିନ ଦଣ୍ଡ ଦିଆଗଲା । ହଳର ଗୋଟିଏ ପାଖରେ ଗୋଟିଏ ବଳଦ ଓ ଅନ୍ୟପାଖରେ ସେ ପିଲାଟି କାନ୍ଧରେ ଜୁଆଳୀ ବନ୍ଧାଗଲା । ବଳଦ ସହିତ ମିଶି ସେ ହଳ ଟାଣୁଥାଏ ।

ଚାଲି ନପାରିଲେ ବଳଦକୁ ପିଟିଲା ପରି ହଳ କରୁଥିବା ଲୋକଟି ପିଲାକୁ ପିଟୁଥାଏ । ତା'ର ସାରା ଦେହରୁ ଧାରଧାର ରକ୍ତ ବହୁଥାଏ । ମିଶନ୍‌ର ସବୁ ଛାତ୍ର ଏହାକୁ ଦେଖିମଧ ସହି ଯାଉଥାଆନ୍ତି । ବଳିଷ୍ଠ ବିର୍ସା କିନ୍ତୁ ଏହା ସହିପାରିଲା ନାହିଁ । ନିଜେ ଯାଇ ହଳ ଆଗରେ ଠିଆ ହେଲା । ଜୁଆଳୀରୁ ପିଲାଟିକୁ ଫିଟାଇଦେଲା । ପାଞ୍ଚଣ ଛଡ଼ାଇ ନେଇ, ହଳ କରୁଥିବା ଲୋକଟିକୁ ଖୁବ୍ ଜୋର୍‌ରେ ପିଟିଲା । ପିଲାଟି ପରି ତା' ଦେହରୁ ବି ରକ୍ତ ବୋହିଲା । ଏହାଶୁଣି ତାକୁ ଅତି ଭଲ ପାଉଥିବା ଫାଦର୍ ନେଟ୍ରେଟେ ତାକୁ ମାରିବା ପାଇଁ ହାତ ଉଠାଇଲେ । ବିର୍ସା ତାଙ୍କ ହାତରୁ ଏମିତି ଧରିନେଲା ଯେ ବୁଢ଼ା ନେଟ୍ରେଟେ ହାତ ଛଡ଼ାଇ ପାରିଲେ ନାହିଁ ।

ନିଜ ଇଚ୍ଛାରେ ପାଠରେ ଡୋରି ବାନ୍ଧି, ବିର୍ସା ତାଙ୍କ ଗାଁକୁ ଫେରି ଆସିଲା । ସେତେବେଳେ ସୁଧଖୋର ମହାଜନମାନେ ସେମାନଙ୍କ ଟଙ୍କା ଆଦାୟ ପାଇଁ ଆଦିବାସୀମାନଙ୍କ ଉପରେ ବହୁତ ଅତ୍ୟାଚାର କରୁଥିଲେ । ସେମାନଙ୍କୁ ଦିନରାତି କାମ କରାଉଥିଲେ । କାଳେ କୁଆଡ଼େ ଖସି ପଳାଇଯିବେ ବୋଲି ତାଙ୍କ ବେକ ଓ ଅଣ୍ଟାକୁ ଲୁହାକଡ଼ିରେ ବାନ୍ଧୁଥିଲେ । ଗୋରୁଗାଈଙ୍କ ପରି ଖୁଣ୍ଟରେ ସେମାନେ ବନ୍ଧା ଯାଉଥିଲେ ।

ତା'ଛଡ଼ା ବସନ୍ତ ବା ହଇଜା ହେଲେ ସେତେବେଳେ କୌଣସି ଚିକିତ୍ସାର ବ୍ୟବସ୍ଥା ନଥିଲା । ଲୋକମାନେ ପୋକମାଛି ପରି ମରୁଥିଲେ । ବଣର ଆଦିବାସୀମାନେ ଏଇ ରୋଗକୁ ଠାକୁରାଣୀ ଭାବି ପୂଜା କରୁଥିଲେ । ଗୁଣିଆ ଡାକି କୁକୁଡ଼ା ବଳି ଦେଉଥିଲେ । ଅନ୍ଧବିଶ୍ୱାସ ଦୂର କରିବା ସମ୍ଭବ ନଥିଲା ।

ବିର୍ସା ପଣ କଲେ ଲୋକଙ୍କ ମନରୁ ଏ ଅନ୍ଧବିଶ୍ୱାସ ନିଶ୍ଚୟ ଦୂର କରିବି ଓ ଅତ୍ୟାଚାରୀ ସୁଧଖୋର ମହାଜନଙ୍କ କବଳରୁ ବଣରେ ରହୁଥିବା ନିରୀହ ଓ ସରଳ ଆଦିବାସୀମାନଙ୍କୁ ମୁକ୍ତ କରିବି । ଗାଁ ଗାଁ ବୁଲି ଚେରମୂଳି ଔଷଧ ଦେଇ ଲୋକଙ୍କ ରୋଗ ଭଲ କଲି । ନିରୀହ ଆଦିବାସୀମାନେ ବିର୍ସାଙ୍କୁ ତାଙ୍କ ଭଗବାନ ବୋଲି ମାନିଲେ । ବିର୍ସାଙ୍କ ନାମ ହେଲା 'ଧରିତ୍ ଆବ୍‌ବା' ବା ପୃଥିବୀର ପିତା । ତାଙ୍କୁ ନେତା ଓ ଭଗବାନ ଭାବି ମୁଣ୍ଡା ଓ ଅନ୍ୟାନ୍ୟ ଆଦିବାସୀମାନେ ବଣ ପାହାଡ଼ରେ ତାଙ୍କ ପଛରେ ଏକଜୁଟ ହେଲେ ।

ଇଂରେଜ ସାହେବ ମେୟରସ ବହୁ ବନ୍ଧୁକ ଧରିଥିବା ସୈନ୍ୟମାନଙ୍କୁ ନେଇ ବିର୍ସାଙ୍କୁ ଆକ୍ରମଣ କଲେ । କିନ୍ତୁ ବିର୍ସା ତାଙ୍କ ସହିତ ଯୁଦ୍ଧ କରି ବଣ ନିରୀହ ଲୋକମାନଙ୍କୁ ବନ୍ଧୁକ ଗୁଳିରେ ମରିବାକୁ ଦେଲେ ନାହିଁ । ମେୟରସ ତାଙ୍କୁ ସହଜରେ ବନ୍ଦୀ କଲେ । ସେତେବେଳେ ସେ ଖୁବ୍ ସାହସର ସହିତ ଶୁଦ୍ଧ ଇଂରାଜୀରେ ତାଙ୍କୁ କହିଲେ : ଶୁଣ ମେୟରସ ମୁଁ ଚାହିଁଥିଲେ ଯୁଦ୍ଧ ହୋଇଥାନ୍ତା । ତୁମେ ପରାସ୍ତ ହୋଇଥାନ୍ତ । ବହୁ ଇଂରେଜ ସୈନ୍ୟଙ୍କ ସହିତ ମୋ' ପ୍ରିୟ ନିରୀହ ଆଦିବାସୀମାନେ ବି ମରିଥାନ୍ତେ । ତାହା ମୁଁ ଚାହୁଁ ନାହିଁ । କାରଣ ମୁଁ ନିଜ ଇଚ୍ଛାରେ ଜେଲ୍ ଯିବାକୁ ଠିକ୍ କରିଛି । ସେଥିପାଇଁ ମୁଁ ଜାଣି ଜାଣି ବନ୍ଦୀ ହୋଇଛି ।

ଏହାଶୁଣି ମେୟରସ୍ ହସିଲେ । ପୁଣି ବିର୍ସା ଶୁଦ୍ଧ ଇଂରାଜୀରେ କହିଲେ : ମୁଁ ଜାଣେ ତୁମେ ମୋ କଥାକୁ ବିଶ୍ୱାସ କରିପାରିବ ନାହିଁ । ତେବେ ଶୁଣ ମୁଁ ମାତ୍ର ଠିକ୍ ଗୋଟିଏ ବର୍ଷ ଇଚ୍ଛା କରି ଜେଲରେ ରହିବି । ଆଜି ୧୮୯୫ ମସିହା ଅଗଷ୍ଟ ୧୬ ତାରିଖ । ମୁଁ ୧୮୯୬ ଅଗଷ୍ଟ ୧୬ ତାରିଖରେ ଜେଲ୍‌ରୁ ମୁକ୍ତ ହେବି । ମନେରଖ ତୁମେ ହିଁ ମୁଣ୍ଡ ତଳକୁ କରି ମୋତେ ମୁକ୍ତ କରିବ ।

ଏ କଥାକୁ ବିର୍ସାଙ୍କ ବାହାଦୂରୀ ବୋଲି ମେୟରସ ଭାବିଲେ ଓ ଖୁବ୍ ଜୋର୍‌ରେ ହସିଲେ । ତା' ପରବର୍ଷ ଅଗଷ୍ଟ ୧୬ ତାରିଖରେ ମହାରାଣୀ ଭିକ୍ଟୋରିଆଙ୍କ ଇଂଲଣ୍ଡ ସିଂହାସନରେ ବସିବାର ସୁବର୍ଣ୍ଣ ଜୟନ୍ତୀ ପାଳନ କରାଗଲା । ମହାରାଣୀଙ୍କ ଆଦେଶରେ ଜେଲ୍‌ରେ ଥିବା ସବୁ ଭାରତୀୟଙ୍କୁ ମୁକ୍ତ କରାଗଲା ।

ବିର୍ସାଙ୍କ କଥା ଅକ୍ଷରେ ଅକ୍ଷରେ ସତ ହେଲା । ସେହି ମେୟର୍‌ସ ସେଦିନ କହିଥିବା ନିର୍ଦ୍ଦିଷ୍ଟ ଦିନରେ ତାଙ୍କୁ ବାଧ ହୋଇ ମୁକ୍ତ କଲେ । ଫଳରେ ଆଦିବାସୀମାନେ ତାଙ୍କୁ ସତରେ ଭଗବାନ ବୋଲି ମାନିଲେ । ୧୯୯୦ ମସିହା ମାର୍ଚ୍ଚ ୩ ତାରିଖରେ ପୁଣି ସେ ବନ୍ଦୀ ହେଲେ । ଜେଲ୍‌ଖାନାରେ ତାଙ୍କୁ ରୋଗ ହେଲା । ସେହି ଜେଲ୍ ଭିତରେ ସେ ମରିଗଲେ । ଜେଲ୍ ଯିବା ପୂର୍ବରୁ ସେ ହଜାର ହଜାର ଆଦିବାସୀଙ୍କ ଆଗରେ ଇଂରେଜ କମିଶନର ଷ୍ଟିଟ୍‌ଫିଲ୍ଡଙ୍କୁ ଛାଡ଼ି କହିଥିଲେ : ଶୁଣ ସାହେବ ଆଜିଠାରୁ ଠିକ୍ ୪୭ ବର୍ଷ ପରେ ମୋ' ଭାରତ ସ୍ୱାଧୀନ ହେବ । ପୁଣି ବିର୍ସାଙ୍କ କଥା ସତ ହେଲା । ଭାରତ ଠିକ୍ ୪୭ ବର୍ଷ ପରେ ହିଁ ସ୍ୱାଧୀନ ହେଲା ।

ସରସ୍ୱତୀ ନିବାସ
ନରିପୁର, ଭଦ୍ରକ

# ଭାରତର ସ୍ୱାଧୀନତା ସଂଗ୍ରାମରେ କନିକାର ଅବଦାନ

ଦାମୋଦର ଧଳ

**ଯେ**ଉଁ ମାଟି ମା' କୋଳରେ ଆମର ଜନ୍ମ, ଯାହାର ପାଣି ପବନରେ ଆମର ଶରୀର ପୁଷ୍ଟ, ଯାହାର ବକ୍ଷରେ ପୁରାଣ ଓ ଇତିହାସ ପ୍ରସିଦ୍ଧ ପୁଣ୍ୟତୋୟା ଗଙ୍ଗା, ଯମୁନା, କାବେରୀ, ଗୋଦାବରୀ ପ୍ରବାହିତ, ନିଜ ବକ୍ଷରେ ହିନ୍ଦୁ, ମୁସଲମାନ, ଶିଖ, ଖ୍ରୀଷ୍ଟିଆନ, ବୌଦ୍ଧ, ଜୈନମାନଙ୍କୁ ବାତ୍ସଲ୍ୟ ପ୍ରେମରେ ଭିଡ଼ି ଧରେ, ଯାହାର ଗିରି-କନ୍ଦର, ବନ-ନିର୍ଝରେ ସର୍ବଦା ଉଷା ମୁଖର, ଯେ ଲାଳିତ୍ୟପୂର୍ଣ୍ଣ ବିଭିନ୍ନ ଭାଷାର ସଂଗୀତ ଚାରଣ କରେ, ଯେ ଜାତି, ବର୍ଣ୍ଣ, ଧର୍ମ, ସଂସ୍କୃତି, ଭାଷା, ପ୍ରାକୃତିକ ବୈଚିତ୍ର୍ୟର ବିଭିନ୍ନତା ଭିତରେ ଏକତ୍ୱ ପ୍ରକାଶ କରେ, ଯାହାର ବକ୍ଷରେ ତଥା ଗର୍ଭରେ ଅକଳନ ସମ୍ପତ୍ତି ହୋଇଛି ଠୁଳ, ସେହି ସ୍ୱର୍ଣ୍ଣମୟୀ ଭାରତ ମାଆ, ସାମ୍ରାଜ୍ୟବାଦୀ ଇଂରେଜ ସରକାରଦ୍ୱାରା ଦୀର୍ଘ ଦୁଇଶତ ବର୍ଷ ପରାଧୀନତାର ଶୃଙ୍ଖଳରେ ଆବଦ୍ଧ ରହିଥିଲା ।

ବେପାରୀ ଇଂରେଜ ଜାତି କୂଟ ଚକ୍ରାନ୍ତରେ ଭାରତମାଆର ଦେଶୀୟ ରାଜ୍ୟଗୁଡ଼ିକର ଦୁର୍ବଳତାର ସୁଯୋଗ ନେଇ ରାଜ୍ୟ ପରେ ରାଜ୍ୟ ଜୟ କରି ଚାଲିଲା । ଭାରତ ମାଆର ନିରୀହା କନ୍ୟା ଉତ୍କଳମାତାର ସ୍ୱାଧୀନତାର ସୂର୍ଯ୍ୟ ସର୍ବଶେଷରେ ୧୮୦୩ ମସିହାରେ ହେଲା ରାହୁଗ୍ରସ୍ତ ।

ଗଣତନ୍ତ୍ରର ସ୍ରଷ୍ଟା ବୋଲାଉଥିବା ଦୁର୍ଦ୍ଧର୍ଷ ଇଂରେଜ ଜାତି ଉତ୍କଳର ପୂର୍ବ ବୀରତ୍ୱର କାହାଣୀରେ ଚିନ୍ତିତ ହୋଇ ପଡ଼ିଲା- ଭାରତର ଶେଷ ସ୍ୱାଧୀନ ରାଜ୍ୟ ଓଡ଼ିଶା କ'ଣ ଅପରାଜୟ ହୋଇ ରହିଯିବ ! ଛଳନା ପୂର୍ଣ୍ଣ ମିତ୍ରତାରେ ପ୍ରଲୋଭନର ସୁଯୋଗ ନେଉ କିମ୍ବା ବୈରତାପୂର୍ଣ୍ଣ କ୍ରୂରତାର ଆକ୍ରମଣରେ ହେଉ, ଉତ୍କଳ ମାଟି ପୂର୍ବରୁ ତଥା ପଶ୍ଚିମରୁ ଉତ୍କଳ ମାଆକୁ କବଳିତ କରିବାର ସୁଯୋଗ ଦେଇଛି ।

ସେତେବେଳେ ଗମନାଗମନର ପ୍ରାଧାନ୍ୟ ଥିବା ଜଳପଥ ସୁଯୋଗରେ ବଙ୍ଗଳାରୁ ଆସି ଧାମରା ମୁହାଣ ଦେଇ ଇଂରେଜ ସୈନ୍ୟମାନେ ପ୍ରବେଶ କରିଛନ୍ତି ସର୍ବପ୍ରଥମେ କନିକା ମାଟିକୁ ୧୮୦୩ରେ । ସେତେବେଳେ କନିକାର ପ୍ରବେଶ ପଥରେ ପ୍ରବଳ ପରାକ୍ରମୀ ଇଂରେଜ ସୈନିକଙ୍କୁ ପ୍ରତିରୋଧ କରିଥିଲେ କନିକା ଲଢୁଆ ମାଟିରେ ବୀରଗଣ । ଖଣ୍ଡା ତଲୱାରର ପ୍ରତିରୋଧ ଇଂରେଜ ସୈନ୍ୟଙ୍କ ଗୁଳାବାରୁଦ ନିକଟରେ ସ୍ତିମିତ ହୋଇଯାଇଥିଲା । ଫଳରେ କନିକା ରାଜା ବଳଭଦ୍ର ଭଂଜ ଇଂରେଜ ସରକାରଙ୍କ ଦାସତ୍ୱ ସ୍ୱୀକାର ପୂର୍ବକ ଚୁକ୍ତି ସନନ୍ଦରେ ସ୍ୱାକ୍ଷର କରି ଜମିଦାରୀ ଗ୍ରହଣ କରିଛନ୍ତି । ସେହିଦିନଠାରୁ ନଦୀନାଳ ଘେରା ବଣ ଜଙ୍ଗଲର ପ୍ରାକୃତିକ ସମ୍ପଦ ପରିପୂର୍ଣ୍ଣ କନିକା ହେଲା ଦୁଃଖିନୀ କନିକା । କନିକାର ରାଜବଂଶଧରଗଣ ଜମିଦାର ସାଜି, କର ଟିକସ ଆଦାୟ କରି ସରକାରର କୋଷାଗାରକୁ ପରିପୂର୍ଣ୍ଣ କରି ଚାଲିଲେ । (ତଥ୍ୟ- କନିକା ପ୍ରଜା ଆନ୍ଦୋଳନ : ଶହୀଦ ବାସୁ-ବିସୁନି-ପ୍ରଫୁଲ୍ଲ ଦାସ)

ସେହି ୧୮୦୩ ଖ୍ରୀ:ରେ ଉତ୍କଳ ମାଟିର ପଶ୍ଚିମରୁ ସହଜରେ ପ୍ରବେଶ କରବାକୁ ଛଳନା ପୂର୍ଣ୍ଣ ମିତ୍ରତାର ଆଶ୍ରୟ ନେଇଛନ୍ତି ଇଂରେଜ ସେନାଧକ୍ଷ ହାରକୋଟ୍ । ଦୂରଦୃଷ୍ଟିସମ୍ପନ୍ନ ସୁଦକ୍ଷ ମନ୍ତ୍ରୀ ଜୟୀ ରାଜଗୁରୁଙ୍କ ସୁପରାମର୍ଶ ସତ୍ୱେ ଖୋର୍ଦ୍ଧାର ରାଜା ମୁକୁନ୍ଦ ଦେବ ଲକ୍ଷେ ଟଙ୍କାର ପ୍ରଲୋଭନକୁ ଏଡ଼ି ନପାରି ସେନାପତି ହାର୍କୋଟ ସାହେବଙ୍କୁ ଓଡ଼ିଶାରେ ପ୍ରବେଶ କରିବାକୁ ସୁଯୋଗ ଦେଇଛନ୍ତି । ବଗ-କଙ୍କଡ଼ା ଉପାଖ୍ୟାନର ଚରିତ୍ରକୁ ନେଇ ଛଳନାପୂର୍ଣ୍ଣ ମିତ୍ରତା ପରିଣତ ହୋଇଛି ବୈରତାପୂର୍ଣ୍ଣ ଶତ୍ରୁତାରେ । ଖୋର୍ଦ୍ଧାର ପ୍ରବଳ ପରାକ୍ରମୀ ପାଇକମାନଙ୍କର ନେତୃତ୍ୱ ନେଇ ଝାମ୍ପି ପଡ଼ିଛନ୍ତି ଇଂରେଜ ସୈନ୍ୟଙ୍କ ଉପରକୁ, ଅମିତାଭ ବିକ୍ରମୀ ମନ୍ତ୍ରୀ ଜୟୀ ରାଜଗୁରୁ । ଧ୍ୱସ୍ତବିଧ୍ୱସ୍ତ ହୋଇଛି ବରୁଣେଇ ପାହାଡ଼ର ଦୁର୍ଗ । କିନ୍ତୁ ବନ୍ଦୀ ହୋଇଛନ୍ତି ଅବଶ୍ୟ ଜୟୀ ରାଜଗୁରୁ । ଜନତାଙ୍କ ଭୟରେ ସେନାପତି ହାରକୋଟ ସୁଦୂର ମେଦିନାପୁର ବାଘତୋଟାର ଏକ ବରଗଛର ଦୁଇ ବଳିଷ୍ଠ ଡାଳକୁ ଭିଡ଼ିଆଣି ରାଜଗୁରୁଙ୍କ ଦୁଇ ଗୋଡ଼କୁ ବାନ୍ଧି ଛାଡ଼ି ଦେବା ଫଳରେ ଦୁଇ ଫାଳ ହୋଇ ଚିରି ହୋଇଯାଇଚନ୍ତି ବିକ୍ରମ ପୁରୁଷ । ଆଗାମୀ ଦିନର ସ୍ୱାଧୀନତା ପାଇଁ ରକ୍ତ କ୍ଷୟୀ ସଂଗ୍ରାମ ଲାଗି ଡାକରା ଦେଇ ତାଙ୍କର ପ୍ରଥମ ରକ୍ତ ଧାର ଧାର ହୋଇ ଭୂମିସିକ୍ତ କରିଛି । ଆଜି ବି ସେ ଲୋମହର୍ଷଣକାରୀ କାହାଣୀ ଓଡ଼ିଆ ପ୍ରାଣକୁ ବେଦନାସିକ୍ତ କରେ ।

ଜୟୀ ରାଜଗୁରୁଙ୍କଠାରୁ ଆରମ୍ଭ କରି ସ୍ୱାଧୀନତା ହାସଲ ପର୍ଯ୍ୟନ୍ତ ଇଂରେଜର ପ୍ରତ୍ୟକ୍ଷ ଦୌରାତ୍ମ୍ୟ ହେଉ ବା ଇଂରେଜ ଆଶ୍ରିତ ରାଜା ଜମିଦାରଙ୍କ ନିଷ୍ଠୁର ଶୋଷଣ ହେଉ ଆଜି ଭଳି ଗଣମାଧ୍ୟମର ପ୍ରସାର ଘଟି ନଥିବାବେଳେ କାନକୁ କାନ ବାର୍ତ୍ତା ପଠାଇବା ଭଳି ନିଜ ନିଜ

ଅଞ୍ଚଳରେ ସ୍ୱାଧୀନତାର ସ୍ୱାଦୁ ଚାଖିବା ପାଇଁ ଅମିତ ତେଜରେ ପାଗଳ ହୋଇ ଉଠିଥିବା ଓଡ଼ିଆ ପୁଅମାନେ ସ୍ୱାଧୀନତା ସଂଗ୍ରାମରେ ପଛରେ ପଡ଼ିଯାଇନାହାନ୍ତି । ମହାତ୍ମା ଗାନ୍ଧୀଙ୍କ ଅହିଂସା ଅସହଯୋଗ ଆନ୍ଦୋଳନ ପୂର୍ବରୁ ୧୮୧୭ରେ ପାଇକ ନେତା ବୀର ବିପ୍ଳବୀ ବକ୍ସି ଜଗବନ୍ଧୁ ବିଦ୍ୟାଧର ତଥା ୧୮୩୬ରେ ବାଣପୁର ବିଦ୍ରୋହୀ ନେତା କୃତ୍ତିବାସ ପାଟଶାଣୀ ହୁଅନ୍ତୁ ବା ୧୮୫୭ ମହାବିଦ୍ରୋହରେ ବିକ୍ରମୀ ମହାରଥୀ ଚନ୍ଦନ ହଜୁରୀ ହୁଅନ୍ତୁ, ଆଜୀବନ କାରାବାସୀ ସ୍ୱାଧୀନଚେତା ସୁରେନ୍ଦ୍ର ସାଏ ହୁଅନ୍ତୁ ବା ଘେଁସର ସପରିବାର ଶହୀଦ ହୋଇଥିବା ରାଜା ମାଧୋ ସିଂ ହୁଅନ୍ତୁ, ଏମାନଙ୍କର ମର୍ମଭେଦୀ ସଂଗ୍ରାମ ତଥା ପ୍ରାଣବଳୀର କାହାଣୀ ମାନବବାଦୀ ମଣିଷର ଚକ୍ଷୁକୁ ଅଶ୍ରୁସିକ୍ତ କରିଦିଏ ।

ସେହିଭଳି ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱ ସମୟରେ ଅହିଂସ ବା ହିଂସ୍ର ସଂଗ୍ରାମରେ ହେଉ ଢେଙ୍କାନାଳର କନିଷ୍ଠ ଶହୀଦ ବାଜି ରାଉତଠାରୁ ଆରମ୍ଭ କରି ପୁରୀ ରଣପୁରର ରଘୁ-ଦିବାକର ଯାଏଁ, ଭାରତଛାଡ଼ ଆନ୍ଦୋଳନରେ ଭଦ୍ରକର ଭଣ୍ଡାରୀପୋଖରୀ, ଧାମନଗରଠାରୁ ଆରମ୍ଭ କରି ଇରମର ଲୋମହର୍ଷଣକାରୀ ଗୁଳିକାଣ୍ଡ ଯାଏଁ, ବାଲେଶ୍ୱରର ତୁଡ଼ିଗଡ଼ିଆଠାରୁ ଯାଜପୁରର କଳାମାଟିଆ ଯାଏଁ, ନୟାଗଡ଼ର କଷ୍ଟି ଡାକୁଆଠାରୁ କୋରାପୁଟର ଗାନ୍ଧୀ - ବିପ୍ଳବୀ ଲକ୍ଷ୍ମଣ ନାଏକ ଯାଏଁ ଅମିତ ତେଜୋଦୀପ୍ତ ପ୍ରଚଣ୍ଡ ନିର୍ଭୀକତାରେ ଅଗ୍ନିବାଣ କିମ୍ବା ଫାଶୀ ମଞ୍ଚରେ ଆତ୍ମବଳି ଦାନ କରି ଭାରତମାଆର ପୂଜାବେଦୀରେ ସଜଫୁଟା ଅମଉଳା ପୂଜା ଫୁଲ ହୋଇ ରହିଯାଇଛନ୍ତି ।

ଅଗ୍ନି ସଂଯୁକ୍ତ ଭସ୍ମ ପରିବେଷ୍ଟିତ କାଷ୍ଠଖଣ୍ଡକୁ ଘଞ୍ଚାଳି ଦେଲେ ଯେପରି ପୁନଃ ପ୍ରଜ୍ୱଳିତ ହୋଇଉଠେ । ସେହିଭଳି ସମୟର ସ୍ରୋତରେ ପୋତି ହୋଇ ପଡୁଥିବା ସ୍ୱାଧୀନତା ସଂଗ୍ରାମୀଙ୍କ ବୀରତ୍ୱପୂର୍ଣ୍ଣ କାହାଣୀକୁ ଭାରତୀୟ ମହାବିଦ୍ରୋହର ଦେଢ଼ ଶତାବ୍ଦୀ ପୂର୍ତ୍ତି ଏବଂ ସ୍ୱାଧୀନତାର ଷାଠିଏ ବର୍ଷ ପୂର୍ତ୍ତି ଉତ୍ସବରେ ସ୍ମରଣ କରି ଆଉ ଏକ ସ୍ୱାବଲମ୍ବନଶୀଳ ସ୍ୱାଧୀନତା ପାଇଁ ଅଣ୍ଟା ଭିଡ଼ିବାକୁ ହେବ । ଏହି ଅବସରରେ ଭାରତର ସ୍ୱାଧୀନତା ସଂଗ୍ରାମରେ କନିକାର ଅବଦାନକୁ ସଂକ୍ଷେପରେ ସ୍ମରଣ କରିବା ପ୍ରାସଙ୍ଗିକ ମନେହୁଏ ।

ବିଂଶ ଶତାବ୍ଦୀର ମଧ୍ୟଭାଗ । ପ୍ରକୃତିର କରାଳ କବଳରେ କବଳିତା ହୋଇଛି କନିକା ମାଆ । ପ୍ରତିବର୍ଷ ବନ୍ୟାରେ ବୁଡ଼ିଛି, ଲୁଣାରେ ସଢ଼ିଛି, ବାତ୍ୟା ମରୁଡ଼ିରେ ଝଡ଼ିଚି । କିନ୍ତୁ ତା'ର ସନ୍ତାନଗଣ ଶପଥ ନେଇଛନ୍ତି - ପ୍ରକୃତି ବିରୋଧରେ ଲଢ଼େଇ କରି ମାଆକୁ ପିନ୍ଧେଇବେ ଶସ୍ୟ ଶ୍ୟାମଳାର ଶ୍ୟାମଳିମା ବସ୍ତ୍ର, ମସ୍ତକ ଉପରେ ଉଡ଼େଇବ ପାଚିଲା କ୍ଷେତର କନିକା ନେତ । ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ସମସ୍ତେ କୌଳିକ ବୃତ୍ତି ଉପରେ ସ୍ୱାଧୀନ ଭାବେ ଉପାର୍ଜନ କରି ଆତ୍ମନିର୍ଭରଶୀଳ ହେବେ ।

ଏହି ସମୟରେ ଭାରତବର୍ଷରେ ଆବିର୍ଭାବ ହୋଇ ଅହିଂସା ଓ ଅସହଯୋଗର ମୋହନ ବଂଶୀ ଫୁଙ୍କିଛନ୍ତି ମୋହନ ଗାନ୍ଧୀ । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି ଉତ୍କଳମାତାର କୁଳନନ୍ଦନ ଗୋପବନ୍ଧୁ ଦାସ । ୧୯୨୧ ମସିହାରେ ସେ ଉତ୍କଳ କଂଗ୍ରେସର ସଭାପତି ହେବା ପରେ କନିକା ମାଆର ନିର୍ଯ୍ୟାତନାର ରଡ଼ି ତାଙ୍କୁ ଅଥୟ କରି ଦେଇଛି । ତାଙ୍କ ପ୍ରେରଣାରେ କନିକା ଆସିଛନ୍ତି ବଳିଷ୍ଠ କଂଗ୍ରେସ କର୍ମୀ ଡିଗିରିଆର ବାବାଜୀ ରାମଦାସ, ମଧୁସୂଦନ ପଟ୍ଟନାୟକ । କଣ୍ଟପଡ଼ାରେ ବସାଇଛନ୍ତି ସ୍ୱରାଜ ଆଶ୍ରମ । ମହାତ୍ମା ଗାନ୍ଧୀଙ୍କ ଅସହଯୋଗର ମନ୍ତ୍ର ଫୁଙ୍କିଲେ କନିକାର କାନେ କାନେ, କୁଟି ଖାଅ, କାଟିପିନ୍ଧ, ବିଦେଶୀ ଜିନିଷ ବର୍ଜନ କର, କର ଟିକସ ବନ୍ଦ କର, ସରକାରୀ ଚାକିରି ତ୍ୟାଗ କର ଆଦି ସ୍ଲୋଗାନ କନିକାବାସୀଙ୍କୁ ପାଗଳ କରିଛି । ଓଡ଼ିଶାର କୋଡ଼ିଏ ହଜାର ସଭ୍ୟଙ୍କ ମଧ୍ୟରୁ ଏକାକୀ କନିକାରେ ହୋଇଗଲେ ଚାରି ହଜାର କଂଗ୍ରେସ ସଭ୍ୟ । ଇନ୍ଦ୍ରମଣି ବନ୍ଦୋବସ୍ତ ୬୪ ପ୍ରକାର କରର । ନିର୍ଯ୍ୟାତନା ସାଙ୍ଗକୁ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ଡାକରା, ପୁଣି ସଂସାର ହରାଇ ମହାସଂସାରରେ ପଶିଥିବା ଗୋପବନ୍ଧୁଙ୍କୁ ଏକାଧାରରେ କୃଷକ, ଶିକ୍ଷକ, ଛାତ୍ର, ଯୁବକ, ମୂଲିଆ, ରାଜକର୍ମଚାରୀଙ୍କୁ ଏକଜୁଟ କରି ଦେଲା ।

ଓଡ଼ିଶାର ବିପ୍ଳବୀ ଡାଳି କାନ୍ଦୋର ଆନନ୍ଦ ଚନ୍ଦ୍ର ଜେନା 'ଦୁଃଖିନୀ କନିକା' ଖଣ୍ଡକାବ୍ୟ ଲେଖି ବିପ୍ଳବର ଜୁଆର ତୋଳିଲେ । ଲେଖିଲେ- 'ହାକିମ ଚିଡ଼ିଲେ ଚିଡ଼ନ୍ତୁ, କିଲାର ଭିତରୁ ତଡ଼ନ୍ତୁ । ତନୁରୁ ମାଉଁସ ଝାଡ଼ନ୍ତୁ, ମସ୍ତକ ମୋଡ଼ିଲେ ମୋଡ଼ନ୍ତୁ । ଉଚିତ କଥା କହିବାକୁ, ନଡ଼ର, ନଡ଼ର କାହାକୁ । ଡରିବ ଯଦି ଭାଇମାନେ, କନିକା ବୁଡ଼ିବ ଅଜ୍ଞାନେ । ପ୍ରକୃତ କହୁଁ କହୁଁ ଯେବେ, ମୋ' ପ୍ରାଣ ଯାଇପାରେ ତେବେ । ମଙ୍ଗଳ ହେଉ ଭାଇଙ୍କର, ଏଥକୁ କାହିଁପାଇଁ ଡର । ମରଣ ପଛେ ମୋତେ ହେଉ, କାହାରି ବିପଦ ନହେଉ ।'

ଏହିପରି 'ଦୁଃଖିନୀ କନିକା'ର ପ୍ରଭାବରେ ଆର୍.ଏନ୍. ହାଇସ୍କୁଲର ଛାତ୍ରମାନେ ସ୍କୁଲ ବର୍ଜନ କରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । କନିକାର ତିନି ଇଲାକା-ପାଞ୍ଚମୁକା, କେରଡ଼ା, ଛମୁକାର କେନ୍ଦ୍ରସ୍ଥଳୀ ଛମୁକାରେ ମେଳି ସଂଗଠିତ ହେଲା । ଅନେକ ରାଜକର୍ମଚାରୀ ଚାକିରି ଛାଡ଼ିଲେ । ଆର୍.ଏନ୍. ହାଇସ୍କୁଲର ଶିକ୍ଷକ ଆୟତନ ନିବାସୀ ଜୟରାମ ରାୟ, ଜୟନଗରର ପୌଦାର ଉପେନ୍ଦ୍ର ସୁବୁଦ୍ଧି ରାୟ, ବର୍ତ୍ତନୀର ପୂର୍ବ ମୁକ୍ତାଗିରି ଦୀନବନ୍ଧୁ ଖଣ୍ଡାୟତ ରାୟ ଓ ବିସୁନି ମଡୁଆଳ, ତେନ୍ତୁଳିକୋଳିର ବାସୁ ସେଠୀ, ପାଞ୍ଚମୁକାର ଚକ୍ରଧର ବେହେରା, ନିଧି ତ୍ରିପାଠୀ, କେରଡ଼ାର ବିଶ୍ୱନାଥ ରାଉତ ପ୍ରଭୃତି ସଭାପରେ ସଭା କଲେ । ସର୍ବୋପରି କନିକା ରାଜାଙ୍କୁ ଛାଡ଼ି ମେଲଣ ପଡ଼ିଆରେ ଯେତେବେଳେ ସଭା କଲେ ହଜାର ହଜାର ସଂଖ୍ୟାରେ ସେତେବେଳେ କନିକା ରାଜାଙ୍କ କଳିଜା ଥରିଲା । ଶରଣ ପଶିଲେ ଇଂରେଜ ସରକାର ପାଖରେ । ଇଂରେଜ ଫଉଜ ଗଦା ହେଲେ କନିକା ଭୂଇଁରେ । ଅବସ୍ଥା ଚରମ ପର୍ଯ୍ୟାୟକୁ ଗଲା ।

୧୯୨୨ ମସିହା ଏପ୍ରିଲ ୨୩ ତାରିଖ । ଏକ ପକ୍ଷରେ ସ୍ୱାଧୀନତାକାମୀ କଂଗ୍ରେସ ପରିଚାଳିତ ହଜାର ହଜାର କନିକାବାସୀ, ଅପରପକ୍ଷରେ ଇଂରେଜ ଫୌଜ । ପରସ୍ପରକୁ ସମ୍ମୁଖୀନ ହେଲେ ମେଘପୁର ପାର୍ଶ୍ୱସ୍ଥ ବେବର୍ତ୍ତା ପୋଖରୀ ନିକଟରେ । ଯଥାର୍ଥ ଅସନ୍ତୋଷକୁ ସମ୍ମାନ ଦେବା ପରିବର୍ତ୍ତେ ଇଂରେଜ ଫୌଜ ଗୁଳି ଚଳେଇଲେ । ଶହୀଦ ହେଲେ 'ଦୁଃଖିନୀ କନିକା' କାବ୍ୟରେ ଉଦ୍‌ବୁଦ୍ଧ, ବିଶାଳ ବପୁଧାରୀ, ଅମିତ ଶକ୍ତିଧର ସାଧାରଣ ମଣିଷଦ୍ୱୟ ବର୍ଦ୍ଧନୀର ବିସୁନି ମଦୁଆଳ ତେନ୍ତୁଳିକୋଳିର ବାସୁ ସେଠୀ ।

କାବ୍ୟସ୍ନାତା, ରକ୍ତସ୍ନାତା ଏହି ମେଳି ଅପରାଧରେ ଗୋପବନ୍ଧୁ ଦାସ ୧୯୨୨ ମସିହାରେ ବନ୍ଦୀ ହୋଇ ହଜାରିବାଗ ଜେଲ୍‌ରେ ଦୁଇ ବର୍ଷ କଟାଇଲେ । 'ବନ୍ଦୀର ଆତ୍ମକଥା'ରେ ଲେଖିଲେ 'ଦୁଃଖିନୀ କନିକା ନ ହୁଅ ଅତୁର, ହେଉ ନିର୍ଯ୍ୟାତନା ଧନ ଦ୍ରବ୍ୟ ଦୂର । ତୋ ଆଦର୍ଶ ହେଉ ଉତ୍କଳେ ଅକ୍ଷୟ, ଜାଗୁ ପ୍ରଜାକୁଳ ତୁଟୁ ରାଜ ଭୟ । ମୋ' ଶୁଭ କାମନା ସ୍ନେହ ନେତ୍ର ଜଳ, ଘେନ ଏଥି ମୋର ଏତିକି ସମ୍ବଳ । ତୋ' ଆଦର୍ଶ ହେଉ ଉତ୍କଳେ ଅକ୍ଷୟ'- ପ୍ରମାଣ କରେ ଭାରତର ମୁକ୍ତି ସଂଗ୍ରାମରେ କନିକାର ଗୁରୁତ୍ୱ କେତେ ବଳିଷ୍ଠ ଥିଲା ।

'ଦୁଃଖିନୀ କନିକା' ଖଣ୍ଡ କାବ୍ୟରେ ଏତେ ବଳିଷ୍ଠ କ୍ରାନ୍ତିର ବିଚାର ଥିଲା, କନିକା ରାଜା ଇଂରେଜ ସରକାର ହିମତରେ ତାକୁ ବାଜ୍ୟାପ୍ତି କଲେ । ମାତ୍ର ଦୁଇ ପଇସାର ପୁସ୍ତିକାକୁ ଦଶ ଟଙ୍କା ବଦଳରେ ଫେରସ୍ତ ଦେବାକୁ ଘୋଷଣା କଲେ । ଏହାର ବ୍ୟତିକ୍ରମରେ ଦେଶାନ୍ତର ହେବେ ବୋଲି ଆଇନ ଜାରି କଲେ । ଫଳରେ ଏହି ପୁସ୍ତକ ଦୁଷ୍ପ୍ରାପ୍ୟ ହୋଇଗଲା । ପରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ବୀର କିଶୋର ଦାସ, ସଚ୍ଚି ରାଉତରାୟଙ୍କ ସଂଗୀତ ଓ କବିତା ବାଜ୍ୟାପ୍ତି ହୋଇଥିବାବେଳେ ଏହି 'ଦୁଃଖିନୀ କନିକା' ବିପ୍ଳବୀ ପୁସ୍ତିକା ଓଡ଼ିଶାର ପ୍ରଥମ ବାଜ୍ୟାପ୍ତି ପୁସ୍ତିକାର ଗୌରବ ଅର୍ଜନ କଲା ।

ଗୋପବନ୍ଧୁ ଯେତେବେଳେ ୧୯୨୪ ମସିହାରେ ଜେଲରୁ ଫେରିଲେ କଟକରେ ତାଙ୍କ ସମ୍ବର୍ଦ୍ଧନା ସଭାରେ ଜାତୀୟ କବି ବାଞ୍ଛାନିଧି ମର୍ମଭେଦୀ ସଂଗୀତ ଗାଇଲେ -

'କେତେ ଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ,
ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ ଲିଭିଥିଲା କିବା ଦଇବ ।
କର ଦେଇ ଦେଇ ସାରିଛି ସମ୍ବଳ, ମାଡ଼ ଖାଇ ଖାଇ ହରାଇଛି ବଳ
ଆହା ବୋଲିବାକୁ ସାହା କେହି ନାହିଁ, କାହା ଆଗେ ଦୁଃଖ କହିବ ।
ସନ୍ତାନ କାହାଣୀ ଶୁଣୁ ଥିଲ କାନେ, କନିକାର ଲୀଳା ଦେଖୁଛ ନୟନେ
ଶତ ଅତ୍ୟାଚାର କନିକାର ତୁଳେ ପଞ୍ଝାବଳି ସରିସ ହୋଇବ ।
ତା' ଦୁଃଖ ଫେଡ଼ିବା ପାଇଁ ଗୋପବନ୍ଧୁ ଉତ୍କଳର ପ୍ରାଣ ଦୀନ ଜଗବନ୍ଧୁ
ବରିନେଲେ ଦୀର୍ଘ କାରାବାସ ଦଣ୍ଡ, ନାହିଁ କେହି ଏହା ହେଜିବ ।'

ଭାରତର ମୁକ୍ତି ସଂଗ୍ରାମରେ କନିକାର ରକ୍ତକ୍ଷୟୀ ଆନ୍ଦୋଳନ ସ୍ୱାଧୀନତା ଇତିହାସରେ ରକ୍ତମସୀର ଆଲେଖ୍ୟ ସୃଷ୍ଟି କରିଛି । ଇଂରେଜ ସରକାର ଚାହିଁଥିଲା - ବେବର୍ତ୍ତା ମାଟିକୁ ରକ୍ତସିକ୍ତ କରି ପ୍ରେତ ଭୂମିରେ ପରିଣତ କରିବ । ଆଜି କିନ୍ତୁ ବେବର୍ତ୍ତା ସରୋବରର ଜଳ ଗଙ୍ଗାଜଳରେ ପରିଣତ ହୋଇଛି । 'କନିକା ଶହୀଦ ସ୍ମୃତି ସଂସଦ'ର ଆନୁକୂଲ୍ୟରେ ଉତ୍କଳ କେଶରୀ ମହତାବଙ୍କ ଶ୍ରଦ୍ଧା ଓ ସାହାଯ୍ୟ ବେବର୍ତ୍ତା ସରୋବର କୂଳରେ ସ୍ଥାପିତ ହୋଇଛି ବାସୁ-ବିସୁନିଙ୍କ ଏକ ସ୍ମୃତି ସ୍ତମ୍ଭ । ପ୍ରତିବର୍ଷ ଛୁଟି ଆସୁଛନ୍ତି ଦେଶପ୍ରେମୀ ତୀର୍ଥଯାତ୍ରୀଗଣ, ଏହି ବେବର୍ତ୍ତା ସରୋବରର ଗଙ୍ଗାଜଳରେ ବୁଡ଼ ପକାଇ ପବିତ୍ର ହେବା ପାଇଁ । ବେବର୍ତ୍ତାର ରକ୍ତସ୍ନାତା ମାଟି, ପାଣି, ପୁଣି ସ୍ମୃତି ସ୍ତମ୍ଭ ଯେ ବିପ୍ଳବୀ ଚେତନାକୁ ଉଜ୍ଜୀବିତ କରିବା ଲାଗି ବିପ୍ଳବର ସ୍ମାରକୀ ହେବ, ଏଥିରେ ସନ୍ଦେହ ନାହିଁ ।

ଆନନ୍ଦର କଥା, ଆଜି 'ଭିତର କନିକା' ଜାତୀୟ ଉଦ୍ୟାନର ମାନ୍ୟତା ପାଇଛି । ତାହା ଏକ ପର୍ଯ୍ୟଟନ ସ୍ଥଳୀର ସ୍ୱୀକୃତିରେ କନିକାର ଚନ୍ଦନ ପୋଖରୀଠାରୁ ଜୟ ନଗର ପର୍ଯ୍ୟନ୍ତ ଏକ ପ୍ରଶସ୍ତ ରାସ୍ତା ନିର୍ମାଣ ଚାଲିଛି । ଏହି ରାସ୍ତାର ଅନତି ଦୂରରେ ଅବସ୍ଥିତି ଶହୀଦ ସ୍ମୃତି ସ୍ତମ୍ଭ । ଅସହଯୋଗ ଆନ୍ଦୋଳନର ପ୍ରଥମ ଶହୀଦ ବାସୁ-ବିସୁନିଙ୍କ ସ୍ମୃତି ପୀଠକୁ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ଦେଇ ଏହାର ଉତ୍ତରୋତ୍ତର ଉନ୍ନତି କରିବାକୁ କନିକା ଶହୀଦ ସ୍ମୃତି ସଂସଦ ନିବେଦନ କରେ । ନିବେଦନ କରେ ବାଜ୍ୟାପ୍ତି ପୁସ୍ତକର ପ୍ରଣେତା, ବାସ୍ତୁହରା ହୋଇଥିବା ବିପ୍ଳବୀ ଆନନ୍ଦ ଚନ୍ଦ୍ର ଜେନାଙ୍କ ରାଜ କନିକାରେ ପ୍ରତିମୂର୍ତ୍ତି ସ୍ଥାପନ କରିବାକୁ, ଭୁବନେଶ୍ୱରରେ ପ୍ରସ୍ତାବିତ ସ୍ଥାନରେ ତାଙ୍କ ମୂର୍ତ୍ତି ସ୍ଥାପନ କରିବାକୁ ।

ଭାରତୀୟ ମହାବିଦ୍ରୋହର ଦେଢ଼ ଶହ ବର୍ଷ, ସ୍ୱାଧୀନତାର ଷାଠିଏ ବର୍ଷର ପୂର୍ତ୍ତି ଉତ୍ସବ ପାଳନ ହେବାକୁ ଯାଉଛି । ସ୍ୱାଧୀନତା ଭୋଗୀ ସୁବିଧାବାଦୀ ମଣିଷ ଫେରି ଚାହିଁନି ସେହିମାନଙ୍କୁ ଯେଉଁମାନେ ସ୍ୱାଧୀନତା ପାଇଁ ତିଳ ତିଳ କରି ଜୀବନକୁ ଜାଳିଛନ୍ତି । ପରିବାରକୁ ଉଚ୍ଛନ୍ନ କରି ସ୍ୱାଧୀନତା ଆଣିଛନ୍ତି । ସେମାନଙ୍କ ତ୍ୟାଗପୂତ ସଂସ୍କୃତିରେ ଆମର ଜାଗୃତି, ସେମାନଙ୍କ ସ୍ଥାପିତ ପ୍ରତିମୂର୍ତ୍ତିକୁ ନେଇ ଆମର ପରିଚିତି, ସେମାନଙ୍କ ଗୁଣ ସ୍ମୃତିକୁ ନେଇ ଆମର ଅଗ୍ରଗତି - ଏକଥା ଉତ୍ତର ଦାୟାଦ ଭୁଲିଗଲେ ଚଳିଦନି । ସେମାନଙ୍କ ସଂଗ୍ରାମ ଥିଲା ସ୍ୱଦେଶୀ ଆନ୍ଦୋଳନରେ ବିଦେଶୀ ବିତାଡ଼ନ, ସାମ୍ରାଜ୍ୟବାଦ ପତନରେ ସମାଜବାଦର ସ୍ଥାପନ, ସାମନ୍ତବାଦର ଉତ୍ପାଟନରେ ପ୍ରଜାତନ୍ତ୍ରର ରୋପଣ । ଆଜିର ଉତ୍ତରଦାୟାଦ ଭୁଲି ଯାଇପାରେ ଯେ ପ୍ରତିଦାନ ଚାହିଁ ନଥିବା ସେହି ସର୍ବତ୍ୟାଗୀ ଆନନ୍ଦ ଚନ୍ଦ୍ର, ଗୋପବନ୍ଧୁ, ମାଧୋ ସିଂ, ସୁରେନ୍ଦ୍ର ସାଏମାନଙ୍କୁ, ଆତ୍ମବଳି ଦେଇଥିବା କଷ୍ଟି ଡାକୁଆ, ବାଜି ରାଉତ, ବାସ-ବିସୁନିମାନଙ୍କୁ କିନ୍ତୁ ଭୁଲି ନଯାଉ ସେମାନଙ୍କର ବିପ୍ଳବର ଧାରାକୁ ।

ସଭ୍ୟ, କନିକା ଶହୀଦ ସ୍ମୃତି ସଂସଦ
ତେନ୍ତୁଳିକୋଳି, ପୋ: ଆୟତନ
ଭାୟା- ରାଜକନିକା, କେନ୍ଦ୍ରପଡ଼ା

# ବିଧାନସଭା ଇତିହାସର ସାକ୍ଷୀ : ସର୍ଦ୍ଦାର ପଟେଲ ହଲ

ସଂଘମିତ୍ରା ପ୍ରଧାନ

ଆଉ ଥରେ ଯେ ସେ ସେଇ ମର୍ଯ୍ୟାଦା, ସେଇ ଗହଳଚହଳ, ସେଇ ସ୍ୱୀକୃତି ପାଇବ ବୋଲି ହୁଏତ ଆଶା କରି ନଥିଲା ସର୍ଦ୍ଦାର ପଟେଲ ହଲ୍ । ଯେଉଁମାନେ ଥରେ ଛାଡ଼ି ଚାଲିଯାଇଥିଲେ ସେମାନଙ୍କ ଦାୟାଦମାନେ ଯେ ପୁଣି ଅତୀତକୁ ସ୍ମରଣ କରି ମୁହଁ ଫେରାଇବେ ଏକଥା ପଟେଲ ହଲ କ'ଣ, ଆଉ କେହି ବି ଭାବି ପାରିନଥିଲେ । ମାତ୍ର ଏବେ ସତରେ ସେ ତା'ର ପୂର୍ବ ମର୍ଯ୍ୟାଦା ଫେରିପାଇଛି । ଏହି ମର୍ଯ୍ୟାଦା ଫେରାଇବା ପୂର୍ବରୁ ତା'ର ଚାରିକଡ଼, ଭିତର ଓ ବାହାର ସବୁକିଛି କରାଯାଇଛି ପୂର୍ବଭଳି ସୁନ୍ଦର ଓ ସୁରକ୍ଷିତ ।



ସ୍ୱାଧୀନତା ଆନ୍ଦୋଳନର ଦେଢ଼ଶହ ବର୍ଷର ପୂର୍ତ୍ତିକୁ ରାଜ୍ୟ ପାଳନ କରିଛି ସର୍ଦ୍ଦାର ପଟେଲ ହଲରେ । ସେହିଠାରେ ହିଁ ଅନୁଷ୍ଠିତ ହୋଇଥିଲା ବିଧାନସଭାର ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଅକ୍ଟୋବର ୧୭ ତାରିଖରେ । ଯେଉଁଥିରେ ରାଜ୍ୟବାସୀ ଶ୍ରଦ୍ଧାଞ୍ଜଳି ଜଣାଇଥିଲେ ଇତିହାସର ବରପୁତ୍ର ପାଲଟିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ । ଦୀର୍ଘ ୪୭ ବର୍ଷ ପରେ ପୁଣି ପଟେଲ ହଲ ଅନୁଭବ କରିଛି ବିଧାନସଭାର ଗାରିମାକୁ ।

୧୯୬୦ ମସିହାରେ ଶେଷ ବିଧାନସଭା ବସିଥିଲା ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନାମରେ ହୋଇଥିବା ଏହି ସର୍ଦ୍ଦାର ପଟେଲ ହଲରେ । ଏହାପରର ଅଧିବେଶନ ଅନୁଷ୍ଠିତ ହୋଇଥିଲା ଆଜିର ନୂତନ ବିଧାନସଭା ସୌଧରେ ୧୯୬୧ ମସିହାରେ । ତେବେ ସର୍ଦ୍ଦାର ପଟେଲ ହଲ ହେଉଛି ଭାରତୀୟ ସମ୍ବିଧାନ ଅନୁଯାୟୀ ଓଡ଼ିଶାରେ ହୋଇଥିବା ପ୍ରଥମ ବିଧାନସଭା ଅଧିବେଶନର ସାକ୍ଷୀ ।

ଭାରତୀୟ ସମ୍ବିଧାନ କାର୍ଯ୍ୟକାରୀ ହେବା ପରେ ରାଜ୍ୟ ବିଧାନସଭାର ପ୍ରଥମ ଅଧିବେଶନ ବସିଥିଲା ନୂଆ କରି ପ୍ରତିଷ୍ଠିତ ହୋଇଥିବା ରାଜଧାନୀ ଭୁବନେଶ୍ୱରରେ ନବନିର୍ମିତ ବିଧାନସୌଧ (ସର୍ଦ୍ଦାର ପଟେଲ ହଲ)ରେ ୧୯୫୨ ମସିହା ମାର୍ଚ୍ଚ ୪ ତାରିଖରେ । ସେତେବେଳେ ଗୃହର ପ୍ରଥମ ନେତା ହୋଇଥିଲେ ନବକୃଷ୍ଣ ଚୌଧୁରୀ ଏବଂ ପରେ ହୋଇଥିଲେ ଡଃ ହରେକୃଷ୍ଣ ମହତାବ । ରାଜନୀତିଜ୍ଞ ଡଃ ଶ୍ରଦ୍ଧାକର ସୁପକାର ଥିଲେ ବିରୋଧୀ ଦଳ ନେତା । ବାଚସ୍ପତି ଥିଲେ ନନ୍ଦକିଶୋର ଦାସ ଓ ଉପବାଚସ୍ପତି ଥିଲେ ମୌଲବୀ ମହମ୍ମଦ ହନିଫ । ୧୯୫୨ଠାରୁ ୧୯୬୦ ମସିହା ପର୍ଯ୍ୟନ୍ତ ୧୫ଟି ବିଧାନସଭା ଅଧିବେଶନ ଅନୁଷ୍ଠିତ ହୋଇଥିଲା ସର୍ଦ୍ଦାର ପଟେଲ ହଲରେ । ତେବେ ସମ୍ପ୍ରସାରଣ ଆବଶ୍ୟକତା ପଡ଼ିବାରୁ ନୂତନ ବିଧାନସଭା ଗୃହ ନିର୍ମାଣ କରାଗଲା ୪୭ ହଜାର ବର୍ଗଫୁଟ ପରିମିତ ସ୍ଥାନରେ ୨୫ ଲକ୍ଷ ଟଙ୍କା ବ୍ୟୟରେ । ୧୨ ଫେବୃଆରୀ ୧୯୬୧ ମସିହାରେ । ବିଧାନସଭାର ନୂତନ ସୌଧକୁ ଉଦ୍‌ଘାଟନ କରିଥିଲେ ତତ୍କାଳୀନ ଉପରାଷ୍ଟ୍ରପତି ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ।

ବିଧାନସଭାର ସପ୍ତମ ଅଧିବେଶନ ହୋଇଥିଲା ଏହି ନୂତନ ଗୃହରେ ୧୬ ଫେବୃଆରୀ ୧୯୬୧ ମସିହାରେ । ତେବେ ସଂଯୋଗର ବିଷୟ ହେଉଛି ଯେ ଯେଉଁଦିନ ଉପରାଷ୍ଟ୍ରପତି ନୂତନ ବିଧାନସଭା ଗୃହର ଉଦ୍‌ଘାଟନ କଲେ ସେଇଦିନ ହିଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ପୁରାତନ ବିଧାନସଭା ଗୃହକୁ ସର୍ଦ୍ଦାର ପଟେଲ ହଲ ବୋଲି ନାମିତ କରିଥିଲେ ।

୧୯୬୧ ମସିହାଠାରୁ ଆଜିଯାଏଁ ସମସ୍ତ ବିଧାନସଭା ଅଧିବେଶନ ହୋଇ ଆସୁଛି ଆଜିର ଏହି ବିଧାନସୌଧରେ । ତେବେ ଏହି ବିଧାନସଭା ଅଧିବେଶନର ଇତିହାସ ସର୍ଦ୍ଦାର ପଟେଲ ହଲ ପର୍ଯ୍ୟନ୍ତ ସୀମିତ ନୁହେଁ । ଏହାର ଆରମ୍ଭ ଆହୁରି ଆଗରୁ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଜନ୍ମ ପରଠାରୁ, ଅର୍ଥାତ୍ ୧୯୩୭ ମସିହାରୁ ।

ବିକ୍ଷିପ୍ତ ଭାବେ ବିହାର, ସେଣ୍ଟ୍ରାଲ ପ୍ରୋଭିନ୍ସ ଏବଂ ମାଡ୍ରାସ ରେସିଡ଼େନ୍ସି ଅଧୀନରେ ରହିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଏକାଠି ହୋଇ ସ୍ୱତନ୍ତ୍ର ଉତ୍କଳ ବା ଓଡ଼ିଶା ପ୍ରଦେଶର ମାନ୍ୟତା ପାଇଲା ଏପ୍ରିଲ ୧ ତାରିଖ ୧୯୩୬ ମସିହାରେ । ୧୯୩୭ ମସିହା ଜୁଲାଇ ୨୮ ତାରିଖରେ କଟକର ରେଭେନ୍ସା କଲେଜ ହଲରେ ଅନୁଷ୍ଠିତ ହୋଇଥିଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରଥମ ଐତିହାସିକ ବିଧାନସଭା ଅଧିବେଶନ ।

ସେତେବେଳେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ ଅନୁଯାୟୀ ଓଡ଼ିଶାର ବିଧାୟକ ସଂଖ୍ୟା ସ୍ଥିର କରାଯାଇଥିଲା ୬୦ ଏବଂ ଏଥିରେ ୪ ଜଣ ମନୋନୀତ ସଦସ୍ୟ ଥିଲେ । ପ୍ରଥମ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ୧୯୩୭ ମସିହା ଜାନୁଆରୀ ମାସ ୧୮ରୁ ୨୩ ତାରିଖ ମଧ୍ୟରେ । ସେତେବେଳେ ବିଧାନସଭାରେ ଏକକ ସଂଖ୍ୟାଗରିଷ୍ଠ ଦଳ ଥିଲା କଂଗ୍ରେସ, ଯାହାର ସଭ୍ୟ ସଂଖ୍ୟା ଥିଲା ୩୬ ।

ବିଶ୍ୱନାଥ ଦାସ କଂଗ୍ରେସର ନେତା ଭାବେ ମନୋନୀତ ହୋଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରଥମ ମୁଖ୍ୟମନ୍ତ୍ରୀ (ପ୍ରଧାନମନ୍ତ୍ରୀ) ହେବାର ସୁଯୋଗ ପାଇ ମଧ୍ୟ ମୁଖ୍ୟମନ୍ତ୍ରୀ (ପ୍ରଧାନମନ୍ତ୍ରୀ) ହୋଇପାରିନଥିଲେ ।

ସେତେବେଳର ନିୟମ ଅନୁଯାୟୀ ରାଜ୍ୟପାଳଙ୍କ କ୍ଷମତା ଓ ଅଧିକାର ମୁଖ୍ୟମନ୍ତ୍ରୀଙ୍କଠାରୁ ଯଥେଷ୍ଟ ଅଧିକ ଥିଲା । ତେଣୁ ରାଜ୍ୟପାଳ ଯଦି ଶାସନ ବ୍ୟବସ୍ଥାରେ ହସ୍ତକ୍ଷେପ କରିବାରୁ ବିରତ ହେବେ ତେବେ ସେ ମନ୍ତ୍ରିମଣ୍ଡଳ ଗଠନ କରିବେ ବୋଲି କହିଥିଲେ । ମାତ୍ର ରାଜ୍ୟପାଳ ଏଥିରେ ଅସମ୍ମତି ପ୍ରକାଶ କରିବାରୁ ଶ୍ରୀ ଦାସ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ମନା କରିଦେଇଥିଲେ । ତେଣୁ ରାଜ୍ୟପାଳ, ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କୁ ୧୯୩୭ ମସିହା ଏପ୍ରିଲ ୧ ତାରିଖରେ ପ୍ରଧାନମନ୍ତ୍ରୀ ଭାବେ ଘୋଷଣା କରିଥିଲେ ଏବଂ ସେ ହେଲେ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ । ପ୍ରଧାନମନ୍ତ୍ରୀଙ୍କ ସମେତ ସେତେବେଳେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହମାନ ଅନ୍ୟ ଦୁଇ ଜଣ ମନ୍ତ୍ରୀ ଭାବେ ମନ୍ତ୍ରିମଣ୍ଡଳରେ ସାମିଲ ହେଲେ ।

ତେବେ ପରବର୍ତ୍ତୀ ସମୟରେ ରାଜ୍ୟପାଳଙ୍କ ସ୍ୱତନ୍ତ୍ର ହସ୍ତକ୍ଷେପ କ୍ଷମତା ପ୍ରତ୍ୟାହାରର ପ୍ରତିଶ୍ରୁତି କଂଗ୍ରେସ ହାଇକମାଣ୍ଡଙ୍କଠାରୁ ମିଳିବା ପରେ ରାଜ୍ୟପାଳଙ୍କଦ୍ୱାରା ଅଧିଷ୍ଠିତ କରାଯାଇଥିବା ମଧ୍ୟବର୍ତ୍ତୀକାଳୀନ ସରକାର ଜୁଲାଇ ୧୩ ତାରିଖରେ ଇସ୍ତଫା ଦେଇଥିଲା । ତେବେ ଏହି କାମଚଳା ସରକାର ଜୁଲାଇ ୧୯ ପର୍ଯ୍ୟନ୍ତ ରହିବା ପରେ ସେହି ଜୁଲାଇ ୧୯ ତାରିଖରେ ବିଶ୍ୱନାଥ ଦାସ ପ୍ରଥମ ନିର୍ବାଚିତ ପ୍ରଧାନମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କ ସହ ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ ବୋଧରାମ ଦୁବେ ମନ୍ତ୍ରିମଣ୍ଡଳରେ ସାମିଲ ହୋଇ ଜୁଲାଇ ୨୬ ଓ ୨୭ ତାରିଖରେ ଶପଥ ଗ୍ରହଣ କରିଥିଲେ । ଏହା ପରେ ପ୍ରଥମ ଐତିହାସିକ ଅଧିବେଶନ ଆରମ୍ଭ ହୋଇଥିଲା ଜୁଲାଇ ୨୮ ତାରିଖରେ ରେଭେନ୍ସା କଲେଜ ହଲରେ । ସେହିଦିନ ହିଁ ପ୍ରଥମ ବାଚସ୍ପତି ଭାବେ ମୁକୁନ୍ଦ ପ୍ରସାଦ ଦାସ ଓ ପ୍ରଥମ ଉପବାଚସ୍ପତି ଭାବେ ନନ୍ଦକିଶୋର ଦାସ ନିର୍ବାଚିତ ହୋଇଥିଲେ । ବିଧାନସଭାର ବରିଷ୍ଠ ସଦସ୍ୟ ଥିବା ବାବୁ ବିଚିତ୍ରାନନ୍ଦ ଦାସ ବାଚସ୍ପତି ନିର୍ବାଚନ ପରିଚାଳନା କରିଥିଲେ ।

ଏହି ସରକାର ମାତ୍ର ୨ ବର୍ଷ ପରେ ୧୯୩୭ ନଭେମ୍ବର ୪ ତାରିଖରେ ଇସ୍ତଫା ଦେଇଥିଲା । ଦେଶର ନେତୃବୃନ୍ଦଙ୍କ ସହ ପରାମର୍ଶ ନକରି ବ୍ରିଟିଶ ସରକାର ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତକୁ ସାମିଲ କରିବା ପ୍ରତିବାଦରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲା ଏବଂ ନଭେମ୍ବର ୬ ତାରିଖରେ ରାଜ୍ୟପାଳ ଏହି ଇସ୍ତଫାପତ୍ର ଗ୍ରହଣ କରିଥିଲେ ।

ପରେ ୧୯୪୧ ମସିହା ନଭେମ୍ବର ୨୪ ତାରିଖରେ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା, ଯେଉଁଥିରେ ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ମୌଲବୀ ଅବ୍‌ଦୁସ୍ ଶୋଭନ୍ ଖାନ୍ ମନ୍ତ୍ରୀ ପଦରେ ଥିଲେ । କିନ୍ତୁ ୧୯୪୪ ମସିହା ଜୁନ୍ ୨୦ ତାରିଖରେ ଏହି ସରକାର ଭାଙ୍ଗି ଯାଇଥିଲା ଏବଂ ଓଡ଼ିଶାର ଶାସନ ଦାୟିତ୍ୱ ରାଜ୍ୟପାଳଙ୍କ ହାତକୁ ଚାଲିଯାଇଥିଲା । ତେବେ ୧୪ ସେପ୍ଟେମ୍ବର ୧୯୪୫ରେ ଏହି ବିଧାନସଭା ଭଙ୍ଗ ହେବା ପର୍ଯ୍ୟନ୍ତ ୧୦ଟି ଅଧିବେଶନରେ ସମୁଦାୟ ୧୮୮ ଦିନ ଗୃହକାର୍ଯ୍ୟ ଚାଲିଥିଲା । ସେ ସମୟରେ ବିଧାନସଭାର ସ୍ୱତନ୍ତ୍ର ପ୍ରଶାସନିକ ବ୍ୟବସ୍ଥା ନଥିବା କାରଣରୁ ଏହା ରାଜ୍ୟ ସରକାରଙ୍କ ଆଇନ ବିଭାଗ ଅଧୀନରେ କାର୍ଯ୍ୟ କରୁଥିଲା ।

ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା ୧୯୪୬ ମସିହାରେ । ଏହା ପୂର୍ବରୁ ଓଡ଼ିଶା ପ୍ରଦେଶ ଅଧିକାଂଶ ସମୟ ରାଜ୍ୟପାଳଙ୍କ ଶାସନରେ ହିଁ ରହିଥିଲା । ସେହି ଅବଧି ମଧ୍ୟରେ ରାଜ୍ୟରେ ଦୁଇଥର ରାଜ୍ୟପାଳ ଶାସନ ଜାରି ହୋଇଥିଲା । ପ୍ରଥମେ ୬ ନଭେମ୍ବର ୧୯୩୯ରୁ ୨୪ ନଭେମ୍ବର ୧୯୪୧ ପର୍ଯ୍ୟନ୍ତ ଓ ପରେ ୩୦ ଜୁନ୍ ୧୯୪୪ରୁ ୧୪ ସେପ୍ଟେମ୍ବର ୧୯୪୫ ପର୍ଯ୍ୟନ୍ତ । ଦ୍ୱିତୀୟ ଅଧିବେଶନ ଆରମ୍ଭ ହୋଇଥିଲା ୨୭ ମେ ୧୯୪୬ ମସିହାରେ । ସରକାର ଗଠନ କରିଥିବା କଂଗ୍ରେସଦଳ ସର୍ବାଧିକ ୪୭ ବିଧାୟକ ଥିଲେ ଏବଂ ମୁଖ୍ୟମନ୍ତ୍ରୀ ଥିଲେ ଡଃ ହରେକୃଷ୍ଣ ମହତାବ । ତେବେ ୧୯୫୦ ମେ ୧୨ ତାରିଖରେ ଡଃ ମହତାବ କେନ୍ଦ୍ରରେ ମନ୍ତ୍ରୀ ଦାୟିତ୍ୱ ତୁଲାଇବାରୁ ତାଙ୍କ ସ୍ଥାନରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହୋଇଥିଲେ ।

ଏହି ଦ୍ୱିତୀୟ ଅଧିବେଶନରେ ଲାଲମୋହନ ପଟ୍ଟନାୟକ ଥିଲେ ବାଚସ୍ପତି । ଉଲ୍ଲେଖନୀୟ ଯେ, ୧୯୩୭ ମସିହାର ପ୍ରଥମ ବିଧାନସଭାରେ ଅନ୍ୟତମ ପ୍ରଥମ ମହିଳା ବିଧାୟିକା ଭାବେ ନିର୍ବାଚିତ ହୋଇଥିବା ପୂର୍ବତନ ରାଷ୍ଟ୍ରପତି ଭି.ଭି. ଗିରିଙ୍କ ଭଉଣୀ ଏ. ଲକ୍ଷ୍ମୀବାଈ ସେହି ବିଧାନସଭାରେ ଉପବାଚସ୍ପତି ଭାବେ ନିର୍ବାଚିତା ହୋଇଥିଲେ ।

୧୯୪୬ ମସିହା ସେପ୍ଟେମ୍ବର ୩୦ ତାରିଖରେ ବିଧାନସଭା କଟକରୁ ନୂତନ ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ କରିବା ପାଇଁ ଏକ ପ୍ରସ୍ତାବ ବିଧାନସଭାରେ ଗୃହୀତ ହୋଇଥିଲା । ଏଥିସହ ବିଧାନସଭା ବ୍ୟାପାର ବୁଝିବା ପାଇଁ ୧୯୪୮ ମସିହାରେ ଗୃହ ବିଭାଗ ଅଧୀନରେ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ମଧ୍ୟ କରାଗଲା ।

ଉଲ୍ଲେଖଯୋଗ୍ୟ ଯେ ଏ. ଲକ୍ଷ୍ମୀବାଈଙ୍କ ସହ ସରଳା ଦେବୀ ମଧ୍ୟ ପ୍ରଥମ ବିଧାନସଭାରେ ପ୍ରଥମ ମହିଳା ବିଧାୟିକା ଭାବେ ନିର୍ବାଚିତ ହୋଇଥିଲେ ।

୧୯୪୮ ମସିହା ଜାନୁଆରୀ ୧ ତାରିଖରେ ଗଡ଼ଜାତ ରାଜ୍ୟଗୁଡ଼ିକ ଓଡ଼ିଶା ପ୍ରଦେଶ ସହ ମିଶି ଯିବାରୁ ଏହାର ସଭ୍ୟ ସଂଖ୍ୟା ୬୦ରୁ ୯୧କୁ ବୃଦ୍ଧି ପାଇଲା । ସଦସ୍ୟ ସଂଖ୍ୟା ବୃଦ୍ଧି ତଥା ନୂତନ ରାଜଧାନୀ ନିର୍ମାଣ ଯୋଗୁଁ ବିଧାନସଭା ଅଧିବେଶନ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ କରିବା ପାଇଁ ଚିନ୍ତା କରାଗଲା ।

୧୯୪୬ ମସିହା ସେପ୍ଟେମ୍ବର ୩୦ ତାରିଖରେ ବିଧାନସଭା କଟକରୁ ନୂତନ ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ କରିବା ପାଇଁ ଏକ ପ୍ରସ୍ତାବ ବିଧାନସଭାରେ ଗୃହୀତ ହୋଇଥିଲା । ଏଥିସହ ବିଧାନସଭା ବ୍ୟାପାର ବୁଝିବା ପାଇଁ ୧୯୪୮ ମସିହାରେ ଗୃହ ବିଭାଗ ଅଧୀନରେ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ମଧ୍ୟ କରାଗଲା ।

ଓଡ଼ିଶାରେ ପ୍ରଥମ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ୨୦ ଡିସେମ୍ବର ୧୯୫୧ ମସିହାରେ । ଏହି ନିର୍ବାଚନ ୩୬ ଦିନ ପର୍ଯ୍ୟନ୍ତ ଚାଲିଥିଲା ଏବଂ ଶେଷ ହୋଇଥିଲା ୨୪ ଜାନୁଆରୀ ୧୯୫୨ରେ । ସେତେବେଳେ ବିଧାନସଭାର ସଦସ୍ୟ ସଂଖ୍ୟା ହୋଇଥିଲା ୧୪୦ ।

ଗଡ଼ଜାତ ରାଜ୍ୟମାନଙ୍କ ମିଶ୍ରଣ ପରେ ପରୀକ୍ଷାମୂଳକ ଭାବେ ପ୍ରଥମ ଅଧିବେଶନ ନୂତନ ରାଜଧାନୀ ଭୁବନେଶ୍ୱରରେ ୧୯୪୯ ମସିହା ଅକ୍ଟୋବର ୧୦, ୧୧ ଓ ୧୨ ତାରିଖରେ କେବଳ ୩ ଦିନ ପାଇଁ କରାଯାଇ ପୁନର୍ବାର କଟକରେ କରାଯାଇଥିଲା ଏବଂ ଏହି ଦ୍ୱିତୀୟ ସ୍ୱାଧୀନତା ପୂର୍ବ ବିଧାନସଭା ୨୦ ଫେବୃଆାରୀ ୧୯୫୨ ମସିହାରେ ଭଙ୍ଗ ହୋଇଥିଲା । ଏହି ବିଧାନସଭା କାଳରେ ୧୪ଟି ଅଧିବେଶନ ହୋଇ ୨୪୪ ଦିନର ଗୃହକାର୍ଯ୍ୟ ହୋଇଥିଲା । ପରେ ସ୍ଥାୟୀ ଭାବେ ସମ୍ବିଧାନ ଅନୁଯାୟୀ ଅଧିବେଶନ ୧୯୫୨ ମସିହାରେ ସର୍ଦ୍ଦାର ପଟେଲ ହଲରେ ଅନୁଷ୍ଠିତ ହୋଇଥିଲା ।

ପଟେଲ ହଲର ଏହି ଅଧିବେଶନ ପୂର୍ବରୁ ଭାରତୀୟ ସମ୍ବିଧାନ କାର୍ଯ୍ୟକାରୀ ହେବା ପରେ ସାବାଳକ ଭୋଟ ବ୍ୟବସ୍ଥା ଅନୁଯାୟୀ ଓଡ଼ିଶାରେ ପ୍ରଥମ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ୨୦ ଡିସେମ୍ବର ୧୯୫୧ ମସିହାରେ । ଏହି ନିର୍ବାଚନ ୩୬ ଦିନ ପର୍ଯ୍ୟନ୍ତ ଚାଲିଥିଲା ଏବଂ ଶେଷ ହୋଇଥିଲା ୨୪ ଜାନୁଆରୀ ୧୯୫୨ରେ । ସେତେବେଳେ ବିଧାନସଭାର ସଦସ୍ୟ ସଂଖ୍ୟା ହୋଇଥିଲା ୧୪୦ ।

ଏହି ନିର୍ବାଚନରେ ଭାରତୀୟ ଜାତୀୟ କଂଗ୍ରେସ ସର୍ବାଧିକ ୬୭ଟି ଆସନ ପାଇଥିବା ବେଳେ ଗଣତନ୍ତ୍ର ଦଳ ୩୧, ସୋସିଆଲିଷ୍ଟ ପାର୍ଟି ୧୦, କମ୍ୟୁନିଷ୍ଟ ୭, ଏଫ୍.ବି. (ଏମ୍.) ୧ ଓ ସ୍ୱାଧୀନ ପ୍ରାର୍ଥୀ ୨୪ଟି ଆସନରେ ବିଜୟୀ ହୋଇଥିଲେ ।

୪ ମାର୍ଚ୍ଚ ୧୯୫୨ ମସିହାରେ ଏହି ନିର୍ବାଚିତ ସଦସ୍ୟମାନଙ୍କୁ ପ୍ରଥମ ଥର ସ୍ଥାୟୀ ଭାବେ ଭେଟିଥିଲା ସର୍ଦ୍ଦାର ପଟେଲ ହଲ । ଏହିଠାରେ ହିଁ ସଦସ୍ୟମାନଙ୍କୁ ଶପଥ ପାଠ କରାଇଥିଲେ ବୟୋଜ୍ୟେଷ୍ଠ ବିଧାୟକ ତଥା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ । ସଂଖ୍ୟା ଗରିଷ୍ଠ ଦଳର ନେତା ଭାବେ ନବକୃଷ୍ଣ ଚୌଧୁରୀ ବସିଥିଲେ ମୁଖ୍ୟମନ୍ତ୍ରୀ ଆସନରେ ୨୦ ଫେବୃଆରୀରେ ।

ତେବେ ୧୯୫୬ ମସିହା ଅକ୍ଟୋବର ୧୯ ତାରିଖରେ ସେ ତାଙ୍କ ପଦରୁ ଇସ୍ତଫା ଦେବା ପରେ ସେହିଦିନ ହିଁ ଡଃ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ହୋଇଥିଲେ । ଗଣତନ୍ତ୍ର ପରିଷଦର ସଦସ୍ୟ ଶ୍ରଦ୍ଧାକର ସୁପକାର ଥିଲେ ସର୍ଦ୍ଦାର ପଟେଲ ହଲରେ ପ୍ରଥମ ବିରୋଧୀ ଦଳ ନେତା । ଏହି ବିଧାନସଭାର ଅବଧି ପୂର୍ଣ୍ଣ ହୋଇଥିଲା ୪ ମାର୍ଚ୍ଚ ୧୯୫୭ ମସିହାରେ । ଏହା ମଧ୍ୟରେ ହୋଇଥିଲା ୯ଟି ଅଧିବେଶନରେ ୩୫୬ ଦିନର ଗୃହ କାର୍ଯ୍ୟ ।

ଏବେ ପୁଣି ଥରେ ସେଇ ସ୍ୱର୍ଣ୍ଣିମ ସ୍ମୃତିର ପୁନରାବୃତ୍ତି ହୋଇଥିଲା ଗତ ୨୦୦୭ ଅକ୍ଟୋବର ୧୭ରେ । ସ୍ୱାଧୀନତା ଆନ୍ଦୋଳନର ଦେଢ଼ଶହ ବର୍ଷ ପୂର୍ତ୍ତି ଉପଲକ୍ଷେ ଏକ ଐତିହାସିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ସର୍ଦ୍ଦାର ପଟେଲ ହଲରେ । ଖେଳିଯାଇଛି ହଜିଲା ଦିନର ସ୍ମୃତି । ଆଉଥରେ ପଟେଲ ହଲ ଅନୁଭବ କରିଥିଲା ତା'ର ଗୁରୁତ୍ୱପୂର୍ଣ୍ଣ ଅସ୍ତିତ୍ୱକୁ ।

୩୦୧(ବି), ଖାରବେଳ ନଗର
ଭୁବନେଶ୍ୱର

■ ■ ■

# ସତ୍ୟାଗ୍ରହ - ଅର୍ଥ ଓ ପ୍ରୟୋଗ

ଡଃ ଅତୁଲ ଚନ୍ଦ୍ର ପ୍ରଧାନ

୧୯୦୬ ମସିହା ସେପ୍ଟେମ୍ବର ମାସ ୧୧ ତାରିଖ ଦିନ ଦକ୍ଷିଣ ଆଫ୍ରିକାର ଜୋହାନ୍ସବର୍ଗ ସହରର ଇମ୍ପିରିଏଲ ଥିଏଟର ପ୍ରେକ୍ଷାଳୟରେ ମୋହନ ଦାସ କରମଚାନ୍ଦ ଗାନ୍ଧୀ ନାମଧେୟ ଜଣେ ଭାରତୀୟ ଗୁଜରାଟୀ ଯୁବ ବାରିଷ୍ଟର ପ୍ରବାସୀ ଭାରତୀୟମାନଙ୍କର ଏକ ସଭା ଆହ୍ୱାନ କରିଥିଲେ । ଏହି ସଭାରେ ଭାରତୀୟମାନଙ୍କ ପାଇଁ ଅପମାନଜନକ ବର୍ଣ୍ଣ ବୈଷମ୍ୟଭିତ୍ତିକ ପ୍ରସ୍ତାବିତ ଏସୀୟ ପଞ୍ଜିକରଣ ଆଇନ (Asiatic Registration Act) ବିରୋଧରେ ଅହିଂସା ନୀତିରେ ଆନ୍ଦୋଳନ ଚଳାଇବା ପାଇଁ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ଆନ୍ଦୋଳନକୁ ପ୍ରଥମେ ନିଷ୍କ୍ରିୟ ପ୍ରତିରୋଧ (Passive Resistance) ଆଖ୍ୟା ଦିଆଯାଇଥିଲା । ପରେ ଏହାକୁ 'ସଦାଗ୍ରହ' ଏବଂ ଶେଷରେ 'ସତ୍ୟାଗ୍ରହ' ଆଖ୍ୟା ଦିଆଗଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ଦକ୍ଷିଣ ଆଫ୍ରିକାରେ ଏଭଳି ଆନ୍ଦୋଳନ ଚାଲିବା ଫଳରେ ଭାରତୀୟମାନେ କିଛିମାତ୍ରାରେ ବର୍ଣ୍ଣବୈଷମ୍ୟ ପୀଡ଼ାରୁ ରକ୍ଷା ପାଇଥିଲେ । ୧୯୧୫ ମସିହାରେ ଗାନ୍ଧିଜୀ ଭାରତକୁ ଫେରିଆସି ଅହମଦାବାଦରେ ସାବରମତୀ ନଦୀକୂଳରେ ସତ୍ୟାଗ୍ରହ ଆଶ୍ରମ ପ୍ରତିଷ୍ଠା କରିଥିଲେ । ପ୍ରଥମେ ସେ କେତେକ ସ୍ଥାନ (ଚମ୍ପାରଣ, ଖଇରା ଏବଂ ଅହମଦାବାଦ)ରେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇ ଲୋକମାନଙ୍କ ପାଇଁ ନ୍ୟାଯ୍ୟ ଅଧିକାର ହାସଲ କରିବାରେ ସଫଳ ହୋଇଥିଲେ । ପରେ ଜାତୀୟ କଂଗ୍ରେସ ମାଧ୍ୟମରେ ଭାରତକୁ ଇଂରେଜ ଶାସନରୁ ମୁକ୍ତ କରିବା ପାଇଁ ଗାନ୍ଧିଜୀ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇଥିଲେ । ଫଳରେ ଦେଶ ସ୍ୱାଧୀନ ହେଲା ଏବଂ ଗାନ୍ଧିଜୀ ମହାତ୍ମା ଓ ଜାତିର ପିତା ହେଲେ ।

ସତ୍ୟାଗ୍ରହର ଅର୍ଥ ସତ୍ୟ ପାଇଁ ଦୃଢ଼ତା ଓ ନିଷ୍ଠା । ମାନବୀୟ ସଂସ୍କୃତିରେ ସତ୍ୟାଗ୍ରହ ଏକ ଶାଶ୍ୱତ ମୂଲ୍ୟବୋଧ । ପାରିବାରିକ ଓ ସାମାଜିକ ଜୀବନରେ ସତ୍ୟପ୍ରତି ନିଷ୍ଠାକୁ ସର୍ବଦା ଗୁରୁତ୍ୱ ଦିଆଯାଇଛି । ଗାନ୍ଧିଜୀ ସତ୍ୟ ଓ ଅହିଂସା ନୀତିରେ ଇଂରେଜ ସରକାରଙ୍କ ବିରୋଧରେ ଭାରତୀୟ ଜନତାଙ୍କୁ ସଂଗଠିତ କରିଥିଲେ । ତାଙ୍କ ଆନ୍ଦୋଳନରେ ଶାରୀରିକ କିମ୍ବା ପାଶବିକ ଶକ୍ତିର କୌଣସି ସ୍ଥାନ ନଥିଲା । ଆତ୍ମିକ ଓ ନୈତିକ ଶକ୍ତି ଏହାର ଭିତ୍ତିଭୂମି ଥିଲା । ଗାନ୍ଧିଜୀ ନୈତିକ ଶକ୍ତିର ପ୍ରବକ୍ତା ଥିଲେ ଏବଂ ଏହି ଶକ୍ତିର ପ୍ରୟୋଗ ଦ୍ୱାରା ଜଣେ ବ୍ୟକ୍ତି ନିଜର ପରିବେଶରେ ପରିବର୍ତ୍ତନ ଆଣିପାରିବ ବୋଲି ସେ ଭାବୁଥିଲେ । ନୈତିକ ଶକ୍ତିର ପ୍ରୟୋଗ ଦ୍ୱାରା କ୍ଷମତାସୀନ ଗୋଷ୍ଠୀକୁ ନିୟନ୍ତ୍ରିତ କରିବା ଗାନ୍ଧିଜୀଙ୍କର ଏକ ଅଭିନବ ପ୍ରୟାସ ଥିଲା । ପାଶ୍ଚାତ୍ୟ ରାଜନୈତିକ ପରମ୍ପରାରେ ବାହ୍ୟ ଓ ଆନୁଷ୍ଠାନିକ ବା ସାଙ୍ଗଠନିକ ଚାପ ଉପରେ ଗୁରୁତ୍ୱ ଦିଆ ଯାଇଥାଏ । କିନ୍ତୁ ହିନ୍ଦୁ ପରମ୍ପରାକୁ ଅନୁସରଣ କରି ଗାନ୍ଧିଜୀ ବ୍ୟକ୍ତିର ଆଭ୍ୟନ୍ତରୀଣ ଓ ନୈତିକ ଶକ୍ତି ଉପରେ ଗୁରୁତ୍ୱ ଆରୋପ କରିଥିଲେ । ବ୍ୟକ୍ତିର ନୈତିକ ଜୀବନ ସମାଜ ଉପରେ ପ୍ରଭାବ ବିସ୍ତାର କରେ ବୋଲି ସେ ଭାବୁଥିଲେ । ସତ୍ୟାଗ୍ରହ ଆନ୍ଦୋଳନ ଚଳାଇବା ପାଇଁ ଯଥେଷ୍ଟ ଆତ୍ମସଂଯମ ଓ ନୈତିକ ବଳ ଆବଶ୍ୟକ । ଜୁଲୁ ବିଦ୍ରୋହ ଏବଂ ବୁଅର୍ ଯୁଦ୍ଧରେ ସ୍ୱେଚ୍ଛାସେବୀଭାବେ ଓ ଫୋନିକ୍ସ ବସତିର ବାସିନ୍ଦା ଭାବେ କାର୍ଯ୍ୟକରି ଗାନ୍ଧିଜୀ ଯଥେଷ୍ଟ ମନୋବଳ ଅର୍ଜନ କରିଥିଲେ ଏବଂ ଆତ୍ମସଂଯମ ତଥା ବ୍ରହ୍ମଚର୍ଯ୍ୟ ପାଳନ କରିବା ପାଇଁ ଶପଥ ନେଇଥିଲେ ।



ପରବର୍ତ୍ତୀ କାଳରେ ଗାନ୍ଧିଜୀ କହିଥିଲେ, 'ବ୍ରହ୍ମଚର୍ଯ୍ୟ ବିନା ସତ୍ୟାଗ୍ରହୀ ଦୀପ୍ତିମାନ ଓ ଆତ୍ମିକ ବଳରେ ବଳୀୟାନ୍ ହୋଇପାରେ ନାହିଁ, ନିରସ୍ତ୍ର ଭାବରେ ପୃଥିବୀର ସମ୍ମୁଖୀନ ହୋଇପାରେ ନାହିଁ ଏବଂ ଠିକ୍ ସମୟରେ ସାହସ ଏବଂ ଶକ୍ତିର ପ୍ରୟୋଗ କରିପାରେ ନାହିଁ ।' (ହରିଜନ ୧୩ ଅକ୍ଟୋବର ୧୯୪୦) ଗବେଷକମାନେ ବିଭିନ୍ନ ସୂତ୍ରରୁ ଗାନ୍ଧିଜୀ ସତ୍ୟାଗ୍ରହର ଚିନ୍ତାଧାରା ଆହରଣ କରିଛନ୍ତି ବୋଲି ମତ ଦିଅନ୍ତି, ଯଥା- ଜୈନ ଧର୍ମ, ଉପନିଷଦ, ପାତଞ୍ଜଳିଙ୍କ ଯୋଗସୂତ୍ର, ଭଗବଦ୍‌ଗୀତା, ବାଇବେଲ୍ (New Testament), ଲିଓ ଟଲଷ୍ଟୟ,

ଜନ୍ ରସ୍କିନ୍ ଓ ହେନରି ଡେଭିଡ୍ ଥରୋ । ଗୁଜରାଟୀ କବି ଶମଲଭଟଙ୍କ ଏକ କବିତାର ପ୍ରଭାବ ସମ୍ବନ୍ଧରେ ଗାନ୍ଧିଜୀ ଏକଦା ତାଙ୍କର ଜନୈକ ଆଦ୍ୟ ଜୀବନୀ ଲେଖକ ଜୋସେଫ୍ ଡୋକ୍‌ଙ୍କୁ କହିଥିଲେ । କବିତାଟିର ମର୍ମହେଲା - ଜଣେ ବ୍ୟକ୍ତି ତୁମକୁ ପିଇବା ପାଇଁ ପାଣି ଦେଲେ ଏବଂ ପ୍ରତିବଦଳରେ ତୁମେ ତାଙ୍କ ପିଇବା ପାଇଁ ପାଣି ଦେଲ, ଏଥିରେ କୌଣସି ବୈଶିଷ୍ଟ୍ୟ ନାହିଁ । କିନ୍ତୁ କ୍ଷତିକାରୀ ବ୍ୟକ୍ତିଙ୍କୁ ଉତ୍ତମ ବ୍ୟବହାର ଦେଖାଇବାରେ ପ୍ରକୃତ ମହନୀୟତା ନିହିତ । ଶୈଶବରେ ପୌରାଣିକ ମହାରାଜା ହରିଶ୍ଚନ୍ଦ୍ରଙ୍କ ତ୍ୟାଗ ଓ ସତ୍ୟନିଷ୍ଠାର କାହାଣୀ ଦ୍ୱାରା ଗାନ୍ଧିଜୀ ଗଭୀର ଭାବରେ ଅନୁପ୍ରାଣିତ ହୋଇଥିଲେ । ଯୁବକ ଗାନ୍ଧୀ ରାଇଚାନ୍ଦ ଭାଇ ନାମଧେୟ ଗୁଜରାଟୀ ମୋତି ବ୍ୟବସାୟୀ ଏବଂ କବିଙ୍କ ନୈତିକ ଚରିତ୍ରଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ ବୋଲି ତାଙ୍କ ଆତ୍ମଜୀବନୀରୁ ସୂଚନା ମିଳେ । ଏତଦ୍‌ବ୍ୟତୀତ ତିନି ଜଣ ମନନଶୀଳ ପାଶ୍ଚାତ୍ୟ ବୁଦ୍ଧିଜୀବିଙ୍କ ରଚନା ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶକୁ ବହୁତ ମାତ୍ରାରେ ପ୍ରଭାବିତ କରିଥିଲା, ଯଥା- ଋଷୀୟ ଔପନ୍ୟାସିକ ଲିଓ ଟଲଷ୍ଟୟ, ମାର୍କିନ୍ ରାଷ୍ଟ୍ରବିରୋଧୀ ଭାବୁକ ହେନରି ଡେଭିଡ୍ ଥରୋ ଓ ଇଂରେଜ ଲେଖକ ଜନ୍ ରସ୍କିନ୍ । ଟଲଷ୍ଟୟଙ୍କ ରଚିତ ପୁସ୍ତକ Kingdom of God is within you ଦ୍ୱାରା ସେ ଏଭଳି ଗଭୀର ଭାବରେ ପ୍ରଭାବିତ ହୋଇଥିଲେ ଯେ ନିଜକୁ ଟଲଷ୍ଟୟଙ୍କ ଅନୁଗାମୀ ଭାବି ତାଙ୍କ ସହିତ ଚିଠିପତ୍ର ବିନିମୟ କରିଥିଲେ । ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀଙ୍କ ଆନ୍ଦୋଳନକୁ ସମର୍ଥନ କରି ଟଲଷ୍ଟୟ ତାଙ୍କୁ ଏକ ଭବିଷ୍ୟତବାଣୀ ଦେଇଥିଲେ । ଏହି ବାଣୀଟି ହେଲା - ବିଶ୍ୱର ଦୀନଦଳିତ ଜନତାଙ୍କୁ ଏହି ଆନ୍ଦୋଳନ ଆଶାର ଆଲୋକ ଦେଖାଇବ । ରାଷ୍ଟ୍ର ବିରୋଧୀ ଚିନ୍ତାଧାରାର ମାର୍କିନ ପ୍ରବକ୍ତା ହେନେରୀ ଡେଭିଡ୍ ଥରୋ ୧୮୪୯ ମସିହାରେ ଏକ ସଭାରେ ଭାଷଣ ଦେଲାବେଳେ ଆଇନର ବିରୋଧୀତା (Civil disobedience) ପଦଟି ବ୍ୟବହାର କରିଥିଲେ । ତାଙ୍କ ମତରେ ସରକାର କିମ୍ବା କୌଣସି ଅନୁଷ୍ଠାନ ଉତ୍ତମ କାର୍ଯ୍ୟ କଲେ ସମସ୍ତେ ସେମାନଙ୍କ ସହିତ ସହଯୋଗ କରିବା ଉଚିତ କିନ୍ତୁ ସେମାନେ ଯଦି କ୍ଷତିକାରକ କାର୍ଯ୍ୟରେ ଲିପ୍ତ ହୁଅନ୍ତି ସେମାନଙ୍କୁ ବିରୋଧ କରିବା ଆବଶ୍ୟକ, ସେହି ବିରୋଧ ପାଇଁ ଆଇନକୁ ଅମାନ୍ୟ କରାଯାଇପାରେ ଏବଂ ହିଂସାର ମାର୍ଗ ମଧ୍ୟ ଅବଲମ୍ବନ କରାଯାଇପାରେ । ଦକ୍ଷିଣ ଆଫ୍ରିକାରେ ଥିଲାବେଳେ ଜନ୍ ରସ୍କିନ୍‌ଙ୍କ ପୁସ୍ତକ Unto this last ଅଧ୍ୟୟନ କରି ଗାନ୍ଧିଜୀ ନିମ୍ନଲିଖିତ ତିନୋଟି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ -

୧. ସାମୂହିକ କଲ୍ୟାଣରେ ବ୍ୟକ୍ତିଗତ କଲ୍ୟାଣ ନିହିତ ।

୨. ଆଇନଜୀବୀ ହୁଅନ୍ତୁ କିମ୍ବା ଧୋବା ଭଣ୍ଡାରୀ ହୁଅନ୍ତୁ, ସମସ୍ତଙ୍କ କର୍ମର ମର୍ଯ୍ୟାଦା ସମାନ କାରଣ ଶ୍ରମଦ୍ୱାରା ଜୀବିକା ଅର୍ଜନ କରିବା ପାଇଁ ସମସ୍ତଙ୍କର ସମାନ ଅଧିକାର ରହିଛି ।

୩. କୃଷକ ହୁଅନ୍ତୁ କିମ୍ବା ହସ୍ତକର୍ମଶିଳ୍ପୀ ହୁଅନ୍ତୁ ଯେଉଁମାନେ ଶାରୀରିକ ଶ୍ରମ କରନ୍ତି ସେମାନଙ୍କର ଜୀବନ ଆଦର୍ଶ ଜୀବନ ।

ଗାନ୍ଧିଜୀଙ୍କ ପ୍ରଦର୍ଶିତ ସତ୍ୟାଗ୍ରହ ମାର୍ଗକୁ କେତେକ ବ୍ୟକ୍ତି ସମାଲୋଚନା କରିଛନ୍ତି, କେତେକ ବ୍ୟକ୍ତି ଭୁଲ୍ ବୁଝିଛନ୍ତି ଏବଂ ବହୁବ୍ୟକ୍ତି ଭୁଲ ଭାବରେ ପ୍ରୟୋଗ କରିଛନ୍ତି । ତାଙ୍କ ନେତୃତ୍ୱରେ କଂଗ୍ରେସ ସତ୍ୟାଗ୍ରହ ଆନ୍ଦୋଳନ ଚଳାଉଥିଲା ବେଳେ କେତେକ ବ୍ୟକ୍ତି ହିଂସା ମାର୍ଗରେ ସମାନ୍ତରାଳ ଆନ୍ଦୋଳନ ଚଳାଉଥିଲେ । ଗାନ୍ଧିଜୀ ଯେଉଁଭଳି ଭାବରେ ବାରମ୍ବାର 'ଈଶ୍ୱର', 'ସତ୍ୟ' ଓ 'ଅହିଂସା' ଶବ୍ଦମାନ ପ୍ରୟୋଗ କରୁଥିଲେ କିଛି ଲୋକ ତାହା ଆଦୌ ପସନ୍ଦ କରୁନଥିଲେ । ସତ୍ୟାଗ୍ରହ ହେଉଛି ସତ୍ୟର ସକ୍ରିୟ ପ୍ରୟୋଗ କିନ୍ତୁ ଏଥିରେ ହିଂସାର ସ୍ଥାନ ନାହିଁ । ଯଦିଓ ପ୍ରଥମେ ଗାନ୍ଧିଜୀ 'ନିଷ୍କ୍ରିୟ ପ୍ରତିରୋଧ' (passive resistance) ପଦ ବ୍ୟବହାର କରିଥିଲେ, ପରବର୍ତ୍ତୀ କାଳରେ ସେ 'ନିଷ୍କ୍ରିୟ ପ୍ରତିରୋଧ' ଓ 'ସତ୍ୟାଗ୍ରହ' ମଧ୍ୟରେ ନିମ୍ନଲିଖିତ ପାର୍ଥକ୍ୟମାନ ଦର୍ଶାଇଥିଲେ :

୧. ନିଷ୍କ୍ରିୟ ପ୍ରତିରୋଧରେ ପ୍ରେମ ବା ଅହିଂସାଭାବ ନାହିଁ । ସତ୍ୟାଗ୍ରହରେ ହିଂସାଭାବର ସ୍ଥାନ ନାହିଁ ।

୨. 'ନିଷ୍କ୍ରିୟ ପ୍ରତିରୋଧ' ଅନେକ କ୍ଷେତ୍ରରେ ସଶସ୍ତ୍ର ପ୍ରତିରୋଧର ଅଗ୍ରଦୂତ ଭଳି କାର୍ଯ୍ୟ କରେ କିନ୍ତୁ ସତ୍ୟାଗ୍ରହରେ ସଶସ୍ତ୍ର ବିରୋଧର ପ୍ରଶ୍ନ ନାହିଁ ।

୩. 'ନିଷ୍କ୍ରିୟ ପ୍ରତିରୋଧ' କେବଳ ଶତ୍ରୁ ବିରୋଧରେ ପ୍ରୟୋଗ କରାଯାଏ କିନ୍ତୁ ସତ୍ୟାଗ୍ରହ ଆମେ ଯାହାଙ୍କୁ ଭଲ ପାଉଁ ଏପରିକି ଆତ୍ମୀୟ ସ୍ୱଜନମାନଙ୍କ କ୍ଷେତ୍ରରେ ପ୍ରୟୋଗ କରାଯାଇପାରେ । କାରଣ ସତ୍ୟାଗ୍ରହର ଉଦ୍ଦେଶ୍ୟ ହୃଦୟ ପରିବର୍ତ୍ତନ, ଶତ୍ରୁତା ସାଧନ ନୁହେଁ ।

ସତ୍ୟାଗ୍ରହ ହେଉଛି ଆତ୍ମିକ ଶକ୍ତି । ସତ୍ୟ ଓ ଅହିଂସାର ସାଧନା ଓ ଈଶ୍ୱର ବିଶ୍ୱାସ ମାଧ୍ୟମରେ ଏହି ଶକ୍ତିର ବିକାଶ ସମ୍ଭବ । ସତ୍ୟାଗ୍ରହର ମୂଳନୀତିକୁ ଅନୁସରଣ ନକରି ଏବେ ବହୁଲୋକ ନିଜକୁ ସତ୍ୟାଗ୍ରହୀ ବୋଲାଉଛନ୍ତି । ଫଳରେ ବିଭିନ୍ନ ପ୍ରକାର ବିଭ୍ରାଟ ସୃଷ୍ଟି ହେଉଛି । ଗାନ୍ଧିଜୀ ସତ୍ୟାଗ୍ରହୀମାନଙ୍କ ପାଇଁ କେତେଗୁଡ଼ିଏ ନୀତି ନିର୍ଦ୍ଧାରଣ କରିଥିଲେ । ଯଥା-

> ଗାନ୍ଧିଜୀ ନୈତିକ ଶକ୍ତିର ପ୍ରବକ୍ତା ଥିଲେ ଏବଂ ଏହି ଶକ୍ତିର ପ୍ରୟୋଗ ଦ୍ୱାରା ଜଣେ ବ୍ୟକ୍ତି ନିଜର ପରିବେଶରେ ପରିବର୍ତ୍ତନ ଆଣିପାରିବ ବୋଲି ସେ ଭାବୁଥିଲେ । ନୈତିକ ଶକ୍ତିର ପ୍ରୟୋଗ ଦ୍ୱାରା କ୍ଷମତାସୀନ ଗୋଷ୍ଠୀକୁ ନିୟନ୍ତ୍ରିତ କରିବା ଗାନ୍ଧିଜୀଙ୍କର ଏକ ଅଭିନବ ପ୍ରୟାସ ଥିଲା ।

୧. ସତ୍ୟନିଷ୍ଠା (ଗାନ୍ଧିଜୀଙ୍କ ମତରେ ସତ୍ୟ ହିଁ ଈଶ୍ୱର)

୨. ଅହିଂସା (ସତ୍ୟାଗ୍ରହୀ ନିଜେ ଶତ୍ରୁଦ୍ୱାରା ପୀଡ଼ିତ ହେଲେ ମଧ ଶତ୍ରୁକୁ ପୀଡ଼ା ଦିଏ ନାହିଁ) ।

୩. ସତ୍‌ମାର୍ଗରେ ଲକ୍ଷ୍ୟପ୍ରାପ୍ତି (ଉଦ୍ଦେଶ୍ୟ ଯେତେ ମହାନ୍ ହେଉ ପଛେ ତାହା ହାସଲ କରିବା ପାଇଁ ସତ୍ୟାଗ୍ରହୀ ଅସତ୍ ପନ୍ଥା ଅବଲମ୍ବନ କରେ ନାହିଁ) ।

୪. ଆତ୍ମସଂଯମ ଓ ବ୍ରହ୍ମଚର୍ଯ୍ୟ ପାଳନ

୫. ନିର୍ଭୀକତା (ସତ୍ୟାଗ୍ରହୀ କାହାକୁ ଭୟ କରେ ନାହିଁ କିମ୍ବା କାହାକୁ ଭୟ ପ୍ରଦର୍ଶନ କରେ ନାହିଁ । ଗାନ୍ଧିଜୀଙ୍କ ମତରେ କାପୁରୁଷ ପଣିଆଠାରୁ ହିଂସା ଶ୍ରେୟସ୍କର ଏବଂ କାପୁରୁଷପଣିଆ ସବୁଠାରୁ ବଡ଼ ହିଂସା ଭାବର ପରିଚାୟକ) ।

୬. ନିର୍ଲୋଭତା (ସତ୍ୟାଗ୍ରହୀ ଚୌର୍ଯ୍ୟ ବୃତ୍ତି ଅବଲମ୍ବନ କରେ ନାହିଁ, ସମ୍ପତ୍ତି ବାଡ଼ିର ମାଲିକ ହୁଏ ନାହିଁ କିମ୍ବା ଭବିଷ୍ୟତ ପାଇଁ ସଞ୍ଚୟ କରେ ନାହିଁ) ।

୭. ସତ୍ୟାଗ୍ରହୀ ଶାରୀରିକ ଶ୍ରମ କରିବା ପାଇଁ କୁଣ୍ଠାବୋଧ କରେ ନାହିଁ । ଜୀବିକା ନିର୍ବାହ କରିବା ପାଇଁ ସେ ଶାରୀରିକ ଶ୍ରମକୁ ଅପରିହାର୍ଯ୍ୟ ଭାବରେ ଗ୍ରହଣ କରେ ।

୮. ସ୍ୱଦେଶୀ (ସତ୍ୟାଗ୍ରହୀ ନିଜ ଦେଶ କିମ୍ବା ପରିବେଶର ସେବା କରେ ଏବଂ ନିଜ ଦେଶରେ ପ୍ରସ୍ତୁତ ଦ୍ରବ୍ୟମାନ ବ୍ୟବହାର କରେ) ।

୯. ସର୍ବଧର୍ମ ସମାନତ୍ୱ (ସତ୍ୟାଗ୍ରହୀ ସବୁଧର୍ମକୁ ସମାନ ଦୃଷ୍ଟିରେ ଦେଖେ ଏବଂ ଅନ୍ୟର ଧର୍ମ ପ୍ରତି ଅସହିଷ୍ଣୁ ହୁଏ ନାହିଁ) ।

୧୦. ଅସ୍ପୃଶ୍ୟତା ବିରୋଧ (ସବୁ ମଣିଷ ଈଶ୍ୱରଙ୍କର ସନ୍ତାନ ତେଣୁ ସତ୍ୟାଗ୍ରହୀର ଦୃଷ୍ଟିରେ କୌଣସି ବ୍ୟକ୍ତି ଅସ୍ପୃଶ୍ୟ ନୁହନ୍ତି) ।

ସତ୍ୟାଗ୍ରହର ପଥ ବିପଦଶଙ୍କୁଳ । ସତ୍ୟାଗ୍ରହୀର ବିଭିନ୍ନ ବାଧା ବିପଦ ସମ୍ବନ୍ଧରେ ଗାନ୍ଧିଜୀ ଏକଦା କହିଥିଲେ, 'ପ୍ରଥମେ ଲୋକେ ତୁମକୁ ହେୟ ବା ତୁଚ୍ଛ ଜ୍ଞାନ କରିବେ, ତା'ପରେ ପରିହାସ କରିବେ, ତା'ପରେ ଗାଳି ଦେବେ । ତା'ପରେ ଜେଲ ଦଣ୍ଡ ଦେବେ କିମ୍ବା ହତ୍ୟା କରିବା ପାଇଁ ଉଦ୍ୟମ କରିବେ । ଏହି ପାଞ୍ଚଟି ସୋପାନ ଅତିକ୍ରମ କଲାପରେ ସବୁଠାରୁ ବିପଜ୍ଜନକ ଅବସ୍ଥା ଆସିବ, ଯେତେବେଳେ ଲୋକେ ତୁମକୁ ସମ୍ମାନ ଦେବେ, ଏହି ଅବସ୍ଥାରେ ସାବଧାନ ନହେଲେ ତୁମେ ନିଜେ ହିଁ ନିଜର ଶତ୍ରୁ ହେବ ।'

ଗାନ୍ଧିଜୀଙ୍କ ମତରେ ସତ୍ୟାଗ୍ରହ ଏକ ସକ୍ରିୟ ସକାରାତ୍ମକ ଆନ୍ଦୋଳନ । ସ୍ୱାଧୀନତା ଆନ୍ଦୋଳନ କାଳରେ ସେ ସତ୍ୟାଗ୍ରହୀମାନଙ୍କ ପାଇଁ ଏକ ରଚନାତ୍ମକ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିଥିଲେ । ଏହି କାର୍ଯ୍ୟପନ୍ଥା ଠିକ୍ ଭାବରେ କାର୍ଯ୍ୟକାରୀ ହେଲେ କୌଣସି ବାହ୍ୟ ଆନ୍ଦୋଳନର ଆବଶ୍ୟକତା ରହିବ ନାହିଁ ବୋଲି ସେ ମତ ଦେଇଥିଲେ । କିନ୍ତୁ ସ୍ୱାଧୀନତାର ପ୍ରାକ୍‌କାଳରେ ବିଦେଶୀ ଔପନିବେଶିକ ସରକାରକୁ ହଟାଇବା ପାଇଁ ସତ୍ୟାଗ୍ରହ ଆନ୍ଦୋଳନ ନକାରାତ୍ମକ ରୂପ ଧାରଣ କରିଥିଲା ଏବଂ ବହୁତ ଲୋକେ ସତ୍ୟାଗ୍ରହକୁ ନୀତି ଭାବରେ ଗ୍ରହଣ ନକରି ଏକ ରାଜନୈତିକ ଆବଶ୍ୟକତା ଭାବରେ ଗ୍ରହଣ କରିଥିଲେ । ସ୍ୱାଧୀନ ଓ ଗଣତାନ୍ତ୍ରିକ ଭାରତରେ ଗାନ୍ଧିଜୀଙ୍କ ପ୍ରଦର୍ଶିତ ସତ୍ୟାଗ୍ରହ ମାର୍ଗରେ ରଚନାତ୍ମକ କାର୍ଯ୍ୟକ୍ରମକୁ ଆଗେଇ ନେବା ପାଇଁ ଯଥେଷ୍ଟ ଆବଶ୍ୟକତା ଏବଂ ସୁଯୋଗ ରହିଛି । ଏବେ ସାମାଜିକ ଓ ରାଜନୈତିକ ପରିସ୍ଥିତି ଦୁଇ ପରସ୍ପର ବିରୋଧୀ ଦିଗରେ ଗତି କରୁଛି । ରଚନାତ୍ମକ କାର୍ଯ୍ୟକ୍ରମ ଓ ଶୃଙ୍ଖଳିତ ବିକାଶ ପାଇଁ ଉଦ୍ୟମ ଚାଲିଥିଲା ବେଳେ ହିଂସାକାଣ୍ଡ ଓ ଧ୍ୱଂସାତ୍ମକ କାର୍ଯ୍ୟକଳାପ ସମାଜର ମୂଳଦୁଆକୁ ଦୋହଲେଇ ଦେଉଛି । ଏଭଳି ସ୍ଥିତିରେ ରଚନାତ୍ମକ କାର୍ଯ୍ୟକଳାପକୁ ଗଭୀର ଓ ବ୍ୟାପକ କରିବା ଆବଶ୍ୟକ, ଯାହାଫଳରେ ମଣିଷ ଭିତରେ ରହିଥିବା ସକାରାତ୍ମକ ଗୁଣଗୁଡ଼ିକର ବିକାଶ ସମ୍ଭବ ହେବ, ଧ୍ୱଂସାଭିମୁଖୀ ଶକ୍ତିମାନ ମୁଣ୍ଡ ଟେକିପାରିବେ ନାହିଁ ଏବଂ ଯୁଗଯୁଗ ଧରି ଦାରିଦ୍ର୍ୟ, ଅଜ୍ଞତା, ବ୍ୟାଧି, ସଂକୀର୍ଣ୍ଣତା ଓ ବୈଷମ୍ୟ ବିରୋଧରେ ମଣିଷର ସଂଗ୍ରାମ ଫଳବତୀ ହେବ ।

ଏମ୍.ଆଇ.ଜି.-୬୮
ବରମୁଣ୍ଡା ହାଉସିଂବୋର୍ଡ଼ କଲୋନୀ
ଭୁବନେଶ୍ୱର - ୭୫୧୦୦୩



# ବିପ୍ଳବୀ ଆନନ୍ଦଚନ୍ଦ୍ର : ଏକ ଅନିର୍ବାଣ ଶିଖା

ଡକ୍ଟର ବାସୁଦେବ ଦାସ

**ଭା**ରତବର୍ଷରେ କେଉଁ ଏକ କୋଣରେ ଖଣ୍ଡିଏ ଇଲାକା, ଯାହାର ନାମ କେନ୍ଦ୍ରାପଡ଼ାର କନିକା । ଏହି ପୁଣ୍ୟମାଟି ଖଣ୍ଡକରେ ଭାରତମାତାର ବରପୁତ୍ର ବିପ୍ଳବୀ ଆନନ୍ଦଚନ୍ଦ୍ରଙ୍କର ଜନ୍ମ । ବିପ୍ଳବୀ ଶବ୍ଦଟି ଖୁବ୍ କମ୍ ଲୋକଙ୍କ ପଛରେ ବିଶେଷଣ ରୂପେ ସ୍ଥାନ ପାଇଥାଏ । ଆନନ୍ଦଚନ୍ଦ୍ର ଜେନାଙ୍କ ସ୍ୱାଧୀନତା ସଂଗ୍ରାମରେ ପ୍ରମୁଖ ଭୂମିକା ଗ୍ରହଣ, ପ୍ରଜା ପୀଡ଼ନ ବିରୋଧରେ ସାମନ୍ତବାଦୀଙ୍କୁ ପଦାନତ କରିବାର ଆଗ୍ନେୟ ଶପଥ, ଦୂରଦୃଷ୍ଟି ସଂପନ୍ନ ବ୍ୟକ୍ତିତ୍ୱ, ସ୍ପଷ୍ଟବାଦିତା, ଦରଦୀ ହୃଦୟର ସଂବେଗ, ସ୍ୱାଧୀନ ଚେତନା ଓ ସର୍ବୋପରି ବୈପ୍ଳବିକ ସାହିତ୍ୟ ସର୍ଜନା ତାଙ୍କୁ 'ବିପ୍ଳବୀ' ପଦବୀରେ ବିଭୂଷିତ କରିଥିଲା ।

ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ବୋଷ, ଚିତ୍ତରଂଜନ ଦାସଙ୍କ ଭଳି ସର୍ବଭାରତୀୟ ସ୍ତରରୁ ଓଡ଼ିଶାର ମଧୁସୂଦନ ଦାସ ଓ ଗୋପବନ୍ଧୁ ଦାସ ପ୍ରମୁଖ ନେତୃବୃନ୍ଦ ଓ ମନୀଷିମାନଙ୍କ ସହିତ ସୁସଂପର୍କ ସ୍ଥାପନ କରି ଭାରତମାତାର ମୁକ୍ତିପଥରେ କଦମତାଲ କରିବା ସହିତ ଛିନ୍ନ-ବିଚ୍ଛିନ୍ନ ଉତ୍କଳର ଶ୍ରୀ ସାଧନ କ୍ଷେତ୍ରରେ ସଂକଳ୍ପବଦ୍ଧ ହୋଇ କାର୍ଯ୍ୟ କରିବା ତାଙ୍କର ଥିଲା ଯୁଗାନ୍ତକାରୀ ପଦକ୍ଷେପ । ଆନନ୍ଦଚନ୍ଦ୍ରଙ୍କ ଜୀବନାଲେଖ୍ୟ ଆଲୋଚନା କଲେ - ତାଙ୍କର ସଂଗ୍ରାମ ଓ ସାଧନା କେବଳ ଉଚ୍ଛଳ ଦେଶପ୍ରୀତିରେ ଭରପୂର ନଥିଲା । ପରନ୍ତୁ ଥିଲା ସେବା, ତ୍ୟାଗ ଓ ଶହୀଦ ହେବାର ରଂଗାୟିତ ଇତିହାସ । ଲେଖକ ଜାଣିବାରେ କେନ୍ଦ୍ରାପଡ଼ା ମାଟି ଉପରେ ଅସୀମ ବୀରତ୍ୱର ସହ ଲଢ଼େଇ କରିଥିବା ଦୁଇଜଣ ବ୍ୟକ୍ତିଙ୍କର ସର୍ବାଧିକ ତ୍ୟାଗ ଏବଂ ଇଂରେଜ ଶାସନର ପ୍ରତିହତ କରିବା ଲଢୁଆ ପଣ ଥିଲା, ଜଣେ ହେଉଛନ୍ତି ସଶସ୍ତ୍ର ମୁକ୍ତି ସଂଗ୍ରାମର ଅପ୍ରତିଦ୍ୱନ୍ଦୀ ଯୋଦ୍ଧା ଚନ୍ଦ୍ରଧ୍ୱଜ ଷଣ୍ଢ ଓ ଅନ୍ୟଜଣକ ହେଲେ ବିପ୍ଳବୀ ଆନନ୍ଦଚନ୍ଦ୍ର । ମାତ୍ର ଦୁଃଖର କଥା ଏହି ଦୁଇଜଣ ବୀରଙ୍କର ସମରସଜ୍ଜା ଉପଯୁକ୍ତ ରୀତିରେ ଆମ ଇତିହାସରେ ସାକାର ହୋଇପାରିନାହିଁ ।

କୁଆଁରୀ ମାଟି ଉପରେ ତାଜା ରକ୍ତର ଢେଉ ଭାଙ୍ଗି ବର୍ଷା ଓ ବଜ୍ରକୁ ବେଖାତିର କରି କନିକାର ଅଖ୍ୟାତ ପଲ୍ଲୀ ଡାଳିକାଏନ୍ଦାରେ ଖଗେଶ୍ୱର ଜେନାଙ୍କ ଘରେ ୧୮୮୪ ମସିହା ଜୁଲାଇ ମାସ ୧୭ ତାରିଖ ଦିନ ଗାଇ ଭୂମିଷ୍ଠ ହୋଇଥିଲେ ଆନନ୍ଦଚନ୍ଦ୍ର । ଅମା ରାତ୍ରି ତଥା ପୁତ୍ର କାଙ୍ଗାଳ ଖଗେଶ୍ୱର ଓ ସୁଲଭୀ ଦେବୀ ଦମ୍ପତିଙ୍କ ପ୍ରାଣରେ ଜ୍ୟୋତ୍ସ୍ନାୟିତ ଚନ୍ଦ୍ର ସଦୃଶ ଆତ୍ମ ପ୍ରକାଶ କରି ଆନନ୍ଦର ଢେଉ ଖେଳାଇ ଦେଇଥିଲେ 'ସିଂହ ଶିଶୁର ଠାଣି ବାଲ୍ୟରୁ ପ୍ରକଟିତ' : ହେବା ସଦୃଶ ଛାତ୍ରାବସ୍ଥାରୁ ଆନନ୍ଦ ଥିଲେ ସ୍ପଷ୍ଟବାଦୀ, ସେବା ପରାୟଣ ଓ ତ୍ୟାଗ ପରାୟଣ ।

ଆନନ୍ଦଚନ୍ଦ୍ର ଛାତ୍ରାବସ୍ଥାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିବାର ପରିକଳ୍ପନା କରି ଟ.୩୦୦.୦୦ ଚାନ୍ଦା ଆଦାୟ କରିଥିଲେ । ପୁତ୍ରର ସ୍ୱାଧୀନ ଚେତନା ବଂଗଳାର ଜୈନିକ ପୋଲିସ କର୍ମଚାରୀ ଖଗେଶ୍ୱରଙ୍କୁ ବିସ୍ମିତ କରି ଦେଇଥିଲା । ସେ ମଧ୍ୟ ତୋଷାମଦରୁ ନିଜକୁ କ୍ଷାନ୍ତ କରିଥିଲେ । ଦୈବାତ୍ ଏକ ମିଥ୍ୟା ଅଭିଯୋଗରେ ଖଗେଶ୍ୱର ଦଣ୍ଡିତ ହୋଇ ଚାକିରି ଛାଡ଼ି କଲିକତା ନଗରୀସ୍ଥ ଜଗଦଳପୁରରେ ଏକ ଲୁହା ଗୋଦାମ କରିଥିଲେ । ଆନନ୍ଦଚନ୍ଦ୍ର ପିତାଙ୍କ ନିକଟରେ ରହି ଉଚ୍ଚଶିକ୍ଷା ଅର୍ଜନ କରୁଥାନ୍ତି । ଖଗେଶ୍ୱରଙ୍କ ପ୍ରତି ଅନ୍ୟାୟ ଦଣ୍ଡବିଧାନ ଆନନ୍ଦଚନ୍ଦ୍ରଙ୍କ ମନରେ ଗଭୀର ରେଖାପାତ କରିଥିଲା । ଏଣ୍ଟ୍ରାନ୍ସ ପାଶ୍ ପରେ ଆନନ୍ଦଚନ୍ଦ୍ର ଦେଶପ୍ରୀତିରେ ଉଦ୍‌ବୁଦ୍ଧ ହୋଇ କଂଗ୍ରେସରେ ଯୋଗ ଦେଲେ । ଇତ୍ୟବସରରେ ବଙ୍ଗଳାର ବିଶିଷ୍ଟ କଂଗ୍ରେସ ନେତୃବୃନ୍ଦ ଆଚାର୍ଯ୍ୟ ପ୍ରଫୁଲ୍ଲ ରାୟ, ଅରବିନ୍ଦ ଘୋଷ, ଚିତ୍ତରଂଜନ ଦାସ ଓ ରାସବିହାରୀଙ୍କ ପରି ମହାନ୍ ବ୍ୟକ୍ତିଙ୍କ ସଂସ୍ପର୍ଶରେ ସେ ଆସିଥିଲେ ।

୧୯୧୨ରେ ବଂଗ ଭଂଗ ଆନ୍ଦୋଳନରେ ସାମିଲ ହୋଇ ଆନନ୍ଦଚନ୍ଦ୍ର କାରାବରଣ କରି ଅଲିପୁର ଜେଲ୍‌ରେ ଏକବର୍ଷ କାରାଦଣ୍ଡ ଭୋଗ କରିଥିଲେ । କାରାମୁକ୍ତ ପରେ ପିତା ଆନନ୍ଦଚନ୍ଦ୍ରଙ୍କୁ ଆଣି ବିବାହ ଦେଇ ସଂସାର ବନ୍ଧନରେ ବାନ୍ଧି ଦେଲେ । ମାତ୍ର ରାଧାନାଥ ରାୟଙ୍କ ଭାଷାରେ-

'ଯେ ଅଟେ ଜଗତ ଜନର ମନନୟନ ତାରା
ଅପ୍ରକଟ ହୋଇ ରହିବା ପାଇଁ କାହିଁ ତା' ଚାରା ।'

ଦେଶମାତୃକାର ସେବାର ଆହ୍ୱାନରେ ସେ ବାହାରିଲେ । ତାଙ୍କୁ ତେଲ ଲୁଣର ସଂସାର ବାନ୍ଧି ପାରିଲା ନାହିଁ । ୧୯୧୪ ମସିହାରେ ସମ୍ବଲପୁରଠାରେ ଆୟୋଜିତ ଉତ୍କଳ ସମ୍ମିଳନୀରେ ଯୋଗଦାନ କରିଥିଲେ । ଆନନ୍ଦଚନ୍ଦ୍ରଙ୍କ ଆହ୍ୱାନକ୍ରମେ କଲିକତାର ପ୍ରବାସୀ ଓଡ଼ିଆମାନଙ୍କ ନିମନ୍ତ୍ରଣ ପାଇ ଗୋପବନ୍ଧୁ କଲିକତା ଯାଇଥିଲେ ଏବଂ ଆନନ୍ଦଚନ୍ଦ୍ର ଜେନା ତାଙ୍କ ସହିତ ଥିଲେ । ୧୯୧୭ ମସିହାରେ

ମହାତ୍ମା ଗାନ୍ଧୀଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସାବରମତୀ ଆଶ୍ରମରେ ଆନନ୍ଦଚନ୍ଦ୍ର ଯୋଗଦାନ କରିଥିଲେ । ୧୯୧୯ ମସିହାରେ ଗୋପବନ୍ଧୁ ଦାସ ଓ ମଧୁସୂଦନ ଦାସଙ୍କୁ ସେମାନଙ୍କର ତ୍ୟାଗ ପାଇଁ ଆଚାର୍ଯ୍ୟ ପ୍ରଫୁଲ୍ଲ ଦାସ, ଉତ୍କଳମଣି ଓ ଉତ୍କଳଗୌରବ ଉପାଧିରେ ଭୂଷିତ କରିଥିଲେ । ତା'ପଛରେ ଆନନ୍ଦଚନ୍ଦ୍ରଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା, ୧୯୧୪ ଓ ୧୯୧୯ରେ କନିକାରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା । ଆନନ୍ଦଚନ୍ଦ୍ର, ଉତ୍କଳମଣି ଗୋପବନ୍ଧୁ ଦାସ ଓ ତାଙ୍କ ସହକର୍ମୀଙ୍କୁ ଆଣି ଆଳି କନିକାରେ ଚୁଡ଼ା, ଚାଉଳ ବାଣ୍ଟିଥିଲେ । ଏହାର ସୁଯୋଗ ନେଇ କନିକାର ରାଜା ଇଂରେଜ କମିଶନଙ୍କୁ ପ୍ରବର୍ତ୍ତାଇ ସମସ୍ତ ପ୍ରକାର ରିଲିଫ୍ ବଣ୍ଟନ କରିବାର କ୍ଷମତା ହାସଲ କରିଥିଲେ । ରାଜା ସାହେବଙ୍କ ବିନା ଅନୁମତିରେ ଚାଷୀ ଧାନ ଅମାର ଖୋଲି ପାରିବେ ନାହିଁ । ଏହିଭଳି କ୍ରମଶଃ ରାଜ ଅତ୍ୟାଚାରରେ ପ୍ରଜାମାନେ ପୀଡ଼ିତ ହେବାକୁ ଲାଗିଲେ । କନିକା ରାଜା ରାଜେନ୍ଦ୍ର ନାରାୟଣ କେତେକ ଦେଶ ହିତକର କାର୍ଯ୍ୟ କରିଥିଲେ ହେଁ କନିକାର ଜନସାଧାରଣଙ୍କପ୍ରତି ତାଙ୍କର ଶୋଷଣ ଓ ଅତ୍ୟାଚାର ସୀମା ଲଙ୍ଘନ କରିଥିଲା ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ କଟକରେ ଗିରଫ ସେ ହୋଇଥିଲେ ଏବଂ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସୂତାକଟା କେନ୍ଦ୍ରକୁ ନଷ୍ଟ କରି ଦେଇଥିଲେ । ଜେନାଙ୍କ ସହିତ ତାଙ୍କ ପରିବାରର ଛଅଜଣ ଓ ଅନ୍ୟ ତେଇଶି ଜଣଙ୍କୁ ଗିରଫ କରାଯାଇଥିଲା ଓ କେନ୍ଦ୍ରାପଡ଼ାଠାରେ ଅନ୍ୟମାନଙ୍କ କେଶ ବିଚାର କରି ଛାଡ଼ି ଦେଇଥିବାସ୍ଥଳେ ତାଙ୍କ ପିଲାମାନଙ୍କୁ କଟକ ଓ ତାଙ୍କୁ ବ୍ରହ୍ମପୁର ଜେଲକୁ ପଠାଯାଇଥିଲା ।

୧୯୨୦ ମସିହାରେ କଲିକତାଠାରେ ଆୟୋଜିତ କଂଗ୍ରେସ ଅଧିବେଶନ ଓ ୧୯୨୦ ଡିସେମ୍ବର ମାସରେ ନାଗପୁରଠାରେ କଂଗ୍ରେସ ଅଧିବେଶନରେ ଆନନ୍ଦଚନ୍ଦ୍ର ଗୋପବନ୍ଧୁଙ୍କ ସାଙ୍ଗରେ ଯୋଗଦାନ କରିଥିଲେ । ଅଧିବେଶନ ପରିସମାପ୍ତି ପରେ ସ୍ୱରାଜ ଦଳ ତରଫରୁ ଆନନ୍ଦଚନ୍ଦ୍ର ଚିତ୍ତରଂଜନ ଦାସଙ୍କ ନିକଟକୁ ଛତିଶଟି ଗଡ଼ଜାତ ସଂପର୍କରେ ଲେଖିବା ସଂଗେସଂଗେ କନିକା ପ୍ରଜାଙ୍କ ଉପରେ ରାଜେନ୍ଦ୍ର ନାରାୟଣ ଭଂଜଦେଓ ଯେଉଁ ଚଉଷଠି ପ୍ରକାର ଶୁଳ୍କ ଲଦି ଦେଇଥିଲେ, ସେ ସଂପର୍କରେ ଦୃଷ୍ଟି ଆକର୍ଷଣ କରିଥିଲେ । ଆନନ୍ଦଚନ୍ଦ୍ର ୧୯୨୧ ମସିହାରେ ଗାନ୍ଧିଜୀଙ୍କ ଆଗମନ କାଠଯୋଡ଼ି ବାଲିପଠାରେ ଆୟୋଜିତ ସଭାରେ କନିକାର ଦୁଃଖଦୁର୍ଦ୍ଦଶା ମହାତ୍ମା ଗାନ୍ଧୀଙ୍କୁ ଅବଗତ କରାଇଥିଲେ । ଆନନ୍ଦଚନ୍ଦ୍ରଙ୍କ ଲେଖାପାଠ କରି ଗାନ୍ଧିଜୀ ଗୋପବନ୍ଧୁଙ୍କୁ ଏହି ଲେଖାଟି ଛାପି ଦେବା ପାଇଁ କହିଥିଲେ । କନିକାର ବେଆଇନ କର ଓ ଅତ୍ୟାଚାରକୁ ଭିତ୍ତି କରି ଆନନ୍ଦଚନ୍ଦ୍ରଙ୍କ ସାଗ୍ନିକ ଲେଖନୀରୁ ଜନ୍ମ ନେଲା 'ଦୁଃଖିନୀ କନିକା' ୧୯୨୨ ମସିହାରେ । ଏଥିସହିତ ଆନନ୍ଦଚନ୍ଦ୍ରଙ୍କ ସାଂଗଠନିକ ଶକ୍ତି ବଳରେ କନିକାରେ ଏକ ଐତିହାସିକ ପ୍ରଜାଆନ୍ଦୋଳନର ସୂତ୍ରପାତ ଘଟିଥିଲା । ରାଜା ସାହେବ ସଶସ୍ତ୍ର ଫୌଜ ମଗାଇ କନିକାର କାଟଣା ଆମ୍ବତୋଟାରେ ଅନୁଷ୍ଠିତ ପ୍ରଜାମେଳିକୁ ନିର୍ମମ ଭାବେ ଗୁଳି ବର୍ଷଣ କରିଥିଲେ । ମେଘପୁର ଗ୍ରାମ ନିକଟବର୍ତ୍ତୀ ପୁଷ୍କରିଣୀ ନିକଟରେ ଘଟଣାସ୍ଥଳରେ ବାସୁସେଠୀ ଓ ବିସୁନୀ ମଲ୍ଲୁଆଳ ଦୁଇଜଣ ପ୍ରଜା ପ୍ରଥମ ଶହୀଦ ହୋଇଥିଲେ । ଆନନ୍ଦଚନ୍ଦ୍ରଙ୍କୁ ଘଟଣାସ୍ଥଳୀରୁ ଗିରଫ କରି ରାଜବାଟୀରେ ବନ୍ଦୀ କରି ରଖିଲେ ଏବଂ ତାଙ୍କର ବୟାଳିଶି ଏକର ସଂପତ୍ତିକୁ ବାଜ୍ୟାପ୍ତ କରିଦେଲେ । କନିକାରୁ ଆନନ୍ଦଚନ୍ଦ୍ରଙ୍କୁ କେନ୍ଦ୍ରାପଡ଼ା ଓ ପରେ କଟକ ଜେଲକୁ ପଠାଇ ଦିଆଗଲା । ଦୀର୍ଘ ଏକ ବର୍ଷ ପରେ ବିଚାରରେ ଆନନ୍ଦଚନ୍ଦ୍ର ଦୁଇଶହ ଟଙ୍କା ଜୋରିମାନା ସହିତ ତା.୪.୦୬.୨୨ଠାରୁ ତା.୦୧.୦୬.୨୩ରିଖି ପର୍ଯ୍ୟନ୍ତ କାରାଦଣ୍ଡ ଭୋଗ କରିଥିଲେ । ଏହି ସମୟରେ ରାଜଗୁଣ୍ଡାମାନେ ଜେନାଙ୍କ ଘରକୁ ଲୁଟକରି ତାଙ୍କୁ ସର୍ବସ୍ୱାନ୍ତ କରି ଦେଇଥିଲେ । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ କଟକରେ ଗିରଫ ସେ ହୋଇଥିଲେ ଏବଂ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସୂତାକଟା କେନ୍ଦ୍ରକୁ ନଷ୍ଟ କରି ଦେଇଥିଲେ । ଜେନାଙ୍କ ସହିତ ତାଙ୍କ ପରିବାରର ଛଅଜଣ ଓ ଅନ୍ୟ ତେଇଶି ଜଣଙ୍କୁ ଗିରଫ କରାଯାଇଥିଲା ଓ କେନ୍ଦ୍ରାପଡ଼ାଠାରେ ଅନ୍ୟମାନଙ୍କ କେଶ ବିଚାର କରି ଛାଡ଼ି ଦେଇଥିବାସ୍ଥଳେ ତାଙ୍କ ପିଲାମାନଙ୍କୁ କଟକ ଓ ତାଙ୍କୁ ବ୍ରହ୍ମପୁର ଜେଲକୁ ପଠାଯାଇଥିଲା । ସେଠାରୁ ମୁକ୍ତିଲାଭ ପରେ କେନ୍ଦ୍ରାପଡ଼ା କଚେରୀ ନିକଟରେ ଏକ ପୁସ୍ତକାଳୟ ସ୍ଥାପନ କରି ସେ ଜୀବିକା ନିର୍ବାହ କରୁଥିଲେ । ଏହି ସମୟରେ କନିକା ରାଜାଙ୍କ ଅଧୀନସ୍ଥ ସମସ୍ତ ଦେବ ଭୋଗ୍ୟ ସଂପତ୍ତି ଦେବୋତ୍ତର କମିଶନରଙ୍କୁ ହସ୍ତାନ୍ତର କରିବା ପାଇଁ ବହୁ ସ୍ୱାକ୍ଷର ସମ୍ବଳିତ ଏକ ଆବେଦନପତ୍ର ଦାଖଲ କରିଥିଲେ । କନିକା ରାଜା ଏଥିରେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଚକ୍ରାନ୍ତ କରି ଲୋକ ପଠାଇ ଜେନାଙ୍କୁ ବିଷ ପ୍ରୟୋଗ କରାଇଥିଲେ । ସମସ୍ତ ଚେଷ୍ଟା ସତ୍ତ୍ୱେ ୧୯୬୪ ମସିହା ଜାନୁଆରୀ ୨୭ ତାରିଖରେ ଏହି ଜ୍ୱାଳାମୟୀ ଆଗ୍ନେୟ ବ୍ୟକ୍ତିତ୍ୱର ନିର୍ବାଣ ଘଟିଥିଲା ।

ସ୍ୱର୍ଗୀୟ ଜେନାଙ୍କର 'ଦୁଃଖିନୀ କନିକା' କାବ୍ୟ ଓଡ଼ିଶାର 'ସମର ସାହିତ୍ୟ'ରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ । ସେହିପରି ଭକ୍ତ ପ୍ରହ୍ଲାଦ କାବ୍ୟରେ କବିଙ୍କର ସ୍ପଷ୍ଟବାଦିତା ସାହସିକତା ଓ ଦେଶପ୍ରିୟତାର ଉଜ୍ଜ୍ୱଳ ଦୃଷ୍ଟି ଶକ୍ତି ରହିଅଛି । ଏହାଛଡ଼ା ଶହେ କୋଡ଼ିଏଟି ଦେଶାତ୍ମବୋଧ ରଚନା ତାଙ୍କୁ ଜଣେ ଜାତୀୟବାଦୀ କବି ଭାବରେ ପ୍ରତିଷ୍ଠା ଦେଇଛି । କବି ଓ ବିପ୍ଳବୀ ଆନନ୍ଦଚନ୍ଦ୍ର ଓଡ଼ିଶାରେ ଏକ ଦେଦୀପ୍ୟମାନ ଶିଖା ଯାହାର ଉପସଂହାର ଟାଣି ହେବ ନାହିଁ ।

ଖଡିଅଙ୍ଗ
କେନ୍ଦ୍ରାପଡ଼ା

# ଉତ୍କଳ ସନ୍ତାନ

ଜାତୀୟ ଗୌରବ ମଧୁସୂଦନ ଦାସ

ତୁ ପରା ବୋଲାଉ    ଉତ୍କଳ ସନ୍ତାନ ?
ତେବେ କିମ୍ବା ତୁହି ଭୀରୁ !
ତୋହର ଜନନୀ    ରୋଦନ କରିଲେ
କହିବାକୁ କିମ୍ପା ଡରୁ ?
ତୋ' ପୂର୍ବ ପୁରୁଷେ    ବୀର ପଣିଆରେ
ଲଭିଥିଲେ କେତେ ଖ୍ୟାତି
ହାକିମ ନିକଟେ    ଦୁଃଖ କହିବାକୁ
କିମ୍ପା ଥରେ ତୋ'ର ଛାତି ?
ତୋ' ପୂର୍ବ ପୁରୁଷେ    ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ,
ତାଙ୍କରି ଔରସେ    ଜନ୍ମ ହୋଇ ତୁହି
କେଉଁ ଗୁଣେ ତାଙ୍କୁ ସରି ?
ତୁ ମନେ ଭାବୁଛୁ    ତୋଷାମଦ କରି
ବଢ଼ାଇବୁ ଜାତି ମାନ,
ତୋଷାମଦିଆର    କୁକୁର ପ୍ରକୃତି
ଅଇଁଠା ପତରେ ଧ୍ୟାନ ।
ଜାତିର ଉନ୍ନତି    ହେବ କିରେ ଭାଇ
ସ୍ୱାର୍ଥକୁ ଜଗତ ମଣି ?
ଗୋଦର ଗୋଡ଼ରେ    ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ?
ଜାତିର ଉନ୍ନତି    ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,
ଶାଗୁଣା ବିଲୁଆ    ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ?

- - -

# କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

କବିଶେଖର ଚିନ୍ତାମଣି ମହାନ୍ତି

ମହାତୀର୍ଥ ମହାସ୍ୱର୍ଗ ଉତ୍କଳପ୍ରଦେଶ,
ବିହରନ୍ତି ସଦା ଯହିଁ ହଳୀ ହୃଷୀକେଶ,
ଜନ୍ମିଲେ ଯା' ଅଙ୍କେ ତୁମ୍ଭ ବାପେ ଗୋସବାପେ
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ସୁଧାକଳ୍ପ ପୁଷ୍ଟିକର ଯା'ର ଜଳବାୟୁ
ପ୍ରବର୍ଦ୍ଧନ କରେ ନିତ୍ୟ ଜୀବ ପରମାୟୁ
ଏକାଳେ ସେ ଅବନତ ତୀବ୍ର ବ୍ରହ୍ମଶାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ନିପଟ ଓଡ଼ିଆ ପୂର୍ବ ପୁରୁଷେ ତୁମ୍ଭର,
ଆକୁମାରୀ ହିମାଳୟ ହୋଇ ଥରହର,
କମ୍ପି ଉଠୁଥିଲା ଦିନେ ତାହାଙ୍କ ପ୍ରତାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ଯେ ଦେଶର ଯଶୋଗୀତି ଭାଷା ଅତିକ୍ରମେ,
ଜଗତ ଯା ପାଦମୂଳେ ନମେ ସସମ୍ଭ୍ରମେ,
ଜନ୍ମିଲ ସେ ଦେଶେ ତୁମ୍ଭେ ତା'ର କେଉଁ ପାପେ
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ଜ୍ଞାନଧର୍ମ ବିତରଣେ ସଦା ଯେ ଅକୁଣ୍ଠ,
ଶାସ୍ତ୍ରୀୟ ଅଭିଧା ଯା'ର ମର୍ତ୍ତ୍ୟ ବଇକୁଣ୍ଠ,
ସନ୍ତାପିତ ଏବେ ହାୟ ଅଭାବ-ସନ୍ତାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ସ୍କନ୍ଧକଳ୍ପ ଉତ୍କଳୀୟ ବୀର ଜଣେ ଜଣେ,
ନକରନ୍ତି ଭୟରଣେ ଅଥବା ମରଣେ,
ନମାରି ଅରି ଯା' ଖଣ୍ଡା ଫେରେ ନାହିଁ ଖାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ବୀରତ୍ୱର ବରଭୂଷା ଯେଉଁ ବୀରମାନେ,
ନଥିଲା ଅସାଧ ଶବ୍ଦ ଯା'ଙ୍କ ଅଭିଧାନେ,
ତାଙ୍କରି ବଂଶଜ ମତ୍ତ ଆଳସ୍ୟ ଆଳାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ତାହାଙ୍କର ରୋଷ-ଦୀପ୍ତ ଆରକ୍ତ ନୟନ,
କରୁଥିଲା ଶତ୍ରୁ ପିଣ୍ଡୁ ଜୀବନ ଶୋଷଣ,
ମାତିଅଛ ତୁମ୍ଭେ ହାୟ ବିଫଳ ପ୍ରଳାପେ,
କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ?

ମୁଁ କିଏ, ପାଶୋରି ମତ୍ତ 'ମୁଁ' ତ୍ୱରେ କେବଳ
କର୍ମ ତେଜି କପାଳକୁ କରିଛ ସମ୍ବଳ,
ଚିହ୍ନି ନାହଁ ଛି ଛି ନିଜ ପଣ ଗୋସବାପେ,
କି ରୂପେ ଚିହ୍ନିବ ଭଲା ଆପଣାକୁ ଆପେ ?

ନିବିଡ଼ ସନ୍ଧ୍ୟାକୁ ଭ୍ରମେ ମଣୁଅଛ ଉଷା
ଅନୁକର ପର ଭାଷା ପର ବେଶଭୂଷା ।
ମଣୁଅଛ ହାସ୍ୟରୋଳ ବ୍ୟାକୁଳ ବିଳାପେ
କେମନ୍ତେ ଚିହ୍ନିବ ହାୟ ଆପଣାକୁ ଆପେ ?



# ଉତ୍କଳ ପ୍ରଭାତ

ପଲ୍ଲୀକବି ନନ୍ଦକିଶୋର ବଳ

ଉଠ ଗୋ ଦୁଃଖିନୀ ଉତ୍କଳ ଜନନି !
ପାହିଛି ବିଷାଦ ଯାମିନୀ ତବ,
ଉଠି ଦେଖ ନଭେ ନବ ଦିନମଣି
ଶୁଣ ସୁପ୍ରଭାତେ ବିହଙ୍ଗ ରବ,
ନବୀନ ଚେତନେ ନବୀନ ଉଦ୍ୟମେ
ଜାଗି ଉଠିଛନ୍ତି ଜଗତ ଜନ,
କିମ୍ପାଇଁ କହଗୋ ପ୍ରିୟ ମାତୃଭୂମି
ଅଛୁ ଅବସାଦ-ନିଦ୍ରା ମଗନ ?
ଅବସାଦ ତେଜି ଅଳପ ଅଳପ
ଜାଗୁଛନ୍ତି ନିଜେ ପ୍ରିୟ ଭାରତ,
ବଙ୍ଗ ମହାରାଷ୍ଟ୍ର ଦ୍ରାବିଡ଼ ପଞ୍ଜାବ
ନବ ଜ୍ଞାନ-ଭାନୁ-କର ପ୍ରାପତ ।
କିମ୍ପା ତେବେ ପ୍ରିୟ ଉତ୍କଳ ଜନନୀ
ଅବସାଦ-ନିଦ୍ରା ନ ଭାଙ୍ଗେ ତବ,
ଫୁଟିଛି ପବିତ୍ର ଧର୍ମ ସୁକୁସୁମ
ଶୁଭୁଅଛି ପୁଣ୍ୟ ପ୍ରଭାତ ସ୍ତବ,
ବିଜ୍ଞାନ-ଭାସ୍କର ସମୁଜ୍ଜ୍ୱଳ କରେ
ଧରାମୁଖ ଛବି ଦିଶେ ଉଜ୍ଜ୍ୱଳ ।

ବିଜୟୀ ହୁଅନ୍ତି ସେହିମାନେ ଯେହୁ
ଜୀବନ ସଂଗ୍ରାମେ ଖଟାନ୍ତି ବଳ,
ଉନ୍ନତ ସବଳ କର୍ମିଷ୍ଠ ଜଗତେ
ଏ ଭାରତ ସର୍ବ ପୃଷ୍ଟେ ପତିତ,
ତୁ ପୁଣି ଅଧମ ଦେଶରେ ଅଧମ
ତେଣୁ ସବୁଠାରେ ତୁହି ଲାଞ୍ଛିତ ।
ତଥାପି ନୈରାଶ୍ୟ କଥା ନ କହିବି,
ଚିର ଅବସନ୍ନ ସୁପ୍ତ ସ୍ୱଦେଶ,
କାହା ଚିର ଦିନ ନଯାଏ ସମାନ,
ହେବ ଦିନେ ତବ ଦିନତା ଶେଷ ।
କର୍ମ ହିଁ ଜୀବନ କର୍ମ ହିଁ ଉଦ୍ଦେଶ୍ୟ
ଜଡ଼ତା ଜୀବନ୍ତ ମରଣ ସିନା,
ଦୁର୍ଲ୍ଲଭ ମାନବ ଜନମ ବିଅର୍ଥ
ଜୀବନ କର୍ତ୍ତବ୍ୟ ସାଧନ ବିନା ।
ଉଠ ପ୍ରିୟ ଭ୍ରାତା ଉଠଗୋ ଭଗିନୀ
ମାତୃଭୂମି ଦୁଃଖ ଦୀନତା ନାଶ,
ବିନୀତ ଚିତ୍ତରେ ତବ ପୂତ ପଦେ
ନିବେଦଇ କବି ପ୍ରାଣ ଉଚ୍ଛ୍ୱାସ ।



# ଆମ ଘର ଏଇ ଓଡ଼ିଶା ରାଇଜେ...

ପଣ୍ଡିତ ଗୋଦାବରୀଶ ମିଶ୍ର

ଆମ ଘର ଏଇ ଓଡ଼ିଶା ରାଇଜେ,
ଫିରିଙ୍ଗି ତହିଁରେ ରାଜା,
ଗୋରା ଦଶ ଜଣେ ରାଇଜ ଚାଲେ ଲୋ
କୋଟିଏ ହେବେ ପରଜା ।

ଆଜି ସିନା ଦେଶ ହୀନ ହୋଇଗଲା
ବଳ ବୁଦ୍ଧି କଉଶଳେ,
କେତେ ଖ୍ୟାତି, ଆହା କାଲିଟି ପରିଲୋ
ଅରଜି ଥିଲା ମହୀରେ ।

ପାଞ୍ଚଶ ବରଷୁଁ କିଛି ଊଣା ହେବ
ଫିରିଙ୍ଗି ନଥିଲା ଆସି,
ସେତେବେଳେ ଥିଲେ ଓଡ଼ିଆ ରାଜାଲୋ
ଓଡ଼ିଶା ରାଇଜବାସୀ ।

କେତେ ରାଜାଙ୍କୁ ସେ ବଳେ କରି ବଶ
ହୋଇଥିଲେ ଗଜପତି,
ନାନାଦେଶ ଜିଣି, ଟେକି ତ ଥିଲେ ଲୋ
ମହୀରେ ବିଜୟ ଛତି ।

# ଉତ୍କଳ ପ୍ରସଙ୍ଗ

The Utkal Prasanga

୬୪ ଭାଗ    ୯ମ ସଂଖ୍ୟା    ଚୈତ୍ର-ବୈଶାଖ    ଅପ୍ରେଲ - ୨୦୦୮

**ସୁରେଶଚନ୍ଦ୍ର ପଟ୍ଟନାୟକ**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଗୁରୁକଲ୍ୟାଣ ମହାପାତ୍ର**
ମୁଖ୍ୟ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ
ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ପ୍ରତିଖଣ୍ଡ : ଟ.୫.୦୦**

ପ୍ରଚ୍ଛଦପଟ

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ବରପୁତ୍ରମାନଙ୍କର ଫଟୋଚିତ୍ର :

୧. ଉତ୍କଳ ଗୌରବ ମଧୁସୂଦନ
୨. ଉତ୍କଳମଣି ଗୋପବନ୍ଧୁ
୩. ବ୍ୟାସକବି ଫକୀରମୋହନ
୪. ମହାରାଜା କୃଷ୍ଣଚନ୍ଦ୍ର ଗଜପତି
୫. କବି ଗଂଗାଧର ମେହେର
୬. ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ
୭. ରାମଚନ୍ଦ୍ର ମର୍ଦ୍ଦରାଜ



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୨୫୩୦୨୧୧

# ସୂଚୀ


| | | | |
|---|---|---|---|
| • ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ | ଡଃ ଅରୁଣ କୁମାର ମହାନ୍ତି | --- | ୧ |
| • ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର କଥା | ହରିହର ମହାପାତ୍ର (ବାୟା) | --- | ୪ |
| • ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅନ୍ତରାଳେ | ସୁଷମା ମହାନ୍ତି | --- | ୬ |
| • ଆମ ମାତୃଭାଷାର ବର୍ତ୍ତମାନ ଓ ଭବିଷ୍ୟତ | ଚନ୍ଦ୍ରଶେଖର ଦାସବର୍ମା | --- | ୮ |
| • ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ କନିକା ରାଜା ରାଜେନ୍ଦ୍ର ନାରାୟଣଙ୍କ ଭୂମିକା | ବଂଶୀଧର ଭୋଇ | --- | ୧୦ |
| • ଚୈତ୍ର ରଥଯାତ୍ରା | ନିରଞ୍ଜନ ଦାଶ | --- | ୧୫ |
| • ଆମ ସଂସ୍କୃତିରେ ଦୋଳ ଉତ୍ସବର ପରମ୍ପରା | ଜେନାମଣି ଲକ୍ଷ୍ମୀକାନ୍ତ | --- | ୧୭ |
| • ଓଡ଼ିଶାରେ ଶାଗୁଣାର ସ୍ଥିତି, ପରିସ୍ଥିତି ଓ ପରିବେଶ | ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି | --- | ୧୯ |
| • ସେଦିନର ବ୍ୟବସ୍ଥାପକ ଓ ମନ୍ତ୍ରୀ ମଧୁସୂଦନ ଦାସ | ଡକ୍ଟର ଉଦ୍ଧବ ଚରଣ ନାୟକ | --- | ୨୩ |
| • ଓଡ଼ିଶାର ଅଦ୍ୱିତୀୟ ବରପୁତ୍ର ମଧୁବାବୁ | ଗୁରୁକଲ୍ୟାଣ ମହାପାତ୍ର | --- | ୨୬ |
| • ନବଉତ୍କଳ ଗଠନରେ ମଧୁବାବୁଙ୍କ ସାହିତ୍ୟର ଭୂମିକା | ଡଃ ପ୍ରସନ୍ନ କୁମାର ସ୍ୱାଇଁ | --- | ୨୮ |
| • ସ୍ୱାଧୀନତା ସଂଗ୍ରାମର ଅନନ୍ୟ ପ୍ରତିଭା ମାଳତୀ ଚୌଧୁରୀ | କିଶୋର ସ୍ୱାଇଁ (ଉଷସ୍ମି) | --- | ୩୫ |
| • ସଂଗ୍ରାମୀ ଗୌରାଙ୍ଗ ଚରଣ ଦାସ | କୃଷ୍ଣଚନ୍ଦ୍ର ସୁଆର | --- | ୩୮ |
| • କଳିଙ୍ଗର ସ୍ୱାଭିମାନୀ ପୁତ୍ର ବିଜୁ ପଟ୍ଟନାୟକ | ପ୍ରଦୀପ କୁମାର ଅମାତ | --- | ୪୧ |
| • ବଙ୍ଗ ଜନମାନସରେ ବିଜୁ ପଟ୍ଟନାୟକ | ଡଃ କୃଷ୍ଣଚନ୍ଦ୍ର ଭୂୟାଁ | --- | ୪୩ |
| • ବିଜୁବାବୁଙ୍କ ପବିତ୍ର ଜନ୍ମସ୍ଥଳୀ କଟକର ଆନନ୍ଦ ଭବନ | ଡକ୍ଟର ବି.କେ. ରଥ | --- | ୪୭ |
| • ବିଜୁ ପଟ୍ଟନାୟକ : ଏକ ଅମ୍ଳାନ ପ୍ରତିଭା | ଗଦାଧର ଦାସ | --- | ୪୯ |
| • ଆମ୍ବେଦକରଙ୍କ ଦୃଷ୍ଟିରେ ସାମାଜିକ ନ୍ୟାୟ | ମାନସ କୁମାର ମଲ୍ଲିକ | --- | ୫୧ |
| • ୧୮୫୭ ସିପାହୀ ବିଦ୍ରୋହର ପ୍ରଥମ ଶହୀଦ ଇତିହାସରେ ବିସ୍ମୃତ ଜଗୁ ଦେୱାନ | ଡକ୍ଟର ନିହାର ରଞ୍ଜନ ପଟ୍ଟନାୟକ | --- | ୫୩ |
| • ଜନଶ୍ରୁତିରେ ଜୟୀ ରାଜଗୁରୁ | ଡଃ ଭାଗ୍ୟଲିପି ମଲ୍ଲ | --- | ୫୫ |
| • ଭାରତୀୟ ପ୍ରଥମ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବୀର ଚନ୍ଦନ ହଜୁରୀ | କାଞ୍ଚନାରାୟଣ ମହାନ୍ତି | --- | ୫୮ |
| • ବୀର ପୁଙ୍ଗବ ବିପ୍ଳବୀ ବକ୍ସି ବନାମ ବ୍ରିଟିଶ ସାଲିସ୍ | ମଧୁସୂଦନ ପଟ୍ଟନାୟକ | --- | ୬୩ |
| • ଆଦିବାସୀଙ୍କ ଭଗବାନ ବିର୍ସା ମୁଣ୍ଡା | ସୁଧାକର ନନ୍ଦ | --- | ୬୫ |
| • ଭାରତର ସ୍ୱାଧୀନତା ସଂଗ୍ରାମରେ କନିକାର ଅବଦାନ | ଦାମୋଦର ଧଳ | --- | ୬୬ |
| • ବିଧାନସଭା ଇତିହାସର ସାକ୍ଷୀ : ସର୍ଦ୍ଦାର ପଟେଲ ହଲ | ସଂଘମିତ୍ରା ପ୍ରଧାନ | --- | ୬୯ |
| • ସତ୍ୟାଗ୍ରହ - ଅର୍ଥ ଓ ପ୍ରୟୋଗ | ଡଃ ଅତୁଲ ଚନ୍ଦ୍ର ପ୍ରଧାନ | --- | ୭୨ |
| • ବିପ୍ଳବୀ ଆନନ୍ଦଚନ୍ଦ୍ର : ଏକ ଅନିର୍ବାଣ ଶିଖା | ଡକ୍ଟର ବାସୁଦେବ ଦାସ | --- | ୭୫ |
| • ଉତ୍କଳ ସନ୍ତାନ | ଜାତୀୟ ଗୌରବ ମଧୁସୂଦନ ଦାସ | --- | ୭୭ |
| • କିଏ ତୁମ୍ଭେ ଚିହ୍ନିଛ କି ଆପଣାକୁ ଆପେ ? | କବିଶେଖର ଚିନ୍ତାମଣି ମହାନ୍ତି | --- | ୭୮ |
| • ଉତ୍କଳ ପ୍ରଭାତ | ପଲ୍ଲୀକବି ନନ୍ଦକିଶୋର ବଳ | --- | ୭୯ |
| • ଆମ ଘର ଏଇ ଓଡ଼ିଶା ରାଇଜେ... | ପଣ୍ଡିତ ଗୋଦାବରୀଶ ମିଶ୍ର | --- | ୮୦ |






# ଉତ୍କଳ ଦିବସ -୨୦୦୮ ପାଳନ ଅବସରରେ

## ମହାମାନ୍ୟ ଉପରାଷ୍ଟ୍ରପତି

## **ଏମ୍. ହମିଦ୍ ଅନ୍ସାରୀଙ୍କ**

## **ବାର୍ତ୍ତା**

ଏକ ସ୍ୱତନ୍ତ୍ର ରାଜ୍ୟ ଭାବରେ ଗଠିତ ହୋଇଥିବାରୁ ଆସନ୍ତା ଅପ୍ରେଲ ପହିଲାରେ ଓଡ଼ିଶା ଦିବସ ପାଳିତ ହେଉଥିବା ଜାଣି ମୁଁ ଆନନ୍ଦିତ । ଏହି ସ୍ମରଣୀୟ ଶୁଭ ମୁହୂର୍ତ୍ତରେ ମୁଁ ସମସ୍ତ ଓଡ଼ିଶାବାସୀଙ୍କୁ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଅଛି ।

ଭାଷା, ସାହିତ୍ୟ, ସଂସ୍କୃତି, କଳା ଓ ଅପୂର୍ବ ପ୍ରାକୃତିକ ଏବଂ ମାନବିକସମ୍ବଳପରମ୍ପରାସମୃଦ୍ଧ ଏ ରାଜ୍ୟ ଯେ କ୍ରମୋନ୍ନତି ପଥରେ ଅଗ୍ରସର ହେବ, ଏଥିରେ ସନ୍ଦେହ ନାହିଁ ।

ମୁଁ ରାଜ୍ୟ ସରକାର ତଥା ଓଡ଼ିଶାବାସୀଙ୍କୁ ଉତ୍ତରୋତ୍ତର ପ୍ରଗତି ଓ ସମୃଦ୍ଧି ପାଇଁ ଶୁଭେଚ୍ଛା ଜ୍ଞାପନ କରୁଛି ।

ନୂଆଦିଲ୍ଲୀ
ମାର୍ଚ୍ଚ ୧୯, ୨୦୦୮

(ଏମ୍. ହମିଦ୍ ଅନ୍ସାରୀ)
ଉପରାଷ୍ଟ୍ରପତି






# ଉତ୍କଳ ଦିବସ -୨୦୦୮ ପାଳନ ଅବସରରେ

## ମାନ୍ୟବର ପ୍ରଧାନମନ୍ତ୍ରୀ

## **ଡକ୍ଟର ମନମୋହନ ସିଂହଙ୍କ**

## **ବାର୍ତ୍ତା**

ଆସନ୍ତା ଅପ୍ରେଲ ପହିଲାରେ ଓଡ଼ିଶା ଦିବସ ପାଳନ ହେଉଥିବା ଜାଣି ମୁଁ ଆନନ୍ଦିତ ।

ନିଜ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବା ଦିଗରେ ଓଡ଼ିଶାର ଲୋକେ ଯେଉଁ ଉଲ୍ଲେଖନୀୟ ଆନ୍ଦୋଳନର ଅୟମାରମ୍ଭ କରିଥିଲେ, ଇତିହାସରେ ତାହା ଲିପିବଦ୍ଧ ହୋଇ ରହିଛି । ୧୯୩୬ ମସିହା ଅପ୍ରେଲ ପହିଲାରେ ଏହି ଆନ୍ଦୋଳନଜନିତ ସଫଳତା ଅନ୍ୟାନ୍ୟ ଭାଷାଭିତ୍ତିକ ରାଜ୍ୟଗୁଡ଼ିକର ସ୍ୱୀକୃତି କ୍ଷେତ୍ରରେ ମଧ୍ୟ ଏକ ନୂତନ ଦୃଷ୍ଟାନ୍ତ ସୃଷ୍ଟି କରିଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଉତ୍କଳଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସ ପ୍ରଭୃତି ଯେଉଁ ବରପୁତ୍ରଗଣ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ସେମାନଙ୍କୁ ଓଡ଼ିଶାବାସୀ କୃତଜ୍ଞତାର ସହିତ ସ୍ମରଣ କରିବେ । ଏହି ପ୍ରଦେଶ ଗଠିତ ହେବା ପରଠାରୁ ବିଭିନ୍ନ କ୍ଷେତ୍ରରେ ରାଜ୍ୟର ପ୍ରଗତି ପରିଦୃଷ୍ଟ । ଏହାର ବିସ୍ତୃତ ସମ୍ବଳର ସଦୁପଯୋଗ କରି ଉତ୍କଟ ସାମାଜିକ ଓ ଆର୍ଥିକ ସମସ୍ୟାଗୁଡ଼ିକର ପ୍ରତିକାର କରାଯାଇପାରିବ ।

ଓଡ଼ିଶାକୁ ଏକ ସର୍ବାଧୁନିକ ରାଜ୍ୟରେ ପରିଣତ କରିବାକୁ ଏହାର ସମୃଦ୍ଧ କଳା ଓ ସାଂସ୍କୃତିକ ପରମ୍ପରାକୁ ବଜାୟ ରଖିବାକୁ ହେବ ।

ମୋର ବିଶ୍ୱାସ ଯେ ଓଡ଼ିଶାବାସୀଙ୍କର ଉତ୍ସର୍ଗୀକୃତ ଉଦ୍ୟମ ଯୋଗୁଁ ରାଜ୍ୟ ଉଚ୍ଚସ୍ତରରେ ଉପନୀତ ହୋଇ ସର୍ବୋତ୍କୃଷ୍ଟ ରାଜ୍ୟରେ ପରିଣତ ହୋଇପାରିବ ।

ଏହି ଶୁଭ ଅବସରରେ ମୁଁ ରାଜ୍ୟବାସୀଙ୍କୁ ଅଭିନନ୍ଦନ ଜ୍ଞାପନ କରିବା ସଂଗେସଂଗେ ସେମାନଙ୍କର ସର୍ବସଫଳତା କାମନା କରୁଛି ।

Manmohan Singh

(ଡକ୍ଟର ମନମୋହନ ସିଂହ)
ପ୍ରଧାନମନ୍ତ୍ରୀ

ନୂଆଦିଲ୍ଲୀ
ମାର୍ଚ୍ଚ ୨୬, ୨୦୦୮



# ଉତ୍କଳ ଦିବସ -୨୦୦୮ ପାଳନ ଅବସରରେ
# ମହାମାନ୍ୟ ରାଜ୍ୟପାଳ
# ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ
# ବାର୍ତ୍ତା

**ମୋର ପ୍ରିୟ ଓଡ଼ିଶାର ଭଉଣୀ ଓ ଭାଇମାନେ,**

**ଅପ୍ରେଲ ପହିଲା ଆମ ସମସ୍ତଙ୍କ ପାଇଁ ବାସ୍ତବରେ ଏକ ଐତିହାସିକ ଦିବସ । ୧୯୩୬ ମସିହାର ଆଜିର ଏହି ପବିତ୍ର ଦିବସରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମୁଣ୍ଡ ଟେକିଥିଲା । ଆମେମାନେ ଭାଷାଭିତ୍ତିରେ ପୁନଃସଂଗଠିତ ହୋଇଥିଲୁଁ, ଯାହା ଆମକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଛି ।** ଏହି ଅବସରରେ, ମୁଁ ରାଜ୍ୟବାସୀଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଏବଂ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏକ ଅଭିନବ ଭାଷା ଆନ୍ଦୋଳନ ହେତୁ ସମ୍ଭବ ହୋଇଥିଲା । ଓଡ଼ିଶାର ଅନେକ ସୁଯୋଗ୍ୟ ପୁତ୍ର-କନ୍ୟାଙ୍କ ନିରବଚ୍ଛିନ୍ନ ପ୍ରୟାସ ଯୋଗୁଁ ଏହା ସମ୍ଭବ ହୋଇଥିଲା । ସେମାନଙ୍କର ଅବିସ୍ମରଣୀୟ ଅବଦାନ ପାଇଁ ଆମେ ସେମାନଙ୍କ ନିକଟରେ ବାସ୍ତବରେ ଋଣୀ । ବ୍ୟାସକବି ଫକୀର ମୋହନ ସେନାପତି, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ସ୍ୱଭାବକବି ଗଙ୍ଗାଧର ମେହେର, କର୍ମବୀର ଗୌରୀଶଙ୍କର ରାୟ, କବିବର ରାଧାନାଥ ରାୟ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ରାଜା ହରିହର ମର୍ଦ୍ଦରାଜ, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସଙ୍କ ପରି ମନିଷୀ ଏବଂ ଆହୁରି ଅନେକ ବରପୁତ୍ରମାନେ ଆମର ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସାହିତ୍ୟ ଓ ରାଜନୀତି କ୍ଷେତ୍ରର ଏଇସବୁ ଅଗ୍ରଦୂତମାନଙ୍କୁ ଆମେ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛୁଁ ।

ସମ୍ଭ୍ରାନ୍ତ ସାଂସ୍କୃତିକ ଐତିହ୍ୟ ଓ ଗୌରବୋଜ୍ଜ୍ୱଳ ଇତିହାସର ସ୍ୱାକ୍ଷର ବହନ କରୁଥିବା ବହୁ ବିଭବର ଏକ ରାଜ୍ୟ ହେଉଛି ଓଡ଼ିଶା । ଖ୍ରୀ:ପୂ: ୨୬୧ ରେ ସଂଘଟିତ ଐତିହାସିକ କଳିଙ୍ଗ ଯୁଦ୍ଧରେ ସମ୍ରାଟ ଅଶୋକଙ୍କ ପରିବର୍ତ୍ତନ ମାନବ ଇତିହାସର ଗତିପଥ ବଦଳାଇ ଦେଇଥିଲା ଏବଂ ସାରା ବିଶ୍ୱରେ ତାହା ହିଁ ବୌଦ୍ଧଧର୍ମ ପ୍ରସାରର କାରଣ ହୋଇଥିଲା ।

ଓଡ଼ିଶା ହେଉଛି ବହୁ ଧର୍ମୀୟ ବିଶ୍ୱାସଧାରାର ସଂଗମ ସ୍ଥଳ । ଜୈନ, ବୌଦ୍ଧ, ଶୈବ ଏବଂ ବୈଷ୍ଣବୀୟ ବାଦର ସାରମର୍ମ ଜଗନ୍ନାଥ ସଂସ୍କୃତିରେ ନିହିତ ହୋଇଛି । ଧର୍ମୀୟ ସହନଶୀଳତା ଏବଂ ସାଂସ୍କୃତିକ ମିଳନ କ୍ଷେତ୍ରରେ ଓଡ଼ିଶା ଅପୂର୍ବ ଉଦାହରଣ ରଖିଆସିଛି ।

ଉଚ୍ଚକୋଟୀର ହସ୍ତଶିଳ୍ପ ଓ ଚମତ୍କାର ହସ୍ତତନ୍ତ ଉତ୍ପାଦିତ ବସ୍ତୁର ରାଜ୍ୟ ହେଉଛି ଓଡ଼ିଶା । ବିଭବଶାଳୀ ମନ୍ଦିର ଏବଂ ଐତିହାସିକ ପୁରାତନ କୀର୍ତ୍ତିରାଜି ଓଡ଼ିଶାର ଗୌରବୋଜ୍ଜ୍ୱଳ ଅତୀତର କଥା କହେ । ମନ୍ଦିର ଗାତ୍ରରେ ଥିବା ଅପୂର୍ବ ଭାସ୍କର୍ଯ୍ୟ ସତେଅବା ପଥର ଗାତ୍ରରେ କବିତା ପରି ଶୋଭା ପାଉଛି । କଟକର ରୌପ୍ୟ ତାରକସି କାମ, ପାରଳାଖେମୁଣ୍ଡିର ଶିଙ୍ଘ କାମ ଏବଂ ନୀଳଗିରି ଓ ଖିଚିଂର କଳାପଥରରେ ନିର୍ମିତ ଗିନା ଓ ଥାଳିଆ ଉଚ୍ଚସ୍ତରୀୟ କଳାତ୍ମକ ଉତ୍କୃଷ୍ଟତାର ସ୍ୱାକ୍ଷର ବହନ କରେ । ପିପିଲିର ପ୍ରସିଦ୍ଧ ଚାନ୍ଦୁଆ କାମ, ରଘୁରାଜପୁରର ଅପୂର୍ବ ପଟ୍ଟଚିତ୍ର, ମନଲୋଭା ସମ୍ବଲପୁରୀ ଶାଢ଼ୀ ଓ ମାଣିଆବନ୍ଧୀ ସିଲ୍କ ବୁଣାପ୍ରଣାଳୀ ଓ ଡିଜାଇନ୍ କ୍ଷେତ୍ରରେ ଅତୁଳନୀୟ ।

ଆଜିର ଓଡ଼ିଶା ପର୍ଯ୍ୟାପ୍ତ ସମ୍ଭାବନା ରଖେ । ରାଜ୍ୟରେ ବିକାଶମୂଳକ ପଦକ୍ଷେପଗୁଡ଼ିକ ସାଧାରଣ ଜନତାଠାରେ କେନ୍ଦ୍ରୀଭୂତ ହୋଇଛି । ଦ୍ରୁତ ଶିଳ୍ପାୟନ ଜରିଆରେ ଯଦିଓ ପ୍ରାକୃତିକ ସମ୍ବଳର ସୁବିନିଯୋଗ ହେବାର ସମସ୍ତ ପ୍ରୟାସ ଜାରି ରହିଛି, ତଥାପି ରାଜ୍ୟର ପୁନର୍ବାସ ଓ ଥଇଥାନ ନୀତି ଦେଶର ଅନ୍ୟତମ ଶ୍ରେଷ୍ଠ ନୀତି ଭାବେ ପରିଗଣିତ ହୋଇଛି ।

ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିଙ୍କ ସାମାଜିକ-ଅର୍ଥନୈତିକ ବିକାଶ ନିମନ୍ତେ ଶିକ୍ଷା ହେଉଛି ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା । ମୋ’ ସରକାର ଏ ସମସ୍ତ ଗୋଷ୍ଠୀର ଶିକ୍ଷା-ସ୍ଥିତିରେ ଉନ୍ନତି ଆଣିବା ଉପରେ ଗୁରୁତ୍ୱାରୋପ କରିଛନ୍ତି । ଆଦିବାସୀ ବାଳିକାମାନଙ୍କର ଶିକ୍ଷାକୁ ପ୍ରୋତ୍ସାହିତ କରିବା ପାଇଁ ଏବଂ ସେମାନଙ୍କର ପାଠ ଛାଡ଼ିବାକୁ ହ୍ରାସ କରିବା ପାଇଁ ମୋ’ ସରକାରଙ୍କଦ୍ୱାରା ୧୦୦୦ଟି ଛାତ୍ରୀନିବାସ ଖୋଲାଯାଇଛି ଯେଉଁଥିରେ କି ଏକ ଲକ୍ଷରୁ ଉର୍ଦ୍ଧ୍ୱ ଅନ୍ତେବାସୀ ରହୁଛନ୍ତି ।

ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଏହି ଯେ, ମୋ’ ସରକାରଙ୍କ ନିମନ୍ତେ ମହିଳା ସଶକ୍ତିକରଣ ସବୁଠୁଁ ଅଗ୍ରାଧିକାର ବିଷୟ ହୋଇଆସିଛି । ମିଶନ ଶକ୍ତି ପରି କାର୍ଯ୍ୟକ୍ରମ ଗ୍ରାମାଞ୍ଚଳ ଓ ଆଦିବାସୀ ଅଞ୍ଚଳରେ ଲକ୍ଷ ଲକ୍ଷ ମହିଳାଙ୍କ ଜୀବନ ଧାରାରେ ପରିବର୍ତ୍ତନ ଆଣିଛି, ଏହିସବୁ ଅଞ୍ଚଳରେ ମହିଳା ସ୍ୱୟଂ ସହାୟିକା ଦଳ ଗଠନଦ୍ୱାରା ମହିଳାମାନଙ୍କ ସାମାଜିକ-ଅର୍ଥନୈତିକ ସ୍ଥିତିରେ ବ୍ୟାପକ ପରିବର୍ତ୍ତନ ସଂଘଟିତ ହୋଇଛି ।

ନାଗରିକମାନଙ୍କ ସ୍ୱାସ୍ଥ୍ୟ ସମାଜର ସୁଖ ଉପରେ ନିର୍ଭରଶୀଳ । ସରକାରୀ ହାସପାତାଳ ଓ ଚିକିତ୍ସାଳୟ ବ୍ୟତୀତ ଅନେକ ଘରୋଇ ଚିକିତ୍ସାଳୟ ମଧ୍ୟ ରାଜ୍ୟରେ ଉନ୍ନତମାନର ସ୍ୱାସ୍ଥ୍ୟସେବା ପ୍ରଦାନ କରୁଛନ୍ତି । ତଥାପି ବିଭିନ୍ନ ସ୍ୱାସ୍ଥ୍ୟସେବା କେନ୍ଦ୍ର ଓ ଚିକିତ୍ସାଳୟଗୁଡ଼ିକୁ ସୂଚନା ଓ ପ୍ରଯୁକ୍ତି ବିଜ୍ଞାନର ସହାୟତାରେ ସଂଯୁକ୍ତ କରିବାକୁ ମୁଁ ପରାମର୍ଶ ଦେବି । ଫଳରେ ନିପଟ ଗ୍ରାମାଞ୍ଚଳ ଓ ଆଦିବାସୀ ଅଞ୍ଚଳରେ ଥିବା ଡାକ୍ତରମାନେ କଟକ, ବ୍ରହ୍ମପୁର, ସମ୍ବଲପୁର ଏବଂ ରାଉରକେଲାରେ ଥିବା ଅଭିଜ୍ଞ ଓ ବିଶେଷଜ୍ଞ ଡାକ୍ତରମାନଙ୍କ ପରାମର୍ଶକ୍ରମେ ସେଇସବୁ ଅଞ୍ଚଳରେ ଜଟିଳ ଚିକିତ୍ସା ଓ ଶଲ୍ୟ ପଦ୍ଧତି ସଂପାଦନ କରିପାରିବେ । ଅନ୍ୟତ୍ର ଟେଲିମେଡ଼ିସିନ୍‌ର ପ୍ରଚଳନ ଏକ ବାସ୍ତବତାରେ ପରିଣତ ହୋଇସାରିଛି ଏବଂ ଓଡ଼ିଶାରେ ଏହା ମଧ୍ୟ ବାସ୍ତବ ରୂପ ନେଇପାରିବ ।

ଆଗାମୀ ଦିନଗୁଡ଼ିକରେ ଆମ ସମ୍ମୁଖରେ ବହୁ ଆହ୍ୱାନ ରହିଛି । ଆମକୁ ନୂତନ ଜ୍ଞାନକୌଶଳ ଓ ପ୍ରଯୁକ୍ତି ବିଦ୍ୟାକୁ ଆପଣେଇବାକୁ ପଡ଼ିବ ଏବଂ ନୂତନ ଉତ୍ସାହ-ଉଦ୍ଦୀପନା ସହ ମିଳିମିଶି କାର୍ଯ୍ୟ କରିବାକୁ ପଡ଼ିବ । ଆମ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ସୃଷ୍ଟି କରିଥିବା ମନିଷୀମାନଙ୍କ ଆଶା - ଆକାଂକ୍ଷା ଅନୁଯାୟୀ କାର୍ଯ୍ୟ କରିବାକୁ ପଡ଼ିବ ।

ଆଜିର ଏହି ପବିତ୍ର ଅବସରରେ ଏକ ସମୃଦ୍ଧ ଓ ପ୍ରଗତିଶୀଳ ଓଡ଼ିଶାର ନିର୍ମାଣ କାର୍ଯ୍ୟ ସଂପନ୍ନ ପାଇଁ ଆମେ ସମସ୍ତେ ମିଳିମିଶି ଶପଥ ନେବା ।

ବନ୍ଦେ ଉତ୍କଳ ଜନନୀ

ଜୟହିନ୍ଦ୍



# ଉତ୍କଳ ଦିବସ -୨୦୦୮ ପାଳନ ଅବସରରେ
# ମାନ୍ୟବର ମୁଖ୍ୟମନ୍ତ୍ରୀ
# **ଶ୍ରୀ ନବୀନ ପଟ୍ଟନାୟକଙ୍କ**
# **ବାର୍ତ୍ତା**

ପ୍ରିୟ ଭାଇ ଓ ଭଉଣୀମାନେ,

ଓଡ଼ିଶା ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଅପ୍ରେଲ ପହିଲା ଆମ ସମସ୍ତଙ୍କ ପାଇଁ ଏକ ମହାନ୍ ଓ ପବିତ୍ର ଦିବସ । ଏହି ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଜନ୍ମଲାଭ କରିଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଉତ୍କଳ ଜନନୀର ଯେଉଁ ବରପୁତ୍ରମାନଙ୍କର ବହୁମୂଲ୍ୟ ଅବଦାନ ରହିଛି, ସେମାନଙ୍କପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଓଡ଼ିଆ ଭାଷା, ସାହିତ୍ୟ, ନୃତ୍ୟ, ସଂଗୀତ, କଳାକୁ ଯେଉଁମାନେ ସମୃଦ୍ଧ କରିଛନ୍ତି, ସେମାନଙ୍କ ପ୍ରତି ମଧ୍ୟ ମୋର ଶ୍ରଦ୍ଧା ନିବେଦନ କରୁଛି ।

ଓଡ଼ିଶାର ଇତିହାସ ଗୌରବମୟ । ଓଡ଼ିଆ ଶିଳ୍ପୀ ଓ କାରିଗରମାନେ ସୁନ୍ଦର ସୁନ୍ଦର ମନ୍ଦିରମାନ ତିଆରି କରିଥିଲେ । ଓଡ଼ିଆ ସାଧବପୁଅ ଜାଭା, ବାଲି, ବୋର୍ଣ୍ଣିଓ ଆଦି ସୁଦୂର ସ୍ଥାନରେ ବେପାର ବାଣିଜ୍ୟ କରି ପ୍ରାଚୀନ ଓଡ଼ିଶାକୁ ସମୃଦ୍ଧ କରିଥିଲେ । ଆଜି ମଧ୍ୟ ସେସବୁ ସ୍ଥାନରେ ଓଡ଼ିଆ ସଂସ୍କୃତିର ଚିହ୍ନ ଦେଖିବାକୁ ମିଳେ । ଓଡ଼ିଆ ପାଇକପୁଅର ବୀରତ୍ୱପୂର୍ଣ୍ଣ ଗାଥା ଇତିସହାରେ ସ୍ଥାନ ପାଇଛି । ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଅବଦାନ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଶାରେ ପ୍ରଚୁର ପ୍ରାକୃତିକ ସଂପଦ ଭରି ରହିଛି । ଏହିସବୁ ସଂପଦର ବିନିଯୋଗ କରି ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ଆମର ଉଦ୍ୟମ ଜାରି ରହିଛି । ଆପଣମାନଙ୍କର ଆଶୀର୍ବାଦରେ ମୋ' ସରକାର ଗତ ଆଠ ବର୍ଷ ଧରି ରାଜ୍ୟର ସେବା କରିବାର ସୁଯୋଗ ପାଇଛି । ସବୁ କ୍ଷେତ୍ରରେ ଓଡ଼ିଶାକୁ ଆଗେଇ ନେବାପାଇଁ ଆମେ ଅନେକ କାର୍ଯ୍ୟକ୍ରମ ହାତକୁ ନେଇଛୁଁ ।

ଆମେ କୃଷି ଉପରେ ଖୁବ୍ ଗୁରୁତ୍ୱ ଦେଇଛୁଁ । ଆମ ରାଜ୍ୟର ବହୁତ ଲୋକ ଜୀବିକା ପାଇଁ କୃଷି ଉପରେ ନିର୍ଭର କରନ୍ତି । ଚାଷ ଓ ଚାଷୀର ଉନ୍ନତି ନ ହେଲେ ରାଜ୍ୟର ଉନ୍ନତି ଅସମ୍ଭବ । ଚାଷୀମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ୟାକେଜ୍ କାର୍ଯ୍ୟକାରୀ କରାଯାଉଛି । ଆମେ ଏ ବର୍ଷଟିକୁ ଜଳସେଚନ ବର୍ଷ ରୂପେ ଘୋଷଣା କରିଛୁଁ । ରାଜ୍ୟରେ ପ୍ରତି ବ୍ଲକ୍‌ର ୩୫ ଭାଗ ଜମିକୁ ଜଳସେଚନର ସୁବିଧା ଯୋଗାଇ ଦେବା ଆମର ଲକ୍ଷ୍ୟ । ଚାଷୀଙ୍କପାଇଁ ଉଦ୍ଦିଷ୍ଟ ପାଣିରୁ ବୁନ୍ଦାଏ ମଧ୍ୟ ଅନ୍ୟ କୌଣସି କାମ ପାଇଁ ଦିଆଯିବ ନାହିଁ ବୋଲି ମୁଁ ଘୋଷଣା କରିଛି ।

ରାଜ୍ୟରେ ଶିଳ୍ପ ବିକାଶ ପାଇଁ ମୋ' ସରକାର ଅନେକଗୁଡ଼ିଏ ଏମ୍.ଓ.ୟୁ. କରିଛନ୍ତି । ତା' ଭିତରୁ ଅନେକ ଶିଳ୍ପ ଆରମ୍ଭ ହେଲାଣି । ଶିଳ୍ପଦ୍ୱାରା ରାଜ୍ୟର ରାଜସ୍ୱ ବଢ଼ିବ ଓ ଅନେକ ନିଯୁକ୍ତି ସୁଯୋଗ ସୃଷ୍ଟି ହେବ । ଶିଳ୍ପଦ୍ୱାରା ବିସ୍ଥାପିତ ହେଉଥିବା ପରିବାରପାଇଁ ମୋ' ସରକାରଙ୍କର ଥଇଥାନ ନୀତି ସାରା ଦେଶରେ ଏକ ଆଦର୍ଶ ନୀତି ଭାବରେ ବିବେଚିତ ହୋଇଛି ।

ଗ୍ରାମାଞ୍ଚଳର ଗରିବ ଲୋକଙ୍କ ଉନ୍ନତି ଆମର ଲକ୍ଷ୍ୟ । ବି.ପି.ଏଲ୍. ସୁଯୋଗରୁ ବଞ୍ଚିତ ଗରିବ ପରିବାରଙ୍କ ପାଇଁ ଆମେ 'ମଧୁବାବୁ ପେନ୍‌ସନ୍ ଯୋଜନା' ଓ 'ମୋ କୁଡ଼ିଆ' ଆଦି କାର୍ଯ୍ୟକ୍ରମ ଆରମ୍ଭ କରିଛୁଁ । ପଛୁଆ ଅଞ୍ଚଳ ଓ କେ.ବି.କେ. ଜିଲ୍ଲାର ଉନ୍ନତି ପାଇଁ 'ବିଜୁ କେ.ବି.କେ. ଯୋଜନା' କାର୍ଯ୍ୟକାରୀ ହେଉଛି । ଗ୍ରାମାଞ୍ଚଳରେ ବିଜୁଳି, ସଡ଼କ ଓ ପାଣିର ସୁବିଧା ଯୋଗାଇ ଦେବାପାଇଁ 'ଗୋପବନ୍ଧୁ ଗ୍ରାମୀଣ ଯୋଜନା' ଆରମ୍ଭ ହୋଇଛି ।

ଶିକ୍ଷା ଓ ସ୍ୱାସ୍ଥ୍ୟର ବିକାଶ ପାଇଁ ଅନେକ ଯୋଜନା କାର୍ଯ୍ୟକାରୀ ହେଉଛି । ଆମେ ଆରମ୍ଭ କରିଥିବା ଶିଶୁ ମୃତ୍ୟୁହାର ହ୍ରାସ ମିଶନର କାର୍ଯ୍ୟଦ୍ୱାରା ରାଜ୍ୟରେ ଶିଶୁ ମୃତ୍ୟୁ ହାର କମିଛି ।

ମହିଳାମାନଙ୍କ ଉନ୍ନତି ପାଇଁ ଆରମ୍ଭ ହୋଇଥିବା ମିଶନ ଶକ୍ତି କାର୍ଯ୍ୟକ୍ରମ ଖୁବ୍ ଲୋକପ୍ରିୟ ହୋଇଛି । ଏହି ମିଶନ୍‌ଦ୍ୱାରା ଗ୍ରାମାଞ୍ଚଳର ମହିଳାମାନଙ୍କର ବିଶେଷ ପ୍ରଗତି ସାଧିତ ହୋଇଛି ।

ଆଦିବାସୀମାନଙ୍କର ଓ ଆଦିବାସୀବହୁଳ ଅଞ୍ଚଳର ଉନ୍ନତି ଆମର ଅନ୍ୟ ଏକ ବଳିଷ୍ଠ କାର୍ଯ୍ୟକ୍ରମ । ଆଦିବାସୀ ଛାତ୍ରଛାତ୍ରୀ ବିଶେଷ କରି ଛାତ୍ରୀମାନଙ୍କ ଭିତରେ ଶିକ୍ଷାର ପ୍ରସାର ପାଇଁ ଉଦ୍ୟମ ଜାରି ରହିଛି । ଏକ ଲକ୍ଷ ଆଦିବାସୀ ଛାତ୍ରୀଙ୍କ ପଢ଼ିବା ପାଇଁ ଏକ ହଜାର ହଷ୍ଟେଲ ଖୋଲାଯାଇ ସାରିଛି ।

ସେହିପରି ଟୁରିଜିମ୍ ଓ ଆଇ.ଟି. କ୍ଷେତ୍ରରେ ଆମ ରାଜ୍ୟରେ ବିକାଶର ବହୁ ସୁଯୋଗ ରହିଛି । ଏହା ଜରିଆରେ ରାଜ୍ୟର ଅର୍ଥନୀତିର ବିକାଶ ସହିତ ଆମର ପିଲାମାନଙ୍କ ପାଇଁ ନିଯୁକ୍ତିର ନୂଆ ନୂଆ ସୁଯୋଗ ସୃଷ୍ଟି ହୋଇ ପାରିବ । ରାଜ୍ୟରେ ଟୁରିଜିମ୍‌ର ଉନ୍ନତି ସହିତ ଓଡ଼ିଶାକୁ କିପରି ଅଧିକରୁ ଅଧିକ ଟୁରିଷ୍ଟ ଆସି ପାରିବେ ସେ ଦିଗରେ ସରକାର ଯୋଜନା କରିଛନ୍ତି ।

ଆଇ.ଟି. କ୍ଷେତ୍ରରେ ଭୁବନେଶ୍ୱର ଆଜି ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଦେଶର ବଡ଼ ବଡ଼ ଆଇ.ଟି. କମ୍ପାନୀମାନେ ସେମାନଙ୍କର ଡେଭେଲପମେଣ୍ଟ ସେଣ୍ଟର ଭୁବନେଶ୍ୱରଠାରେ ଖୋଲିଛନ୍ତି । ବିଭିନ୍ନ ଆଇ.ଟି. କମ୍ପାନୀମାନେ ମଧ୍ୟ ସେମାନଙ୍କର ବି.ପି.ଓ. ସେଣ୍ଟର ଭୁବନେଶ୍ୱରଠାରେ ଖୋଲିବାକୁ ଯାଉଛନ୍ତି । ଆଇ.ଟି. କ୍ଷେତ୍ରରେ ଆମ ରାଜ୍ୟର ଏକ୍ସପୋର୍ଟ ମଧ୍ୟ ବଢ଼ିଛି ।

ଓଡ଼ିଶାକୁ ସବୁ କ୍ଷେତ୍ରରେ ଆଗେଇ ନେଇ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ଆମର ଲକ୍ଷ୍ୟ । ଏହି ଲକ୍ଷ୍ୟ ପୂରଣ ଦିଗରେ ଆପଣମାନଙ୍କର ସାହାଯ୍ୟ ଓ ସହଯୋଗ କାମନା କରୁଛି ।

ବନ୍ଦେ ଉତ୍କଳ ଜନନୀ

# ବନ୍ଦେ ଉତ୍କଳ ଜନନୀ



ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।

ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ॥

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ॥

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ॥

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ॥

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ॥

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ॥

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନବ ଉତ୍କଳର ନିର୍ମାତାଗଣ


ଉତ୍କଳଗୌରବ ମଧୁସୂଦନ ଦାସ


ଉତ୍କଳମଣି ଗୋପବନ୍ଧୁ ଦାସ




ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ


ବ୍ୟାସକବି ଫକୀରମୋହନ ସେନାପତି

# ନବ ଉତ୍କଳର ନିର୍ମାତାଗଣ


ପଣ୍ଡିତ ନୀଳକଣ୍ଠ ଦାସ


କବିବର ରାଧାନାଥ ରାୟ




ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ




ସ୍ୱଭାବକବି ଗଂଗାଧର ମେହେର


ଡକ୍ଟର ହରେକୃଷ୍ଣ ମହତାବ